ଫିସାଦରେ ଛନ୍ତି ଯେତେ ନର ଯେ । ୨୨ । ବଦଳ ପୁଣି ସତ୍ୟଯୁଗ ହୋଇବ ବଶା ହେଉଥିବେ ସର୍ବେ । ବ୍ରହ୍ମାଣ୍ଡ ସ୍ଥିତି ବସ୍ତି ହେଲା ବେଳକୁ ମେଳନ୍ତି କେହ୍ନ ନଥିବେ ଯେ । ବାର ନେବ ଭକତ । ବବାଦରେ କରଣ ଅନର୍ଥ । ଖାର ଦ୍ୱେଶେ ଭ୍ରମୁଛି ଜଗତ । ବାନା ତିନ ଭୁବନରେ ଖ୍ୟାତ ଯେ । ୨୩ । ଭସିଯିବ ଏ ବ୍ରହ୍ମାଣ୍ଡ ନବଖଣ୍ଡ ଭରଣା ହେଲାଣି ଯୁଗ । ଭୋଳା ହେଉଛନ୍ତି କଳିଯୁଗ ନର ସ୍ୱର୍ଗ ଦେବ ଗେଲ ଗର୍ବ ଯେ । ଭାବି ଛେଦିବ ଏବେ । । ଭାବ ସତ୍ୟ କରିଅଛୁ ପୂର୍ବେ । ଭାର ଅସୁର ହେଲଣି ଛବେ । ଭଣ୍ଡ ଲୋକେ ସର୍ବେ ନାସ ଯିବେ । ଭଡ଼ କୁମ୍ଭି ପଡ଼ି ପିନ୍ଧ ବେଗେ । ଭଣେ ସ୍ୱାମ ଧ୍ୟାୟୀ ପାଦ ଯୁଗେ ଯେ । ୨୪ ।

(ମ) ମହିମା ପ୍ରକାଶ ମର୍ତ୍ତ୍ୟମଣ୍ଡଳରେ ପ୍ରତ୍ୟକ୍ଷ ହୋଇଛୁ ଉଦେ । ମନ ଜ୍ଞାନ ଧ୍ୟାନ ଭକ୍ତି ବୋଲିବାକୁ ନ ମିଶିବେ ଗୁରୁବେଦେ ଯେ । ମନ୍ଦ୍ରୀ ଉଶ୍ୱାସ ହେବ । ମରିବାକୁ ହୋଇଲେଣି ଆତ । ମନ୍ତ୍ରଯନ୍ତ୍ର ସବୁ କାଟି ଯିବ । ମାଟି ଭିତରେ ପୋତା ହୋଇବ । ମହା ଅନର୍ଥ ଏଥେ ଉଠିବ ଯେ । ୨୫ । ଜାଣୁ ଜାଣୁ ସର୍ବେ ବଣା ହେଉଅଛ ଜାଗି ନପାରୁଛ ଦେହ । ଯୁଗତେଣେ କାଳ ପ୍ରବେଶ ହୋଇଲେ କେ ରକ୍ଷା କରିବ କୁହ ଯେ । ଯୋଗୀ ଖାଇବେ ନଷ୍ଟେ । ଜଗି ବସିଛନ୍ତି ଆଗ ପଛେ । ଯାଇ ପଡ଼ିବ ନରକେ ଖାଞ୍ଚେ । ଯମ ଗୁନ୍ଥିବ ଶିମୁଳି ବୃକ୍ଷେ । ଯୋନି ଜନ୍ମ ନ ରଖିବ ମଞ୍ଚେ ଯେ । ୨୬ । ରବ ରଗଡ଼ି ଯେତେବେଳେ ପଡ଼ିବ ବଞ୍ଚିବେ ନାହିଁ ମନୁଷ୍ୟ । ରଷିଟେଣେ ଆଦ ରହି ନ ପାରିବେ, କଷ୍ଟ ପାଇବେ ମୋ ଦାସ ଯେ । ରଣ ଯୁଦ୍ଧ କରିବେ ରାଜାମାନେ ଆଜ୍ଞା ଦେଇଯିବେ । ରସା ମେଦିନୀ ସୈନ୍ୟ ବୁଡ଼ିବେ । ରହି ସିଂହରଡ଼ି ଦେଉଥିବେ । ରଗେ ବୃକ୍ଷ ଉପାଡ଼ି ପିଟିବେ ଯେ । ୨୭ । ଲମ୍ବ ପୋକ ପ୍ରାଏ ଲାଗିଛନ୍ତି ସର୍ବ ଲଙ୍ଘି ଦେଉଛନ୍ତି ଯେତେ । ନାଚରି ଲୋକ ମଣ୍ଡିରେ ନ ରଖିବ ସ୍ୱରଧର୍ମ ସ୍ୱଣ ମୋତେ

Digitized by srujanika@gmail.com

ଯେ । ଲକ୍ଷ ଲକ୍ଷ ଝୁଣ୍ଡିବେ । ଲୁହା ବାଡ଼ ବାଜିଲେ ପଡ଼ିବେ । ଲିତ
ସ୍ୱଧାରେ ପିଞ୍ଜି ବୁଡ଼ିବେ । ଲେଚ୍ଛ ମୋହେ ସର୍ବେ ନାଶ ଯିବେ ।
ଲେଖା ପଢ଼ାରେ କେହି ନ ଥିବେ ଯେ ॥ ବାନ୍ଧ କଲ ଲୋକ ବଂଶ
ବୁଡ଼ିଯିବ ବଞ୍ଚିବେ ନାହିଁ ଗୋଟିଏ । ବନବାସ ଘୋର ତପସ୍ୟା
କରୁଛୁ, ଶାସ୍ତ୍ର ମୋ ପଞ୍ଜି କୋଟିଏ ଯେ । ବୁଡ଼ିଯିବଟି କୁଳ । ବାସ୍ତ
ମନ୍ଦରେ ହେବ ସଫଳ । ବର୍ଷ ହେବ ଭକ୍ଷିବାର ଫଳ । ବାତ ପିତ୍ତ
ଦେହ ହେବ କାଳ । ବଣା ହୋଇଯିବ ବୁଦ୍ଧି ବଳ ଯେ । ୨୯ ।
ସରିଗଲେଣି ଭକତ କୁଳ ବୃନ୍ଦ ସାର ଖପର ମୁଣ୍ଡାଇ । ସରିଗଲାଣି
ଏ ମହତ ମର୍ଯ୍ୟାଦା ସବୁ ଘରେ ଖାଇ ଖାଇ ଯେ । ଶିର ଲୋଟି
ଭୂମିରେ । ଶରଣ ମାଗି ହୃଦେ ଅନ୍ତରେ । ଶିର ଧର୍ମ ନାହିଁ ନା
ସଂସାରେ । ସ୍ୱାମୀ ଶୁଶ୍ରୂଷା କର ବାରେ । ଶେଷ ଜୀବନ ହେଲା
ମସ୍ତାରେ ଯେ ॥ ସକଳ କର୍ମ ଗୃହୀମାନେ ଛାଡ଼ିଲେ କରିବାକୁ ଭଜା
ନୁହେଁ । ସତ୍ୟ ଦେଖିବାକୁ ଆଶ୍ରେ କରିଥିଲେ ପରୀକ୍ଷା ନ ଦେଲେ
କଏ ଯେ । ସତ୍ୟ ନାହିଁ କାହାର । ଶଜତ ରେ ପ୍ରତିତ୍ର ନ ପାର ।
ଶସ୍ତ୍ର ଦଣ୍ଡରେ ଗଲେଣି ସର । ଶତ୍ରୁ ମାରୁଛନ୍ତି ଧରି ଧରି ।
ସଦ୍‌ଗୁରୁ ବୁଝି ବେଗ କର ଯେ । ୩୧ । ସିନ୍ଧୁ ସୋହଙ୍ଗରେ ଭ୍ରସି-
ଗଲେ ସବେ ସମ୍ଭାଳ ଭୁଲନ୍ତି ଭକତ । ସ୍ୱପନ ପରାଏ ପଶୁରୁଛ
ମୋତେ କଷଣ ହେବ ଜଗତ ଯେ । ସବୁ ଜାଣୁଛ ଆପେ । ସଦା
ଭକ୍ତଙ୍କୁ ମାରୁଛ ଖାଞ୍ଜେ । ଶୋଧି ପଶୁରୁଛ ବାନ୍ଧ ରୂପେ । ସର୍ବଭୂତେ
ଅନ୍ତର୍ଯ୍ୟାମୀ ରୂପେ । ସଦା ବସିଜୁଛ ଆପେ ସୁଖେ ଯେ । ୩୨ । ହବ
ହବ ବୋଲି ହାକ କରୁଅଛ ଭକତ ମୁଖେ ପ୍ରକାଶି । ହେଲା ନାହିଁ
ସୁଖ ବଢ଼ିଯାଉଅଛୁ ଅବନା ମଣ୍ଡଳବାସୀ ଯେ । ହାସ୍ୟ କରୁଅଛନ୍ତି ।
ହଟା ଦେବେ ନବଖଣ୍ଡ ପୃଥ୍ୱୀ । ହକ ନ୍ୟାୟକୁ ଦେଲେଣି ପୋତି ।
ହୃଦ୍ଦ ମହିମାକୁ ନ ଜାଣନ୍ତି, ହତ ହୋଇଯିବେ ମନ୍ଦ ମତି ଯେ । ୩୩ ।
କ୍ଷମା ସିନ୍ଧୁ ପାଦେ ଭଜ ଭଜ ଆମ୍ଭେ ଖାର ପାଉଁଶ ଆସନ । ବୃଷ

Digitized by srujanika@gmail.com

ବଳକଲ ପାଟ ଲୁଗା କରଣ ତେଜିଲୁ ଝୀନ ବସନ ଯେ । ସତ୍ୟ ହେଉ ଜଗତ । କ୍ଷଣେ ସମ୍ଭାଳ ତୁମ୍ଭ ଭକତ । କ୍ଷମେ ଭଣେ ଖ୍ରମ ଅରକ୍ଷିତ । ଗୁରୁପାଦେ କର ପ୍ରଣମିତ । କ୍ଷମାକର ସ୍ୱାମୀ ଦୋଷ କୃତ ଯେ । ୩୦ ।

-o-

( ୧୧ )

(କ) କାହିଁଗଲେ ମୁଁ ବଞ୍ଚିବ ଦିନ, କଳିଯୁଗ ଏମନ୍ତ ଭୁଅଣ, କରତା ପୁରୁଷ କାରଣ ନକଲେ, ଘଣ୍ଟା ଦୁଆରେ ଦେଲେଣି ଜାଣ ହେ ମହିମା ॥ ଖାତ ଭିତରେ ପକାଇ ମୋତେ, ଖ୍ୟାତି ଗଞ୍ଜଣା ଦେଲେ ସମସ୍ତେ, କ୍ଷମାସାଗର ଉଦ୍ଧାର ନ କଲେ, ଖତ ହୋଇଲୁଣି ଅନ୍ତେ ଜାଣ ହେ ମହିମା ॥ ଗୋଡ଼ ପୋଡ଼ୁ ଅଛନ୍ତି ଗାତରେ ଗାଣ୍ଠି ପ୍ରପେ ଗଡ଼ାଇ ଭୂମିରେ, ଗୁରୁଦେବ ସ୍ୱାମୀ ଉଦ୍ଧାର ନ କଲେ ଜ୍ଞାନ ହଜିଲା ଦଣ୍ଡ ଶାସ୍ତିରେ ହେ ମହିମା । ଘିଞ୍ଚି ନେଉଛନ୍ତି ବଳେ ଧରି, ଘୋଟି ଅଛନ୍ତି ଚଉଦାହାରି, ଘେନ ମୋ ବଦନଶ୍ରୀ ପରୀକ୍ଷା ନ ଦେଲେ, ଘାଣ୍ଟି ପକାଉଛନ୍ତି ନଷ୍ଟେ ମାରି ହେ ମହିମା ॥ ଅନାଇଛୁ ମୁହିଁ ଆକାଶକୁ, ଅଣାକାରଙ୍କ ପାଦତଳକୁ; ଅଣରୂପ ପ୍ରଭୁ ଶାହିକରି ନାଅ, ଆସି ଉଦ୍ଧାର ଆମ୍ଭମାନଙ୍କୁ ହେ ମହିମା ॥ ଚକ୍ର ନାହିଁ ମୋ ଚରଣ ହେନ, ଚର୍ମ ଦେହେ ପଡ଼ୁଛି ବାନ୍ଧେଣି, ଚାଲିଆସି ପ୍ରଭୁ ଝଟତିରେ ବୁଝ, ଚିଦାନନ୍ଦ ଅବ୍ୟକତ ମଣି ହେ ମହିମା ॥ ଛଟପଟ ହେଲଣି ଜୀବନ, ଛୁଟି ପିଟି ଦେବାରୁ କଷଣ, କ୍ଷମାନନ୍ଦ ପ୍ରଭୁ ପ୍ରତ୍ୟକ୍ଷରେ ଦେଖ, ଛୁଡ଼ୁଅଛି ମୋ ପିଣ୍ଡ ପରାଣ ହେ ମହିମା । ୭ । ଜଗି ବସି ଅଛନ୍ତି ନବଦ୍ୱନ୍ଦେ, ରଜ୍ଜୁ ଲଗିଅଛି ମୋର କନ୍ଧେ, ଜଗତ କରତା ଯୋଗୀ ବେଶ ଧରି, ଜାଣି ବିଜୟ କଲ ବ୍ରହ୍ମାଣ୍ଡେ ହେ ମହିମା । ୮ । ଝାଞ୍ଜି ସହିଥିବ ମୁହିଁ କେତେ, ଝଟଡ଼ାରେ ପଡ଼ଣ ନାରତେ, ଝଞ୍ଜିକାରୁ ପ୍ରଭୁ ଶାହି କରନାଅ, ଝଡ଼ ପଡ଼ୁଅଛି ମୁଣ୍ଡଚୁଡ଼

Digitized by srujanika@gmail.com

ହେ ମହିମା । ୯ । ନିରଞ୍ଜନ ପ୍ରଭୁ ଆଶ୍ରା କରି, ନିଶି ଦିବସରେ ଅନୁସରି, ନିଗମ ପଥ ଏ ନବୁଝିଣ ନରେ, ନିନ୍ଦା କରୁଛନ୍ତି ମାନଙ୍କରି ହେ ମହିମା । ୧୦ । ଟଳ ଟଳ ହେଲାଣି ମୋ ପିଣ୍ଡ, ଟେକି କରୁଛି ଦେବାରୁ ଦଣ୍ଡ, ଟିକେ ବୁଝାମଣା ନ କଲେ କରୁଣା, ଟାଣି ଭାଙ୍ଗି ହେବ ଖଣ୍ଡ ଖଣ୍ଡ ହେ ମହିମା । ୧୧ । ଠେଙ୍ଗା ଧରିଛନ୍ତି ଜଗି ରହି, ଠିଆ ମହି ଦାଣ୍ଡରେ କହି, ଠିକେ ଭଣେ ଭୀମ ଠାକୁରଙ୍କ ହନୁ ବର୍ଣ୍ଣିବାକୁ ବୁଦ୍ଧି ଦିଶୁନାହିଁ ହେ ମହିମା । ୧୨ ।

(ଡ) ଡରୁଅଛୁ ପଞ୍ଚ ଆତ୍ମା ଜୀବ, ଡାକ ନ ଶୁଣ ପ୍ରାଣବଲ୍ଲଭ ଡଙ୍ଗରଙ୍କ ହସ୍ତେ ପକାଇଛ ମୋତେ, ଦଣ୍ଡ କେତେଦିନ ଯାଏ ଥିବ ହେ ମହିମା ॥ ଢେଉ ସହୁଥିବ ମୁହିଁ କେତେ, ଢଳ ଢଳ କରାଉଛ ମୋତେ, ଢଙ୍ଗ ରଙ୍ଗ କଥା ଅନ୍ତର୍ଗତେ ଜାଣି, ଢାଳେ ଉଦ୍ଧରଣ ଧରି ବେଗେ ହେ ମହିମା ॥ ଅନନ୍ତ ପୁରୁଷ ଶନ୍ୟହରି, ଅନାଇଛୁ ମୁହିଁ ଆଶା କରି, ଅଣହେଳା ମୋତେ ନ କରିଣ ପ୍ରଭୁ, ଅନୁବ୍ରତେ ଥିବ ଦୟା କରି ହେ ମହିମା ॥ ତମ ତମ ମୁଁ ସହିବି କେତେ, ତାନ ପକାଉଛନ୍ତି ସମସ୍ତେ, ତ୍ରିଗୁଣ ସଂସାର ମାୟାରେ ପ୍ରବୃତି ତାଙ୍କ ନୋହୁଛି ଆଗ ପଛନ୍ତେ ହେ ମହିମା । ୧୬ । ଥୋଇ ଅଛନ୍ତି ବନ୍ଧି ମନ୍ଦିରେ, ଧର୍ମ ଭୁତ ଲାଗୁଛି ମନରେ, ସ୍ଥାବର ପର୍ବତେ ବସିଛି ଏକାନ୍ତେ, ନାମ ଭରସା କରି ଶୂନ୍ୟରେ ହେ ମହିମା । ୧୭ । ଦୁଃଖିଜନ ବନ୍ଧୁ ଅଟ ପ୍ରଭୁ, ଦୁଃଖ ଜାଣୁଥିବ ମୋର ସବୁ, ଦୁରୁଦଶା ଦଣ୍ଡ କରି ଖଣ୍ଡ ଖଣ୍ଡ, ତାହା ନିବାରି କରିବ ସବୁ ହେ ମହିମା ॥ ଧର୍ମପରାଣି ଅଟଇ ମୁହିଁ, ଧନ୍ୟ ଧନ୍ୟ କଳିଯୁଗ ଏହି, ଧର୍ମାର୍ଥୀ ପୁରୁଷ ଉଦ୍ଧାରଣ କରି, ଧରି ଧରି ହୃଦେ ଦୟାବହି ହେ ମହିମା । ୧୯ । ନାମ ନିବାଶ ହେଲାଣି ମହୀ, ନାରାୟଣ ପ୍ରଭୁ ପାଇ ଥାଇ ନିରବେଦ ବହି ଏ ମର୍ତ୍ତ୍ୟମଣ୍ଡଳେ, ନିଷ୍ଠାଧର୍ମ ସ୍ଥାପିଦେଲ ମହୀ ହେ ମହିମା ।୨୦। ପଛେ ପଣ୍ଡିତ ବ୍ରାହ୍ମଣ କବି, ପଦ୍ମପୁଷ୍ପରେ ଅଛନ୍ତି ଲାଗି, ପରମପୁରୁଷ

Digitized by srujanika@gmail.com

ବସ୍ତରଣ ବୁଝି, ପାପ ପୁଣ୍ୟକର ଅନୁଭବ ହେ ମହିମା । ୨୧ । ଫାନ୍ଦ ପକାଇଛନ୍ତି ଜଗତେ, ଫିସାଦଅଟେରେ ଅଣଆସୁଚେ, ଫାଙ୍କକରୁଛନ୍ତି କଳିଯୁଗ ନରେ, ଫାନ୍ଦ ପୋତୁଅଛନ୍ତି ମିଛରେ ହେ ମହିମା । ୨୨ । ବନ୍ଦୀ ମନ୍ଦରେ ଦେଇ କବାଟ, ବନ୍ଦ କରୁଛନ୍ତି ନଟକୂଟ, ବାର ବଧି ବାନା ଉଦ୍ଧାର ନ କଲେ, ବୁଦ୍ଧି ଭଜ ହଜନ୍ତି ଅଣ୍ଡ ହେ ମହିମା । ୨୩ । ଭ୍ରମ ଅରକ୍ଷିତ କହୁଅଛି, ଭୟ କାତରେ ଦେହ କମ୍ପୁଛି, ଭସି ଯାଉଅଛି ଅକୂଳ ସମୁଦ୍ରେ, ହବେ ଉଦ୍ଧର ଧରିବ ବାହୁ ହେ ମହିମା । ୨୪ ।

(ମ) ମାରୁଛନ୍ତି ମନ୍ଦ କଥା କହି, ମାଡ଼ ନ ପାରଇ ଦେହ ସହି, ମହିମା ନାମକୁ ମନର ଭିତରେ, ହୃଦପଦ୍ମେ ଅଛି ମୁହିଁ ଧ୍ୟାୟି ହେ ମହିମା ॥ ଜୀବନକୁ ନାହିଁ ମୋର ଆଶ, ଜ୍ୱର ଶଲ୍ୟାରେ ଦେହ ଅଳସ, ଯମ ପରଏକ ଲଗୁଛନ୍ତି ମୋତେ, ଜାଣି ବଜାୟେ କରଣ ଆସ ହେ ମହିମା ॥ ରଖ ରଖ ମୋର ପିଣ୍ଡ ପ୍ରାଣ, ରସା ମେଦନୀରେ ନାରାୟଣ, ରକତ ଦେଖିଣ ପ୍ରେତ ଯିବେ ନର, ରକ୍ଷା କରୁଛି ମୁହିଁ ଜଣାଣ ହେ ମହିମା । ୨୭ । ଲଘୁଦଶା ପକାଇଛ ମୋତେ, ଲୋଭ ମାୟାରେ ଅଣଆସୁଚନ୍ତି, ନାଗର ପଣିଆ ବୁଦ୍ଧିମାନ ଦେଖି, ଲଗି-ଛନ୍ତି ମରିବା ପର୍ଯ୍ୟନ୍ତେ ହେ ମହିମା । ୨୮ । ବ୍ରହ୍ମ ମହିମା ପର ଅପାର, ବେଗେ ବୁଝାମଣା ଏବେ କର, ବଣା ହେଉଛନ୍ତି ବିଷୟା ମଦରେ, ବଡ଼ ପଣରେ ଅଜ୍ଞାନୀ ନର ହେ ମହିମା । ୨୯ । ଶୂନ୍ୟ ଶୂନ୍ୟ ମହାଶୂନ୍ୟରୂପୀ, ସଙ୍ଖ୍ୟା କରି କେ ପାରିବ ଲେଖି, ସକଳ ଶରୀରେ ଅଲେଖଙ୍କ ବାସ, ସର୍ବ ଘଟେ ରହିଅଛୁ ବ୍ୟାପୀ ହେ ମହିମା । ୩୦ । ଷଡ଼ଚକ୍ର ଉଦରେ ବିହାର, ସାକ୍ଷୀ ରୂପେ ଅଛ ଅଣାକାର, ଶରଣ ସମ୍ଭାଳ ରଖ ଏ ଭୃତ୍ୟକୁ, ଶିର ଢାଙ୍କୁଛି ଗୁରୁ ପୟର ହେ ମହିମା । ୩୧ । ମାଧି ମାରୁଛନ୍ତି ଶତ୍ରୁପଣେ, ସ୍ୱାମୀ ଦଣ୍ଡ ଦେଇ ଅକାରଣେ, ଶାନ୍ତଶୀଳ ଦୟା ହୃଦରେ ବହିଛ, ସତ୍ୟ ବୁଝାମଣା

Digitized by srujanika@gmail.com

କରି ବେଗ ହେ ମହିମା । ୩୨ । ହିତକାରୀ ଏ ନୁହନ୍ତି କେହି,
ହିଂସା ଅହଙ୍କାର ଦେହ ବନ୍ଧି, ହରିହର ବ୍ରହ୍ମା ଧରଣୀ ଆକାଶ, ସାକ୍ଷ୍ୟ
ଅଛନ୍ତି ମୁଁ ଦେଲି କହି ହେ ମହିମା । ୩୩ । ଫେଣ୍ଟି ଖଣ୍ଡ ହେଲଣି
ମୋ ଦେହୀ, ଖଳ ବଳ ରୁଧିର ବହଇ, କ୍ଷମାହ ସାଗର ଉଦ୍ଧାରଣ
କରି, କ୍ଷମେ ଭଣେ ଭୀମସେନ ହୋଇ ହେ ମହିମା । ୩୪ ।

—o—

( ୧୨ )

(କ) କରତାଙ୍କୁ ଭଜ ବୋଲନ୍ତେ କଳି ହୋଇ ଧାଇଁଲ ।
କାମ କ୍ରୋଧ ହିଂସା ମୋହକୁ ହୃଦସ୍ଥରେ ବହିଲ । ୧ । କ୍ଷମାଧି
ସାଗର ପ୍ରଭୁଙ୍କୁ ସର୍ବେ ଡାକ ହେ ଉଚ୍ଛେ । ଫଳ ଫଳ ହସି ବୋଲନ୍ତି
ତୁମ୍ଭ ମହିମା ମିଛେ । ୨ । ଗୁରୁଦେବ ଉଦେ ହୋଇଲେ କେହି
ଚହ୍ନିଲେ ନାହିଁ । ଜ୍ଞାନ ଜାଣୁ ଅମ୍ଭେ ବୋଇଲେ ମନେ ଗରବ
ବହି । ୩ । ଘଟେ ଘଟେ ପୂରି ଅଛନ୍ତି ମାନ ଦୁପର ପରି ।
ଘର-ଦ୍ୱାରମାନ ଛାଡ଼ିଲେ ନଷ୍ଟେ ଗେଲେରେ ବୁଡ଼ି । ୪ । ଅଲେଖ
ମହିମା ନାମ ହେ କଳି ଯୁଗରେ ସତ୍ୟ । ଅଳପକେ ନାଶ ଯିବରେ
ନଷ୍ଟେ ହୋଇବ ଭୂତ । ୫ । ଚିଦାନନ୍ଦ ଯେଉଁ ପୁରୁଷ ସର୍ବ ଜୀବ
କରତା । ସ୍ତୁତି କରିଣ କହୁଛ ଏ ଯେ କେବଣ କଥା । ୬ । ଛାଡ଼
ବେଦପୁରି ବାସୀଙ୍କି ସର୍ବେ ଭଜ ହେ ଚେତି । ଗ୍ରନ୍ଥକାର ବଚନ
ଗୋଟାକୁ ତୁମ୍ଭେ କରୁଛ ପୋଥି । ୭ । ଯୋଗୀ ବେଶ ଧରି ଅଛନ୍ତି
ତିନି ବ୍ରହ୍ମାଣ୍ଡ ରଖି । ଯାଇ ଆସି କରି ଦେଖୁଛ ତୁମ୍ଭ ଗୁରୁ
ସ୍ୱାମୀଙ୍କି । ୮ । ଝାଡ଼ରି ଭିତରେ ଧରିଣ ପ୍ରଭୁ କରିବେ ପାରି ।
ଝଞ୍ଜିକାରେ ପଡ଼ି ସମସ୍ତେ ଯାଉ ଅଛରେ ବୁଡ଼ି ॥ ନାମ ବ୍ରହ୍ମ ଆଶ୍ରେ
କର ହେ ଦୋଷ କରିବେ କ୍ଷମା । ନାହିଁ ବୋଲି କରି ଡାକ ହେ
ତୁମ୍ଭ ଗୁ ରୁ ମହିମା ॥ ଠାଣେ ଭଜଥିଲେ ଯମ ହେ ଦଣ୍ଡେ ନାହିଁନା
ଜିବ । ଠୋକା ପରିଯନ୍ତେ କେହୁ ହେ ସର୍ବ ଘରେ ଭୁଞ୍ଜିବ ॥ ଠିକ

Digitized by srujanika@gmail.com

ଠିକ ପଦ ଯୋଡ଼ନ୍ତେ କେହୁ ନାହିଁ ସମ୍ଭଳେ । ଠକୁଅଛୁ ସ୍ୱାମ ଅକ୍ଷିତ ଜଗତରେ ବୋଇଲେ ॥

(ଡ) ଡୋଳେ ଦେଖ ତନ ବ୍ରହ୍ମାଣ୍ଡେ ନଜ ରୂପରେ ଢଳେ । ଡବଇ କହୁଛ ଆମ୍ଭଙ୍କୁ ତୁମ୍ଭ ମହିମା ଭଜେ ॥ ଡାକୁଣୀ ଭିତରେ ରକ୍ଷକ କହୁ ନଥିବ ଶଙ୍କା । ଡାକିଯିବୁ ପଛେ ନଭଜ ତୁମ୍ଭ ମହିମା ଘୋଷା । ୧୦ । ଅଲେଖ ମହିମା ନାମ ହେ ଘୋର କଳିଯୁଗରେ । ଅସୁଖ ଲଗୁଛି ଅନ୍ନଙ୍କୁ ପଞ୍ଚଭୂତ ଆତ୍ମାରେ ॥ ତଥିବ ଯେମନ୍ତେ ସମସ୍ତେ ନାହିଁ ଜାର ଅନ୍ତରା । ସୃଷ୍ଟିମାନେ ଭଜୁଅଛନ୍ତି ଏ ଯେ କେବଣ କଥା ॥ ଥଳେ ଜଳେ ପୂରି ଅଛନ୍ତି ଘଟେ ନିରଞ୍ଜଣ ନାହିଁ । ସୃଷ୍ଟି କର ବ୍ରୁ ରୁଦେବଙ୍କୁ ତୁମ୍ଭେ ରଖିଛ କାହିଁ । ୧୭ । ଦାଇବ କରତା ଅଟନ୍ତି ତ୍ରିଭୁ ଶ୍ରୀଗୁରୁ ହେବେ । ଦେଖିବୁ ଯେମନ୍ତେ ସ୍ୱରୂପ ତେବେ ଭଜିବୁ ଆମ୍ଭେ ॥ ଧର୍ମାନ୍ଧ ପୁରୁଷ ଅଲେଖ ନାମ ଅଟେ ନିର୍ଗୁଣ । ଧରିଅଛୁ ଆମ୍ଭେ ସମସ୍ତେ ଭାଗବତ ପୁରାଣ । ୧୯ । ଝଡ ନୁହେଁ ନାମ ବ୍ରହ୍ମକୁ ତୁମ୍ଭେ ନଚିହ୍ନି ବୁଝ । ନଯୁନ ନାସିକା ଅଗ୍ରକୁ ତୁମ୍ଭେ ଚିହ୍ନି ଣ ହେଜ । ୨୦ । ପରମ ଭଗତି କର ହେ କହୁ ନାହିଁ ବାହାର । ପାପ କର୍ମ ଗୋଟା ଅର୍ଜୁଛ କରି ଅଣ ଆଚାର । ୨୧ । ଫଣି ଫଣି ଜ୍ୟୋତି ଧାର୍ମିକ ମଧ୍ୟେ ଭଜ ହେ ଚେତ । ଫୁଲପଣ କର କହୁଛ ତୁମ୍ଭେ କର ଅରିଷ୍ଟି । ବ୍ରହ୍ମାଣ୍ଡ କରତା ବଚନ ତୁମ୍ଭେ ନୁହ ଅଧମ । ବାଜନ ଫାଟକ ଜାତିକୁ ତୁମ୍ଭେ କରିଛ ସମ ॥ ସ୍ୱାମ ଅରକ୍ଷିତ କହୁଛି ମୁଣ୍ଡ ପଡ଼ିବ ଗିରି । ଭଜଣ ଗୁରୁଙ୍କୁ ଧ୍ୟାଇବ ପୁଅ ଭାରିଯା ଧରି । ୨୪ ।

(ମ) ମହିମାକୁ ଭଜ ଗୋଷ୍ଠିରେ ଆମ୍ଭେ ମିଶାଇ ନେବୁ । ନ ଭଜିବୁ ପଛେ ମହିମା ଆମ୍ଭେ ଜାତିରେ ଥିବୁ । ୨୫ । ଜଗତନାଥଙ୍କୁ ଭଜ ହେ ସର୍ବଜ୍ଞାନ ଦଶିବ । ଜାତି ଗୋଟା ସବୁ ଛାଡ଼ିଲେ କାହିଁ ମିଶି ନୋହିବ । ୨୬ । ଋଷିଗଣ ସାଧୁମାନେ ଯେ ଯୁଗେ ଯୁଗେ ରହିବେ ।

Digitized by srujanika@gmail.com

ରକତ ମାଉଁସ ଦେହ ସେ କାହିଁ ବୈଷ୍ଣବ ହେବେ । ୨୭ । ଲଭି ନୁହେଁ ନାମ ବ୍ରହ୍ମକୁ ତୁମ୍ଭେ ନ ବୋଲ ବେ'ଢ଼ । ଲେଭେ ନାହିଁ ପାର ଘୁଙ୍ଗୁବୁ ଧନ ପୁଅ ଭାରିଯା ॥ ବେଦ ବେଦାନ୍ତରେ ଖୋଜ ହେ ସବୁ ସ୍ୱ-ହସ୍ତେ ଅଛୁ । ଖୋଜ ଖୋଜ ଭୂତ ହୋଇଲୁ ନାହିଁ ପାଇଲୁ କଛୁ ॥ ସାର ବ୍ରହ୍ମ ଗୁରୁଦେବଙ୍କୁ ତୁମ୍ଭେ ନୁହଁ ଚୁହଁଆଁ । ସର୍ବ ଜୀବ ସମ କହୁଛ ତୁମ୍ଭେ ଦୃଷ୍ଟିଆ ନାଆଁ ॥ ସମୁଦ୍ର ଚରସ୍ଥ ଅନନ୍ତ ପ୍ରଭୁ ମହିମା ସେହୁ । ସୁଖେ ଥିବୁ ଆମ୍ଭେ ଦରିଦ୍ର ଦୁଃଖ ପାଇବ କେହୁ ॥ ସତ୍ୟାଦ୍ଧି ସାଗର ପ୍ରଭୁଙ୍କୁ ସର୍ବେ ଲଗାଅ ଧ୍ୟାନ । ଶୂନ୍ୟ ଶୂନ୍ୟ ମହାଶୂନ୍ୟକୁ ପ୍ରତେ ନଗଲ୍ ମନ । ୩୨ । ହରତା କରତା ଅନନ୍ତ ପ୍ରଭୁ ଶ୍ରୀଗୁରୁ ଦେବ । ହୀନମାନ ହୋଇ ସଂସାରେ କେହୁ ମାଗି ଖାଇବ ॥ ଖଟୁଆ ମେଳରେ ପଡ଼ିଣ ଚିତ୍ତ ନୋହୁଛୁ ଥିର । କ୍ଷମାସାଗରଙ୍କୁ ସୁମର ଭୀମ ଅର୍ଯିତ କହେ । ୩୪ ।



( ୧୩ )

(କ) କଳିଯୁଗେ କରତା ବଜାଇବ୍ରେ ରବତଳେ । କର୍ମେ ଥିଲେ କୃପା ମୋତେ ହେଉ ଏତେବେଳେ । କରଯୋଡ଼ି ଯେ । କହୁଅଛୁ ପାଦତଳେ ପଡ଼ି ଯେ । ୧ । କ୍ଷୀରସିନ୍ଧୁ ବାସୀ ବ୍ରହ୍ମ କ୍ଷୟବୃଦ୍ଧି ନାହିଁ । କ୍ଷିତ ଭାର ଖଣ୍ଡିବା ନିମନ୍ତେ ଭବଗ୍ରାହୀ । କ୍ଷମାକର ଯେ । ଖଳ ବଳ ହେଉଛୁ ସଂସାର ଯେ ॥ ଗରବ ଗଞ୍ଜନ ବାନା ଗରୁଡ଼ ଆସନ । ଗୁରୁରୂପେ ଜ୍ଞାନରେ ତାରିବେ ଭକ୍ତଗଣ । ଗଡ଼ାଗଡ଼ି ଯେ । ଗତଧର୍ମ ଦାଣ୍ଡେ ଅଛୁ ପଡ଼ି ଯେ ॥ ଘୋଟିଅଛୁ ଘୋରମାୟା ଜୀବନ ନରଭେ ଘନ ପ୍ରାୟେ ଘାଣ୍ଟି ହୋଇ ମରୁଅଛୁ କେତେ । ଘଡ଼ିକରେ ଯେ । ଘାଏ ତୋତେ ନ ଚଳିବେ ଘରେ ଯେ ॥ ଅନଳ ଅରୂପ ଧାମ୍ନି ଅନ୍ତରରେ ଜପ । ଅଣ ସାଧନାରେ ଚିତ୍ତ ଅନୁକ୍ଷଣେ ରଖ । ଅଣାକାର ଯେ । ଅଲେଖ ଦର୍ଶନେ ହେବୁ ପାର ଯେ । ୫ । ଚୁହିଁ

Digitized by srujanika@gmail.com

ଦେଖିଲେ ଚନ୍ଦ୍ରମା ପ୍ରାପ୍ତେକ ଉଦେ ଜ୍ଞନ । ଜ୍ୱଳନ୍ତ ଯନ୍ତ୍ରକୁ ସୂକ୍ଷ୍ମେ କର ଅନୁମାନ । ଚମତ୍କାର ଯେ । ଚମକ ଚଢ଼ୁଛି ସବଠାର ଯେ ॥ ଛଡ଼ ବେଦ ପରେ ଗ୍ରୁପ୍ତାତ୍ମପେ ଛନ୍ତ ଦ୍ରଷ୍ଟ । ଦ୍ରୁତି ଦମ୍ଭ କଲେ ଗ୍ରୁଇ ଦ୍ରଷ୍ଟକେ ଦେଖିବୁ । ଛଛନ୍ଦ୍ରରେ ଯେ । ଛଧୀ ବାନା ଉଡ଼ୁଛି ସେଠାରେ ଯେ । ୭ । ଜ୍ୟୋତିର୍ମୟ ବ୍ରହ୍ମ ଜାତ ଗୋଚ ନାହିଁ ଜାଣ, ଜାଗି ପାରିଲେ ଯତନେ କରିବୁ ଦର୍ଶନ । ଜାଗ୍ରତରୁ ଯେ । ଯୋଗକୁ ଧରିଛି କନ୍ଧ ଧରୁ ଯେ ।୮। ଝଡ଼ ତୁ ନପଡ ଝର ମୁଣ୍ଡେ ଥାଅ ବସି । ଝିମ୍ପାଇଲେ ଝଟତରେ ଲଗାଇବେ ଋସି । ଝଞ୍ଜକାର ଯେ । ବଣା ହେବୁ ଝାଡର ଭିତର ଯେ ॥ ନାରାୟଣ ନଶୀ ଦିବସରେ କର ଲକ୍ଷ୍ୟ । ନାମକୁ ଭଜିଲେ ନଷ୍ଟେ ହୋଇବୁ ଅକ୍ଷୟ । ନାଗ ଦେବ ଯେ । ନର ଦେହେ ଲଗାଅ ତୁ ଭାବ ଯେ । ୧୦। ଟାକଅଛି ପିଣ୍ଡେ ପ୍ରାଣଟିଏ ପରିଯନ୍ତେ । ଟାକିନ ପାରୁନ୍ତୁ ଟେକ ନେବେ ଯମଦୂତେ । ଟାଳଦେଇ ଯେ । ଟେଳା ପ୍ରାପ୍ତେ ଯେନପିବେ ବନ୍ଧ ଯେ । ୧୧ । ଠାକୁର ହୋଇ ଠକୁନ୍ତ ସବ ଘଟେ ରହି । ଠାବ ଗ୍ରୁଡ଼ ଠଣାକର ଅନ୍ୟ ଘଟେ ଯାଇଁ । ଠିକେ ସତ୍ୟ ଯେ । ଠାରି କହେ ଖ୍ରୀମ ଅରକ୍ଷିତ ଯେ । ୧୨ ।

(ଡ) ଡାକ ଉଛେ ଡେରି ନଦେଇଛନ୍ତି କର୍ଣ୍ଣ ଦୁଇ । ଡଙ୍ଗରକୁ ଦେଖି ଡର ମରୁଛ କମ୍ପାଇଁ । ଡୋଳେ ଦେଖ ଯେ । ଡାଳ ଗ୍ରୁଡ଼ ଧର ମୂଳ ବୃକ୍ଷ ଯେ । ୧୩ । ଢ଼ାଉଢମାଳରେ ଶତ୍ରୁ କରୁଅଛୁ ବଶ । ଢାଳେ ଦେଁ ଢୋକୁନ୍ତୁ ତୁ ଗରଳ ନାଗ ବିଷ । ଢମକାଇ ଯେ । ଜ୍ଞାନ ଦେଖ ଢ଼ାକୁଣିଫିଟାଇ ଯେ । ୧୪ । ଅଣ ସାଧନାରେ ଅନୁସରି ଦୃଢ଼େ ଧର । ଅଣିମା ଅଷ୍ଟନଧିଙ୍କି ଅନ୍ତେ ନ ସୁମର । ଅଣରୂପ ଯେ । ଅଣି ଅନୁଭବ ସ୍ୱଚ୍ଛେ ଜପ ଯେ ।୧୫। ତାକୁ କାଦୁଅରେ ବଳେ ତୈଲୋକ୍ୟ ଗୋସାଇଁ । ତିଭୁବନ ଯା ଅଙ୍କରେ ଉଦେ ଅସ୍ତ ହୋଇ । ତତ୍ତ୍ୱ କର ଯେ । ତିଭୁବନ ତୈଲୋକ୍ୟ ଠାକୁର ଯେ ।୧୫। ଥରହର ହୋଇ ପିଣ୍ଡେ ପ୍ରାଣ ନ ରହୁଛି । ଥୟ ନାହିଁ ଦେହ ଆତ୍ମା ଥାନ ଲେଉଟୁଛି ।

Digitized by srujanika@gmail.com

ଥିନ୍ତି ନାହିଁ ଯେ । ଥିବ କେତେଦିନ ମର୍ତ୍ତ୍ୟ ରହିବ ଯେ ॥ ଦୁଃଖ ଦେଇ ଦରିଆରେ ଭସାଉଛ ମୋତେ । ଦାଉ ଦୁରୁଦନ୍ତ ଦଶା ସମ୍ଭାଳିବ କେତେ । ଦରଶନ ଯେ । ଗଲେ ସ୍ୱାର୍ଥ ହେବ ଏ ଜୀବନ ଯେ । ୧୮ । ଧରିଥିବ ପ୍ରଭୁ ପାଦ ଧ୍ୟାଇ ଅନ୍ତର୍ଗତେ । ଧାଇଁ ଯାଉଅଛି ଧ୍ରୁବମଣ୍ଡଳ ପର୍ଯ୍ୟନ୍ତେ । ଧର ଭୁଜ ଯେ । ଧାରଣା ଗୁଡ଼ାଲେ ଯିବ ଦେହୀ ଯେ ॥ ନାମ ନିଷ୍ଠା ନିରନ୍ତରେ ପିଣ୍ଡକୁ କାରଣ । ନ ଚିହ୍ନି ପାରୁଛ ସଦଗତି ବ୍ରହ୍ମ ଜ୍ଞାନ । ନୟନରେ ଯେ । ନବଘନ ରୂପ ଏ ଶରୀରେ ଯେ ।୨୦। ପ୍ରକାଶ ହୋଇଛି ପାର ହୁଅ ଏତେବେଳେ । ପ୍ରାଣ ଗୁଡ଼ିଯିବ ତୋ କାମନା ପୂର୍ଣ୍ଣ ହେଲେ । ପ୍ରଳୟରେ ଯେ । ପଡ଼ିଯିବ ଏ ଘୋର ସଂସାରେ ଯେ । ୨୧ । ଫଳ ଲୋଭେ ଫୁଲ ପଣେ ମରୁଅଛୁ ଫୁଟି । ଫାଳ ଫାଳ ହେବ ତୋର ଫିଟିଗଲେ ଗଣ୍ଠି । ଫନ୍ଦା ଲୋଡ଼ ଯେ । ଫଳ ଲୋଭେ ମରୁଅଛୁ ବୁଡ଼ ଯେ ।୨୨। ବସା ଘରେ ବାସୁଦେବ ଅଛନ୍ତି ଯେ ରହି । ବାସନା ବଶ୍ୟରେ ପୂର୍ବ ହେଉଛୁ ଚେତାଇ । ସାର ବାନା ଯେ । ବାଟ୍ଧି ଭଯ୍ଯକୁ ବକ୍ର ସେହ୍ନା ଯେ । ୨୩ । ଭାବ ଭରସା ମୁଁ କରିଛି ବହୁତ । ଭାବେ ଭରି ଉଶ୍ୱାସିବେ ଅଲେଖ ଅବଧୂତ । ଭବ ନଦୀ ଯେ । ଭଣେ ଖ୍ରାମ ସଦା ଅପରାଧି ଯେ । ୨୪ ।

(ମ) ମନକୁ ମୁଁନ ପରିଏ ଅଂସୂତରେ ରଖ । ଜନ୍ମ ମୃତ୍ୟୁ ନାହିଁ ଯହିଁ ଅନାଦି ଅଲେଖ । ମୂର୍ଖ ବାଇ ଯେ । ମାନ ସେବା କଲେ ଜ୍ଞାନ ପାଇ ଯେ ।୩୫। ଜାଣି ଜାଗି ନପାରୁଛ ଜଗନ୍ନାଥଙ୍କୁ । ଯୁବାଦେହେ ଯୁଝି ଖଣ୍ଡେ କାହିଁପାଇଁ ଯାକୁ । ଜନ୍ମ ପିଣ୍ଡେ ଯେ । ଜାତ ହେବୁ କୁମ୍ଭୀ ନର୍କ କୁଣ୍ଡେ ଯେ । ୨୬ । ରଙ୍ଗ ପସରକୁ ରଙ୍କେ ମରୁରେ ପାମର । ରକ୍ତ ପଡ଼ିବ ତୋର ତପତ ଖପର । ବ୍ରିଗ ଋଷ ଯେ । ରଜ ତମ ଗୁଣେ ଯିବୁ ନାଶ ଯେ । ୨୭ । ଲୁଭିବା ଜମନ୍ତେ ଲୋଭେ ଲଗାଇଛୁ ଭାବ । ଲାଳସେ ଗୁଡ଼ ନ ପାରୁ ଲବଣିର ଭୋଗ । ଲଘୁ ହେବୁ ଯେ । ଲୋଭ କଲେ କସ ବନ୍ଧ ନେବୁ ଯେ । ୨୮ । ବସି ବାଞ୍ଛା କରୁଅଛୁ

Digitized by srujanika@gmail.com

ଅକାଳ ମରଣ । ବୃନ୍ଦାବନ ଲଟା ଦେଖେ ବହୁଛି ପବନ । ବାଇ ବର ସେ । ବନ୍ଧା ମନ୍ଦରକୁ ବୋଲୁ ମୋର ସେ ॥ ସୁର ସିଦ୍ଧ ମୁନି ଯାକୁ ନ ପାବନ୍ତ ଭେଟ । ସବୁ ଯାଉଅଛୁ ସ୍ୱପ୍ନେ ନ ମିଳୁଛୁ ବାଟ । ସୋହନ୍ତରେ ସେ । ସାଧି ସାଧି ଗଲେଣି ସଂସାରେ ସେ ॥ ଶଶୀ ଶୁକ୍ଳ ସତ୍ୟବ୍ରହ୍ମ କେଶ ପ୍ରାପ୍ତ ମୋଟ । ମୁ ସତ୍ୟ ଦୁଆରେ ସତ୍ୟ ସଙ୍କଟରେ ଭେଟ । ଶୋଭାକାର ସେ । ସ୍ୱର୍ଗପୁର ନୁହେଁ ପାତାଳର ସେ । ୩୧ । ଶୂନ୍ୟମସ୍ତ ବ୍ରହ୍ମ ବିଜେ ସକଳ ଶରୀରେ । ଶବଦ ହେଉଛୁ ସାକ୍ଷୀ ଶୂନ୍ୟ ମନ୍ଦରେ । ସରସ୍ୱତୀ ସେ । ସର୍ଜି ନ ପାରିଲେ ବେଦପଣ୍ଡ ସେ । ୩୨ । ହରଷେ ଥାଇ ହତ୍ୟାକୁ ହେଉଛୁରେ ଜାଣିଛ । ହେଉ ନୋହୁ ହାନି ଲାଭ ସମାନ ମଣିଛ । ହତ ହେଲେ ସେ । ହତ୍ୟାଦୋଷ ଲଗିବଟି ଭକ୍ତେ ସେ ॥ ଖୋଜ ଖଣ୍ଡବେଳେ କ୍ଷିନ୍ନ ହେଲଣି ଶରୀର । ଖେଳେ ପ୍ରଭୁ ଧରିଛନ୍ତି କ୍ଷିନ୍ନ ଅବତାର । କ୍ଷମାନନ୍ଦ ସେ । କ୍ଷିତି ମଧ୍ୟେ ଜଣେ ଭ୍ରମ କର ସେ । ୩୪ ।



( ୧୪ )

ଅଲେଖ ପୁରୁଷ ଭକ୍ତ ଭାବେ ବଶ ଘୋର ଯୁଗ ମଧ୍ୟେ ଅରୂପ, ବିଜେ ଗୁରୁଦେବ ଅଖିଳ ନମନ୍ତେ ଆସିଛନ୍ତି ଶୂନ୍ୟ ପୁରୁଷ । ଗୁରୁ ହେ । ଅଶେଷ ବ୍ରହ୍ମାଣ୍ଡ ଭ୍ରମିଲ । ହୋଇ ଖଳ ବଳ ଏ ମହୀ ମଣ୍ଡଳ ନାଶିଲ ପରତ୍ୟେ ହଶିଲ । ୧ । ତେଣୁକରି ମୋର ହୃଦ ଦମ୍ଭ ନାହିଁ ହେଉଛୁ ମୁଁ ବଡ଼ ନର୍ମୋକ୍ଷୀ, ଜନ୍ମରୁ ମରଣ ଆଜ ପର୍ଯ୍ୟନ୍ତେ ଅରୂପ ଗୁରୁ ମୋର ସାକ୍ଷୀ । ସୁଜନେ । କାହାଇଁ ଏତେ କର୍ମ କଲି । ମୁକତି ସମ୍ପତ୍ତି ପ୍ରାପ୍ତ ମଣୁଥିଲୁ ଏବେ ଯା ହୋଇଲୁ ବିଫଳ ।୨। ହବାନଳୀ ସୋତେ ଧଇଁବନ ମାଡ଼ୁଛୁ କ୍ଷୀଣ ହିତକୁ ଅନୁସରି, ଅଭସ୍ତ ବ୍ରହ୍ମ ପଦାରବିନ୍ଦ ନ ପାଇ ଏବେ ମରୁଛୁ ଝୁରି ଝୁରି । ସୁଜନେ । ଅନ୍ଧାର ହେଲଣି ଜଗତ । ଅନ୍ତର୍ଯ୍ୟାମୀ ଗୁରୁ ଗୋପନ ହୋଇଲେ ଅନାସ୍ତ ହୋଇଲେ ଭକତ । ୩ । କେତେଦିନେ ପ୍ରଭୁ ଦର୍ଶନ ମିଳିବ ସମ୍ଭାଳ

Digitized by srujanika@gmail.com

ନୋହୁଛୁ ଧଇର୍ଯ୍ୟ । ଦିବସ ରଜନୀ ଭାବିଲେଣି ପଡୁଛୁ ନ ଦେଖି ଶ୍ରୀମୁଖ ମୁଜ । ସୁଜନେ । ଭାସିଲା ଆମ୍ଭର ଭରସା । ବାହ୍ୟ ଅନ୍ତର ନେତ୍ରରେ ଦେଖିଥିଲୁ କରିଥିଲୁ ବଡ଼ ସାହସା । ୪ । ଅରୂପ ହୋଇଲ ନିଗମେ ରହିଲୁ କି ବୋଲିକରିବୁ ପରତେ । କଳିଯୁଗ ନରେଗୁ ତୁଳୁ ନ ଚିହ୍ନି ନିନ୍ଦା କରୁଛନ୍ତି ଜଗତେ । ସୁଜନେ । ସବୁଠାରୁ ହେଲୁ ନିରାଶ । ଗୁରୁଶୂନ୍ୟ ଧର୍ମ ଆମ୍ଭେ କଲୁ ନାଶ । କାହାକୁ ଲଗାଇବୁ ଦୋଷ ॥ ଭକତ ବତ୍ସଳ ମହିମା ସାଗର ଆପଣଙ୍କୁ ଡାକଲେ ଶୁଣିବେ ଅଲେଖ ଗୁରୁଙ୍କୁ ଅନ୍ତରେ ଭାବିଲେ ନିଗମ ମନ୍ଦିରେ ଜାଣିବେ । ସୁଜନେ । ଧୀର ସମୀର ଧାଇ ବସ । ଚିତ୍ତ ମନ ଜାଣି ଭକତଙ୍କୁ ଯେବେ ନିଶ୍ଚୟେ ଗୁରୁ ହେବେ ଦୃଶ୍ୟ ॥ ଏକାପାଦେ ଆଶା ଲଗାଇ ଭରସା ନିଗମ ନିଷ୍କାମ ମନ୍ଦିରେ । କାମନା କଳ୍ପନା ମନରୁ ଛଡ଼ାଇ ଲେଡ଼ିଲେ ନିଷ୍କାମ ବୁଦ୍ଧିରେ । ସୁଜନେ । ଅଳପ ପ୍ରକାଶ ହୋଇବେ ଅତି ମନ ନିଷ୍ଠା ଯେ ଜନ କରିବେ ସଧୀରେ ଗୁରୁଙ୍କୁ ପାଇବେ । ୭ । ଆସନେ ଦର୍ଶନ ଦେବେ ଶୂନ୍ୟବ୍ରହ୍ମ ଚେତେ ଭକତ ଯେ ହୋଇବ । ବୁଦ୍ଧ ନିଜରୂପ ଅତି ତପୋବନ୍ତ ଅଲେଖ ଗୁରୁଙ୍କୁ ଦେଖିବ । ସୁଜନେ, ମାନବ ଶରୀର ନୁହନ୍ତି । ଏ ଘଟରୁ ଛାଡ଼ି ଅନ୍ୟ ଘଟ ଧରି ଚାରିଯୁଗ ଖେଳୁ ଅଛନ୍ତି । ୮ । ଦମ୍ଭେ ଧରିଥାଅ କାତର ଯେ ନୁହ ନିଶ୍ଚୟେ ଭେଟିବ ଗୁରୁଙ୍କୁ । ମ୍ଳେଚ୍ଛ ସଂହାରଣ ନିମନ୍ତରେ ଗୁରୁଗୋପ୍ୟା ନ କଲେ ସତ୍ୟ ଧର୍ମଙ୍କୁ । ସୁଜନେ । ଶ୍ରୀଗୁରୁ ଲବଣ୍ୟ ମୂରତି । ଜଗନ୍ନାଥ ପ୍ରଭୁ କଳଙ୍କି ସ୍ୱରୂପ ପ୍ରକାଶ ହୋଇବେ ଧରତି ।୯। ମହାଘୋରକଳି ଯୁଗ ହେଲା ସନ୍ଧି ପ୍ରଳୟ ହୋଇଲା ଶ୍ରୀଅଙ୍ଗ । ଶୂନ୍ୟର ପୁରୁଷ ଶୂନ୍ୟେ ଖେଳ କଲେ ସମାଧି ହେଲା ଜ୍ୟୋତି ଲିଙ୍ଗ । ସୁଜନେ । ଶୂନ୍ୟଗୁରୁଙ୍କୁ ସର୍ବେ ଡାକ । ନିର ଅଙ୍ଗେ ମିଶି ଖେଳ କରୁଛନ୍ତି ଯାହାର ନାହିଁ ରୂପରେଖ ॥ ଯେ ସନ୍ଧିରେ ଅଛି କୁହନାହିଁ ମିଛ ଅନ୍ତର୍ଗତରେ କର ଲୟେ । ନିର୍ଗୁଣଙ୍କୁ ଧାଇ ସର୍ବେ ଥାଅ ରହି ଅବଶ୍ୟ କରିବେ

Digitized by srujanika@gmail.com

ବଜଯେ । ସୁଜନେ । ମନରେ କର ସତ୍ୟ ବ୍ରତ । ମନକୁ ନିସ୍କାମ କଲେ ଏକଚିତ୍ତ ଗୁରୁ ହୋଇବେ ପରପତ । ୧୧ । ଭକତ ବତ୍ସଳ ଅନାଦ ପୁରୁଷ ସର୍ବ ଘଟେ ପୂରି ଅଛନ୍ତି । ଅନ୍ତର୍ଗତରେ ଅନୁଭବେ ବୁଝିଲେ ସ୍ପଷ୍ଟ ବୁଦ୍ଧି ଗୁରୁ ନୁହନ୍ତି । ସୁଜନେ । ଧର ଏତେବେଳେ ନିସ୍କାମେ । ଦେଖିବ ନିଷ୍ଟଯେ ବାକ୍ୟ ମିଛ ନୁହେଁ ଜ୍ଞାନ ଚକ୍ଷୁ ଦେଇ ନୟନେ । ୧୨ । କେହି ଯେ ନପଡ଼ ମାୟାରେ ନପଡ଼ ନିର୍ବେଦେ ସର୍ବେକର ବ୍ରତ । ଅଲେଖ ପୁରୁଷ ଭକ୍ତ ଘବେ ବଶ ଭେଦ ମାର୍ଗରେ ସର୍ବେ ଲେଡ଼ । ସୁଜନେ । ସୁମର ମନ ଅରୂପକୁ । ଏ ପିଣ୍ଡ ବ୍ରହ୍ମାଣ୍ଡ ଅନୁମାନେ ଭେଦ ସର୍ବେ ଡାକ ଶୂନ୍ୟ ଗୁରୁଙ୍କୁ । ୧୩ । ଏବେଳେ ଅରୂପ ରୂପ ରେଖ ନାହିଁ ନିଗମରେ କଥା ରହିବ । ନିଗମ ଭିତରେ ମନକୁ ରଖିଲେ ସେ ଏକା ଗୁରୁଙ୍କୁ ପାଇବ । ସୁଜନେ । ଶୂନ୍ୟ ଗୁରୁଙ୍କ ପାଦଗତ । ଶୂନ୍ୟ ହୋଇଛନ୍ତି ଏ ତିନ ବ୍ରହ୍ମାଣ୍ଡେ ଭିଣେ ସ୍ୱାମ ହୋଇ ଅର୍ପିତ । ୧୦ ।

—o—

( ୪ )

(କ) କସ ଜଣାଇବ ପ୍ରଭୁ ଶ୍ରୀମୁଖରେ କରଅଛୁ ଯେତେ କର୍ମମାନ । କଳିଯୁଗେ ମୋତେ ଜନମ କରାଇ କରତା ପୁରୁଷ କ ନ ଜାଣ । କାମ କ୍ରୋଧରେ ଦେହ । ଗଢ଼ି ରଜ ସାର୍ଯ୍ୟ ପିଣ୍ଡ ଗୋଟା । କପାଳରେ ମୋର ଲେଖି ଦେଇ କରି କମ୍ପା କରୁଅଛ ହଟହଟା ।୧। କ୍ଷୀର ନୀର ଫଳ ମୂଳ ଆଗି ପ୍ରଭୁ ଭିଆଇ ଥୋଇଛ ଏ ଜଗତେ । କ୍ଷୁଧା ତୃଷା କଲେ ନ ଖାଇବ ଯେବେ କେମନ୍ତେ ବଞ୍ଚିବ କହ ମୋତେ । ଖଞ୍ଜା କରିଅ ଦେହ । ଜାହିଁକ ଏମାନ ଅରଚିଲ । ଖାଇବୁ ଯେବେ ଖରାପ ହେବୁ ବୋଲି ଫେଡ଼ ଯେବେ ସ୍ୱାମୀ ନାସ୍ତି କଲ ।୨। ଗିରିରୁ ଆଣିଲ ଗର୍ଭେ ସ୍ଥିତି ଦେଲ, ଗଢ଼ିଲ ଆପେ ଆପଣ ବସି । ଗାତ ମୁହଁ ବାଟେ ଝିଙ୍କି ଆଣି ମୋତେ ପଶ୍ଚାନ୍ତେ ବୋଲୁଛ ହେଲି

Digitized by srujanika@gmail.com

ଦୋଷୀ । ଜ୍ଞାନ କରିଛ ହେ । ସ୍ବର ଯୁଗେ ରଜ ସାଯ୍ୟ ମେଳେ । ଦେଗରସ୍ତ ଭାର୍ଯ୍ୟା ଯୁକ୍ତ କରିଦେଇ ନାସ୍ତି କରୁଅଛ ଏତେବେଳେ ଘରର ଭିତରେ ଘାଣ୍ଟି ଘାଣ୍ଟି କଲ ମାୟାରେ ପିଣ୍ଡ ବ୍ରହ୍ମାଣ୍ଡ ଭରି । ଭିତରେ ଘରଣୀ ଜୀବକୁ ଥାଇଣ ପରମକୁ ଅଛୁ ସଙ୍ଗ କରି । ଘୋଟି ରଖିଛ ହେ । ସ୍ଵର୍ଗ ମର୍ତ୍ତ୍ୟ ତିନ ସଇଲୋକ । ଝିଙ୍ଗି ଆଣି ଘୋର ବନରେ ପକାଇ ଏବେ ବୋଲୁଅଛ ଦେଖ ଦେଖ । ୪ । ଅନନ୍ତ ଗର୍ଭରେ ଅନ୍ଧାର ମାୟାରେ ବଶ କରୁଅଛ ଏ ଜୀବକୁ । ଆଣି ଯୋନି ଜାଲ ଟାଣେ ବେଢ ବସି ଧୀବର ହୋଇଛ ଦେଖୁ ଦେଖୁ । ଅଧା ପନ୍ଥରି ହେ । କରିଗଲ ମୋତେ ଅଧବାଟେ । ଅଧିକରେ ମୋତେ ଗାଳି ଦେଉଅଛ ଗଡ଼ିଗଲୁ ବୋଲି ନଟକୂଟେ । ୫ । ଚର୍ମରେ ଆଣି ଜୀବକୁ ରଖିଅଛ ଶନ୍ଧାରେ ପକାଇ କଳିଯୁଗ ॥ ଗୃହ ଦିବସକୁ ଆପୁଷ ହୋଇଛୁ ଷସ୍ତ ଯାଉଅଛୁ ପିଣ୍ଡ ବେଗେ । ଚେତା ବୁଡ଼ାଇ ଯେ । ଲଳସେ କମ୍ପା ଚୁମ୍ବନ ଦେଲି । ଦେହରକୁ ଜଗାଇ ପିତା ହୋଇକରି ବୋଲୁଅଛୁ ବାଅର୍ଥରେ ଗଲି । ଗୁସ୍ତା ପ୍ରାପ୍ତ ହୋଇ ଛେକ ଛେକ ନେଇ ମାଠା ଛଡ଼ିଦଲେ ଯୁକ୍ତ କଲି । ଛଳ ଗୃହୁଗିକ ଖଞ୍ଜି ଦେଇକରି ପ୍ରକୃତିକ ଖଣ୍ଡି ମାଳ ମାଳ । ଗୁଡ଼ି ଦେଇଛ ହେ । ଶ୍ରୀଗୁରୁ ବଚନ ଧର୍ମ ପଥ । ଛୁଆଁ ଛୁଇଁକରି ଛୁଆଁ ଦୁଆରରୁ ଆଣି ବୋଲୁଛ ହୋଇଲୁ ଭୂତ । ଯୋନିରେ ଜନମ କରିଛ ଜୀବକୁ ଯୁଗଳେ ମିଶାଇ ଯେତେବେଳେ । ଯୁକ୍ତ ନୁହେଁ ବୋଲି ବତାଉଛ ମୋତେ ପହଁରାଇ ଆଣି ଭବ ଜଳେ । ଯମ ଦୁଆରେ ଯେ । ଯିବୁ ନାହିଁ ବାବୁ କଦାଚିତେ । ଷୀର ନୀର ପ୍ରାୟେ ମିଶାଇ ଦେଇଣ ବହୁଧ କରୁଛ ବାହ୍ୟମତେ ॥ ଝାଂବଡ଼ାରେ ନିର୍ଭା କରିଛ ଶରୀର ଝଞ୍ଜିର ଲଗିଛୁ ସନ୍ଧିଠାରେ । ଝୁମ୍ପା ପ୍ରାପ୍ତକରି ପଚିଶ ପ୍ରକୃତି ଲମ୍ବାଇ ଆଣିଛ ସର୍ବାଙ୍ଗରେ । ଝାଡ଼ ଭିତରେ ଯେ । ପଶିଗଲି ବୋଲୁଅଛ ମୋତେ ଝାଡ଼ର ଭିତରେ ପକାଇ ଦେଇଣ ସେଇନ୍ତା ପଣେ କହୁଛ କେତେ

Digitized by srujanika@gmail.com

ନାନେମ ଆଚଯାତ ନରଦେହ କର ନାଶିଲ ନଷ୍ଟକୁ ଥୋଇଅଛ । ଲୀଳା ରଙ୍ଗେ ମୋତେ ମାଡ଼ି ଦେଇକର ଗୂପତରେ ସବ ଦେଖୁଅଛ ନାଗ୍ର ସଙ୍ଗତେ ଯେ । କରିଉଛ କଉତୁକ ଭାବ । ନାଶକରିବାକୁ ଦୁର୍ଲ୍ଲଭ ଶରୀର କଳ୍ପନାକୁ କରିଅଛ ଆଗ ॥ ଠେକ ଠେକ କରି ମାତ୍ରୁ ଗର୍ଦ୍ଦଭକୁ ଉକୁଟିର ଆଣି ପିଲବେଢ଼ୁ । ଠେକ କଚଡ଼ାଇ ଦେଇକର ମୋତେ ବୋଲୁଅଛ ମନ୍ଦ କର୍ମ କଲୁ । ଠେଲା ପରିସ୍ରେ ଯେ । ବଳର ଭିତରେ ଦେଇ ମାଡ଼ି । ଠାଣ ସୋହଂରେ ଫିଙ୍ଗି ଦେଇ ମୋତେ ବୋଲୁଅଛ ଭାବେ ଗଲୁ ବୁଡ଼ି । ୧୧ । ଠକ ଆଣି-ଅଛ ସ୍ୱରଯୁଗେ ମୋତେ ଠାକୁର ବୋଲଉଛ ପ୍ରତ୍ୟକ୍ଷେ । ଠିକଣା ହେଉରୁ ସତ୍ୟଯୁଗ କଥା ପଚ୍ଛୁରୁଚ୍ଛ କଳିକାଳ ଯୁଗେ । ଠାବ କରିଚ୍ଛୁ ଯେ । ଗୁରୁ ଚରଣରେ ନାହିଁ ଚିତ୍ତ । ଠାବେ ରହି ମାୟା କରୁଅଛ ମୋତେ ଠକେ କହି ଭ୍ରମ ଅରକ୍ଷିତ । ୧୨ ।

(ଡ) ଡଙ୍ଗର ଡଗରମାନଙ୍କୁ ହେ ପ୍ରଭୁ ଥୋଇଅଛ ଭଲ ଭଲ କରି । ଡୋଳା ଖଞ୍ଜିଅଛ ରହିବା ନିମନ୍ତେ ଡକାଇ ନେଉଛୁ ଧରିଧରି । ଡେଇଁ ଯାଉଛ ଯେ । ଗୁରୁ ଦୁଆରକୁ ଉସୁ ନାହିଁ । ଡାଳ ତଳେ ମୂଳ ଲୁଚ୍ଛି ଦେଇଣ ବୋଲୁଅଛ ବାହ୍ୟେ ଲେଉଡ଼ ଯାଇ । ୧୩ । ଢାଉରଙ୍ଗ କରି ରୂପମାନ ଲମ୍ବି ଢାଙ୍କୁଣି କରିଛ ଚର୍ମ ଲୋମ । ଢଳ ଯାଇଅଛୁ ପଞ୍ଚଭୂତ ଆତ୍ମା ମାୟା ପଟଳରେ ହୋଇ ଭ୍ରମ । ଢୋକ ପିଉଛୁ ଯେ । ମୋହେ ପଡ଼ି ମଦମାଏଁ ସକୁ । ଢମ ଚିହ୍ନପଠ ଥୋଇ ଦେଇ ଆଗେ ବୋଲୁଛ ହରୁଛୁ ଆୟୁଷକୁ ॥ ଅଣ-ଆକାରେ ସର୍ଜନା କରିଅଛ ଆଦିଅନ୍ତ ନାହିଁ ଦେହ ଗୋଟା । ଅନାଇ ଦେଖିଲେ ଭିତର ବାହାର ସର୍ବାଙ୍ଗ ଯାକ ଦଦରି ଫଟା । ଅଣ-ନତରେ ଯେ । ପ୍ରତିବନ୍ଧ କଲ ମନ୍ଦ ବୁଦ୍ଧି । ଅଣ ଆୟୁତରେ ମାଡ଼ି ଦେଇ ମୋତେ ବୋଲୁଅଛ ନ ଲଭିଲୁ ସିଦ୍ଧି । ୧୫ । ତିଗୁ-ଣରେ ଜାତ କରିଛ ଶରୀର ତନପୁର ମଧ୍ୟେ ଦେଇ ଗୁଡ଼ି । ତତ୍ତ୍ୱପଦ

Digitized by srujanika@gmail.com

ଗୋଟି ଗୁପତେ ଲୁଚାଇ ବୋଲୁଛ ଅମଡ଼ା ଗଲି ମାଡ଼ । ସ୍ତ୍ରି ସ୍ତ୍ରୀ ସଙ୍ଗମ ଯେ । ନକରିବୁ ବାବୁ କଦାଚିତେ । ତପତ ଅନଳ ଦେହକୁ ତଇଳ କରିଅଛ ସ୍ୱାମୀ ଅନୁବ୍ରତେ । ୧୬ । ଥଳେ ଥିବାବେଳେ ଥାବର ପଦ୍ଦାସ୍ତେ ଥୋଇଥିଲ ଅତି ଯତ୍ନ କରି । ନ୍ସ୍ତିତ ଦେଲ ମୋତେ ବ୍ରହ୍ମାଣ୍ଡରେ ଅଣି ବୋଲୁଛ କରିବୁ ହୁରିଜରି । ଥାନ ଅବୋରି ଯେ । ରଖିଅଛ ତୁମ୍ଭେ ମନେ ମନ । ସ୍ତ୍ରି ଟି ବସା ହେବୁ ଭର୍ଗ ଦେଇକରି ବୋଲୁଅଛ ବୁଲି ଗ୍ରାମ ଗ୍ରାମ । ୧୭ । ଦରିଆ ଭିତରୁ ମୀନ ପ୍ରାୟେ କରି ଦଉଡ଼ ଲଗାଇ ଝିଙ୍କି ଅଣି । ଦଇବ ଚରିତା ଅଟ ହେ ଆପଣ କପାଳେ ଲେଖିଲେ ଲଭ ହାନି । ଦ୍ରୋହୀ ହେଉଅଛ ଯେ । ଏଥିରେ କି ଦୋଷ ଅଛି ମୋର । ଦୁଇପାଦେ ମୋତେ ଉବୁରାଇ ଆଣି ବୋଲୁଅଛ ଏକ ପାଦେ ଧର । ୧୮ । ଧରିଆଣି ମୋତେ ଧରଣୀ ମଣ୍ଡଳେ ନର ଦେହେ ସ୍ୱାମୀ ଅଛ ରଖି । ଧରାଧରି ହୋଇ ସ୍ନେହ ସୋହାଗରେ ବୋଲୁଅଛ ହୋଇଗଲୁ ପାପୀ । ଧର୍ମ ବୁଡ଼ାଇ ଯେ । କରୁଅଛ ମନ୍ଦ କର୍ମମାନ । ଧାରଣା ଧ୍ୟାନକୁ ଛୋଡ଼କରି ସ୍ୱାମୀ ମୋ ଉପରେ ଛୁଡ଼ାଉଅଛ ଟାଣ । ୧୯ । ନର ଦେହେ ସ୍ୱାମୀ ଜାତ କରିଅଛ ନବଖଣ୍ଡ ମେଦିନୀରେ ମୋତେ । ନାରୀ ପୁରୁଷଙ୍କ ସଙ୍ଗତେ ବସିଲେ ବୋଲୁଅଛ ନ ଛୁଇଁବ ତୋତେ । ନିନ୍ଦା ହେଉଅଛୁ ଯେ । ଅଲେଖ ମହିମା ଧରମକୁ । ନାରୀ ପୁରୁଷରେ ବ୍ରହ୍ମାଣ୍ଡ ରଚିଲ ଲକ୍ଷ୍ୟା କ ନୋହୁଛ ଶ୍ରୀଗୁରୁମୂଳକୁ ॥ ପ୍ରକୃତି ରଚନା କରିଅଛ ଆଣି ପାଣି ପବନକୁ କରି ଠୂଳ । ପିତା ହୋଇକରି ପୁତ୍ରର ବେଦନା ନ ଜାଣୁଛ କ ଅନାଦି ମୂଳ । ପାପ କରୁଛୁ ହେ । ବୋଲୁଛ ଦୁର୍ଲ୍ଲଭ ଦେହପାଇ । ପ୍ରେମ ପସରକୁ ଯୋଗାଡ଼ ମୋ ଅଙ୍ଗେ ଆଦ୍ୟରୁ ତ ଦେଇଅଛ ଥୋଇ । ୨୧ । ଫାନ୍ଦାବନ୍ଧ ପରେ ଫୁଲର ଉପରେ ଫଳାଇଅଛ ମାତୃ ଗର୍ଭରେ । ଫାନ୍ଦା ବୁଣିକରି ପିଣ୍ଡ ବ୍ରହ୍ମାଣ୍ଡରେ ବାନ୍ଧି ଧରିଅଛ ବାମ କରେ । ଫୁଲ ପଣରେ ହେ । ଅଜ୍ଞାନରେ ନେଉଅଛୁ ଧନ ।

Digitized by srujanika@gmail.com

ମିଠାଇ କବାଟ କଞ୍ଚି କୋଲପରେ ଖଣ୍ଡ ହସ୍ତେ କରି ରଣଭଣ ।୨୨।
ବେଦାନ୍ତରେ ପ୍ରଭୁ ଜାତ କରିଅଛ ବଧିରେ କଗଇ ଏ ଜଗତେ ।
ବହୁତ ବିଷୟ ଧନ୍ଦାରେ ପକାଇ ଭ୍ରମିଗଲି ବୋଲୁଅଛ ମୋତେ ।
ବଧି ହବଲ ହେ । ପ୍ରକୃତ ହେଉଛୁ ଅଜ୍ଞାନରେ । ବହୁରୂପୀ ମାୟା
ଖଣ୍ତି ଦେଇକରି ଘୁଡ଼ିଅଛ ସ୍ୱାମୀ ଏ ସଂସାରେ । ୨୩ । ଭବଦୀପ
ବାଟେ ଆଣିଅଛ ମୋତେ ଭରି ପ୍ରବୃତ୍ତିରେ ପଡ଼ିଁଲଇ । ଘର କରି
ଅଛ ଚଉଶ ପ୍ରକୃତି ବୋଲୁଅଛ ଅଙ୍ଗେ ଥାଅ ବନ୍ଧି । ଭସ୍ତୁ ତୋହର
ହେ । ଆଗକୁ ପଛକୁ ନାହିଁ କଛୁ । ଭୂତ ଭବିଷ୍ୟକୁ ଥୋଇଛ
ଶରୀରେ ଗ୍ରାମ ଅରକ୍ଷିତ କହୁଅଛୁ । ୨୪ ।

(ମ) ମାୟା ମୋହ ଜାଲେ ପକାଇ ରଖିଛ ବନ୍ଧନ କରାଇ
ଯତନରେ । ମହାମଣ୍ଡଳରେ ଯାହାକୁ ଦେଖୁଛୁ ମାୟା ଲଗିଅଛୁ
ତାହାଠାରେ । ମିଥ୍ୟା କଥାକୁ ହେ । ବୋଲୁଅଛ ନ ପାରୁଛ ଘୁଡ଼ି ॥
ମାୟାରୂପ ମୋହମାରେ ଏ ବ୍ରହ୍ମାଣ୍ଡ ଚ୍ଛରଯୁଗେ ଯାଉଅଛୁ ବୁଡ଼ି ॥ ଜଳ
ପବନକୁ ଯୋନରେ ଯୋଗାଡ଼ି ଆଉଠାଇ ରଜବୀର୍ଯ୍ୟ ମୁଣ୍ଡ । ଜଳ
କବାଟିରେ ଶକତି ଚରିୟ ଅନ୍ୟସରେ ଜାତ ନୁହେଁ ପିଣ୍ଡ । ଯୁକ୍ତି
କଲୁଛୁ ହେ । ବୋଲୁଅଛ ପ୍ରଭୁ ନାହିଁ ଯଶ । ଯାବତ ପ୍ରକୃତି ରଚନା
କରାଇ ଗଳାରେ ଲଗାଇ ଅଛ ଫାଶ । ୨୬ । ରେତ ରଜରେ
ଶରୀର କରିଅଛ ବଗ ଅହଙ୍କାର ହୃଦେ ଭରି । ରକତ ମାଂସ ପରି
ରହିଅଛ ସ୍ୱହସ୍ତରେ ସ୍ୱାମୀ ଦେଖ ଖାରି । ରଜ ତାମସ ହେ ।
ରମିବୁ ନାହିଁଟି ସ୍ତ୍ରୀ ସଙ୍ଗ । ପିଣ୍ଡରେ ପରମ ପୁରୁଷକୁ ଥୋଇ ଜୀବକୁ
କରି ଦେଇଛ ସଙ୍ଗ ॥ ଲୋଭ ଲାଳସାକୁ ଥୋଇଛ ଶରୀରେ ଲଗାଇ
ଆଣିଛ ଲତା ପ୍ରାୟେ । ଲବଣୀ ବ୍ରହ୍ମ ଭାଣ୍ଡରେ ଡାଙ୍ଗ ଭରି ତପତ
କରାଉଅଛ ଜାୟେ । ଲଙ୍ଘି ଯାଉଛ ହେ । ବୋଲୁଅଛ ଏଡ଼େ ଧର-
ମକୁ । ଲବ୍ଧ ମୁକ୍ତିପଦ ଗୁମରେ ଲୁଚାଇ ଫେଡ଼ ଦେଖାଉଛ କରମକୁ ॥
ବ୍ରହ୍ମାଣ୍ଡ ଘଟାଇ ବାହାର କରାଇ ଅର୍ଗଳ ସନ୍ଧିରେ ଗଳ ଆସ ।

Digitized by srujanika@gmail.com

ବାସ୍ନଧି ସେତୁ ବିଷମ ଅର୍ଗଳ ବୋଲୁଛ ନ ଯିବୁ ତାର ପାଶ । ବାଟ ମିଠାଇ ହେ । ବାର ଅଙ୍ଗୁଳିରେ ଆଣି ମୋତେ । ବସ୍ତୁ କଣ୍ଠ ମାୟା ରଞ୍ଜୁ ଦେଇ କରି ବ୍ରହ୍ମଜ୍ଞାନ ବତାଉଛ କେତେ । ୨୯ । ଶୂନ୍ୟ ମଣ୍ଡଳରୁ ଶବ୍ଦ ବ୍ରହ୍ମରୁ ସୂକ୍ଷ୍ମରେ ଆଣିଛ ମୁହଁ ଦ୍ୱାରେ । ଶୋଇବୁ ନାହିଁ ସ୍ତ୍ରୀ ସଙ୍ଗେ ବୋଲୁଛ ଜଳିଯିବୁ ତାଙ୍କ ନିଃଶ୍ୱାସରେ । ଶାଖା ସୋଦର ହେ । ବିଶ୍ୱାସ କରିଛ ନିରନ୍ତର । କୁମ୍ଭ ଛଳେ କୁମ୍ଭି ନରକକୁ ଥୋଇ ବୋଲୁଅଛ ତାକୁ ହେତୁକର । ୩୦ । ସରୋବର ବାଟେ ଆଣିଅଛ ମୋତେ ଶ୍ରୋଣିତ ବହୁଛି ଝର ଝର । ସର୍ବାଙ୍ଗରେ ଚିନ୍ତ ଯାଉଛି ଶରୀର ବଢ଼ି ଯାଉଛି କମଳ ଶିର । ସବୁ ନାଶିଲ ହେ, ପକାଉଛ ଏବେ ତ ବିଚାର । ସଙ୍ଗ ମୁଁ ବିପଦ ଖଞ୍ଜି ଦେଇକରି ବୋଲୁଅଛ ହୁଅ ବ୍ରହ୍ମଚାରୀ । ୩୧ । ସୁଜ୍ଞାନ ଭାବରେ ଆଣି ଏ ଜୀବକୁ ସାଗରେ ପକାଇ ବନ୍ଧରୂପେ । କେବଳ ଲିଙ୍ଗରେ ସମାଯୁକ୍ତ କରି ମାତା ପଦ୍ମେ ଢାଳିଦେଲ ଥୋକେ । ସାରି ଦେଇଛ ହେ । ଦୁର୍ଲଭ ଶରୀର ଗୋଟାସାର । ସୁରତି ରସରେ ମଜାଇ ଜୀବକୁ ମାୟାରେ ଖଞ୍ଜିଛ ତନପୁର । ୩୨ । ହୃଦ ପଦ୍ମତଳେ ମୂର୍ତ୍ତିବନ୍ତ ହୋଇ ଗଢ଼ି ପକାଇଲ ହସ୍ତ ଭରି । ହାଡ଼ ଚପଟିରେ ଝିସାଇ ନେଇଣ ବୋଲୁଅଛ ଏବେ ଗଲୁ ସରି । ହାନି କଥାକୁ ହେ । ସ୍ୱୀତ କରିଅଛ ଜାଣୁ ଜାଣୁ । ହତ ହେଲୁ ବାଟେ ଆଣିଅଛ ମୋତେ ପିତା ମାତା ଯୁକ୍ତ ହେଲୁହେନୁ ॥ ସମାଧି ସାଗର ପୁରୁଷ ବୋଲି ମୁଁ ଜଣାଣ କରୁଛି କଥାମାନ । କ୍ଷିଣରୂପ ଧରି ବିଜେ କରିଅଛ ସାକ୍ଷାତେ କରତା ଶୂନ୍ୟବ୍ରହ୍ମ କ୍ଷିତିମଣ୍ଡଳେ ଯେ । ଅନୁସରି ଗୁରୁପାଦପଦ୍ମ । ଖଣ୍ଡନ କର ମୋ ଦୋଷ ଅପରାଧ ଭଣେ ଶ୍ୟାମ ଅରକ୍ଷିତ କହ୍ନ ।

—o—

Digitized by srujanika@gmail.com

( ୧୭ )

(କ୍ଷ) ଖତମ ହେଉଛି ଏକୋଇଶ ପୁର ଧାଇଁ ଆସି ଧର ଗୁରୁଦେବ । ଖଣା ରସାତଳେ ପଡ଼ୁଛି ଏ ପୃଥ୍ୱୀ ଉଦ୍ଧର ଲଗାଅ ଧର୍ମ ନାବ । କ୍ଷମା ସାଗର ହେ । କାହାର ତ କଟୁ ପିବନାହିଁ । ତୁମ୍ଭ ପୃଥ୍ୱୀ ଭାର ତୁମ୍ଭେ ନ ଖଣ୍ଡିଲେ ପଡ଼ିବ ରସା ତଳରେ ଯାଇ । ୧ । ହତ ହେଉଅଛି ବ୍ରହ୍ମାଣ୍ଡର ଶିଖ ଅଧର୍ମରେ ଚ୍ଛିନ୍ନଛନ୍ନ ହୋଇ । ହରି ନେଉଅଛି ପାପ କଳିଯୁଗ ଭଳି ପ୍ରାପ୍ତେ ମୋତେ ଦିଶୁନାହିଁ । ହିତ କରତା ହେ । କରିଅଛ ଯେବେ ବ୍ରହ୍ମାଣ୍ଡକୁ । ପଙ୍ଗ ପ୍ରାପ୍ତେ କରି ଉଡ଼ାଇ ନେଉଛି ଏ ମୋ ବେନ ନେତ୍ରେ ଦେଖୁ ଦେଖୁ । ୨ । ସମାପତ ମାଡ଼ି ଗଲଣି ବ୍ରହ୍ମାଣ୍ଡେ ଲହଡ଼ି ମାରୁଛି ଜଳ ପ୍ରାପ୍ତେ । ସମିଗଲଣି ନାଶା କଣ୍ଠେ ପାତକ ସବୁଆଡ଼େ ଏକାକାର ମତ୍ସ୍ୟେ । ଶୂନ୍ୟ ପୁରୁଷ ହେ । ଅନ୍ତର୍ଯ୍ୟାମୀ ଗୁରୁ ଅଛ ଯେବେ । ସମ୍ଭବାକୁ ପୃଥ୍ୱୀ ଭାର ହେଉଅଛି ଯୁଗ ଜାଣି ଉଦେ ହୁଅ ବେଗେ । ୩ । ସପତ ସାଗର ନବଦ୍ୱୀପ ମଧ୍ୟ ଏକାବେଳେ ଯାଉଅଛି ବୁଡ଼ି । ସତ୍ୟ ନାଶ ହୋଇଗଲ ଏ ବ୍ରହ୍ମାଣ୍ଡ ଆକାଶୁ ପଡ଼ୁଛି ଘଡ଼ଘଡ଼ି । ସତ୍ୟଧର୍ମରେ ହେ । ତିନିପୁର ମଧ୍ୟ ତୋଳି ଧର । ନିନ୍ଦା ହାନି ଲୋଭ ପଛକୁ ପକାଇ ଏତେବେଳେ ସ୍ୱାମୀ ହଜେ କର । ୪ । ସୁର ନର ଋଷି ଗନ୍ଧର୍ବ-ମାନଙ୍କୁ କାହାକୁ ଏ ଧର୍ମ ଜଣାନାହିଁ । ଶରଣ ସମ୍ଭାଳି ବାନାରେ ଘୋଡ଼ାଅ ଅଭୟ ଚରଣ ତଳେ ନେଇ । ସରି ଗଲେଣି ହେ । ମାରି ପକାଉଛି କଳିଯୁଗ । ବ୍ରହ୍ମାଣ୍ଡର ଦୋଷ କ୍ଷମା କର ସ୍ୱାମୀ ହୃଦୟ୍ୟା ଶତ୍ରୁରେ ଆସ ବେଗ । ୫ । ବିଷମ ହେଲଣି କଳିଯୁଗେ ପୃଥ୍ୱୀ ଉଲ୍କା ପାତରେ ଛନ୍ନ ଛନ୍ନ । ବୀରବର ରୂପ ପରକାଶ କରି ନିଜ ରୂପ ଧର ନାବସ୍ତ୍ରଣ । ବୈକୁଣ୍ଠ ବେଳକୁ ହେ । ପଡ଼ିଗଲ ଅସି ମହାଦଣ୍ଡ । ଦଧିଭାଣ୍ଡ ଲବଣି ଯେସନ୍ତ କାଣ୍ଡି ସେପରି ଉଦ୍ଧାର ଏ ବ୍ରହ୍ମାଣ୍ଡ । ୬ । ଲଗି ରହିଲଣି ପିଣ୍ଡ ବ୍ରହ୍ମାଣ୍ଡରେ ସତେ ପୁର

Digitized by srujanika@gmail.com

ହୋଇ ମିଛମାୟା । ଲୋପ ହୋଇଲାଣି ଚନ୍ଦ୍ର ସୂର୍ଯ୍ୟ ତେଜ ଘୋଟିଅଛି ଅପ୍ରମ୍ୱର ଛାୟା । ଲଙ୍ଘି ଯାଉଛ ହେ । ସକଳ ସମ୍ପତ୍ତି ସଙ୍ଗେ ଧରି । ବାଜନ କୋଟି ବ୍ରହ୍ମାଣ୍ଡ ଭୁଞ୍ଜ କରି ନେଉଅଛ ହରି ଜୁରି କରି ।୭। ରଖ କଳିଯୁଗ ହସ୍ତରୁ ଛଡ଼ାଇ ସିନ୍ଧୁରକୁ ଦେଲେ ତିନିବାର । ରବି ତଳେ ଯେତେ ପ୍ରାଣୀ ବଞ୍ଚିଥିବେ ଖାଇ ଦୁର୍ଭିକ୍ଷରୁ ହେବେ ପାର, ରସା ମେଦିନୀ ହେ । ରଡ଼ି ଗୁଡ଼ୁଅଛି ଘନ ଘନ । କଳିଯୁଗେ ପୃଥ୍ୱୀ ରସାତଳ ହେବ ନ ଆସିବ ଯେବେ ଶୂନ୍ୟବ୍ରହ୍ମ ।୮। ଜଗତ ଭକତ ମହତ ସକଳ କଣ୍ଠେ ଲାଗିଲାଣି କାଳ ଫାଶ । ଜଗତ କରତା ବିଳମ୍ବ ନ କରି ସମ୍ପୁଟକୁ ଛନ୍ଦି ବେଗେ ଆସ । ଯେତେ ବିପତ୍ତି ହେ । ପଡ଼ିଲାଣି ଆସି ବ୍ରହ୍ମାଣ୍ଡରେ । ଅଧିକରେ ଭ୍ରମୁ କାହିଁ ମୁଁ କହିବ ଡାକୁଅଛି ପରି ବିକଳରେ ।୯। ମୋହ ହୋଇଲେଣି ଚଉଦ ଭୁବନ ସର୍ବେ ହୋଇଲେଣି ହତ ଚେତା । ମହିମା ସାଗର ସ୍ୱାମୀ ନ ରଖିଲେ କେଉଁ ଜନ ରଖେ ସାମରଥା । ମର୍ତ୍ତ୍ୟମଣ୍ଡଳେ ହେ । ପଡ଼ିଗଲା ଆସି ମହାଘାତ । ମହା ଭାରି ପାଇ ପୃଥ୍ୱୀ କମ୍ପୁଅଛି କହୁଅଛି ଖ୍ରୀମ ଅରକ୍ଷିତ ।୧୦।

(ଭ) ଭାରଦା ପର୍ବ୍ବୟେ କରି କଳିଯୁଗ ଅନ୍ୟାୟେ କଲାଣି ବ୍ରହ୍ମାଣ୍ଡକୁ । ଭାସି ଯାଉଅଛି ନବଖଣ୍ଡ ମହୀ ବେନି ନୟନରେ ଦେଖୁ ଦେଖୁ । ଭାରତ ପୁରେ । ନରଲୋକରେ ସ୍ୱାମୀ ଡାକୁଅଛି । ଆପେ ବିଜେ କରି ଦେଖି ଆସ ସ୍ୱାମୀ ସତ୍ୟ ଧର୍ମ ବୁଡ଼ି ଯାଉଅଛି ॥ ହଣା ହେଲେଣି ଏ ତିନିପୁର ଜନେ ଘୋର କଳିକାଳ ଯୁଗ ଲାଗି । କଳାକୁତ କରି ଏ କଳିପୁରୁଷ ସତ୍ୟଧର୍ମ ଦେଉଅଛି ଫିଙ୍ଗି । ବିଜେ ନ କଲେ ହେ । କ୍ଷଣେ ନ ରହିବେ ତିନିପୁରେ । ବଡ଼ ସାନ କେହି କାହାକୁ ନ ମାନି ଅନର୍ଥ ହେଲେଣି ଘରେ ଘରେ ।୧୧। ଫାନ୍ଦ ଫାଶ ଦଶା ପଡ଼ିଲାଣି ଆସି ପିଣ୍ଡ ବ୍ରହ୍ମାଣ୍ଡକୁ ଏକାବେଳେ । ଫିଙ୍ଗିଣ ସତ୍ୟ-ଧର୍ମକୁ କଳିଯୁଗ ଜାଣି ଢାଙ୍କୁଅଛି ପାପ ବଳେ । ଯେଉଁ ସଙ୍କଟ ହେ ।

Digitized by srujanika@gmail.com

ଘୋଟିଲାଣି ଆସି ମହାବାହୁ । ଅକାଳ ତମିର ଘୋଟି ଯାଉଅଛି
ଦିଅ ଆଜ୍ଞା ଜମ୍ବୁ ଧାପ ରହୁ । ୧୩ । ପ୍ରଳୟ ହେଲାଣି ନବଖଣ୍ଡ ମହୀ
ଗାଢ଼ିକ ସାଗର ଜଳ ମଧେ । ପୂର୍ଣ୍ଣାନନ୍ଦ ସ୍ୱାମୀ କସ ଦେଖୁଅଛ ଶ୍ରୀ
ଛାମୁ ରୁ ଆଜ୍ଞା ହେଉ ସଦେ । ଗଡ଼ ଗଳେଣି ହେ । ଦେବ ବ୍ରହ୍ମଋଷି
ବୁଧଜନ । ଅଚେତା କଲାଣି ଘୋର କଳିଯୁଗ କାହାର ହୃଦରେ
ନାହିଁ ଜ୍ଞାନ । ୧୪ । ନିତ ପ୍ରତି ଶିଖ ପ୍ରହାର କରୁଛି ସ୍ୱର୍ଗ ମର୍ତ୍ତ୍ୟ ତିନ
ଭୁବନକୁ । ନସର ନ ହୁଅ ଅନାଦି ପୁରୁଷ ଋପି ଆସୁଅଛି ଦେଖୁ
ଦେଖୁ । କଦା ହୋଇବ ହେ । ଧରନ୍ତି ଆକାଶ ଦିଗ ମୁଖେ । ଧର୍ମ
ଜଦେ କରି ନାଶ ଗଲା ପୃଥ୍ୱୀ ନ ରଖିଲେ ସ୍ୱାମୀ ବ୍ରହ୍ମ କଲ୍ପେ । ୧୫ ।
ଧବାଧବ ହୋଇ ବୁଢ଼ି ମରୁଛନ୍ତି ହେଉଛନ୍ତି କଳକଳା ସବ । ଧରଣୀ
ମଣ୍ଡଳ ଭାସି ଯାଉଅଛି ରଖିବାକୁ କାହିଁ ନାହିଁ ଠାବ । ଧର୍ମପୁରୁଷ ହେ ।
ଋହିଁ ଦେଖ ଥରେ ବ୍ରହ୍ମାଣ୍ଡକୁ । ଏକାଗାତେ ସବେ ଝସାଇ ହେଲେଣି
କାହାର ଅଙ୍ଗରେ ନାହିଁ ବପୁ । ୧୬ । ଦୁର୍ଲକ୍ଷ ଯାଉଛି ନବଖଣ୍ଡ ମହୀ
ଦିକବାଳ ହେଉଅଛି ରଡ଼ି । ଦନ୍ତ ଦୁର୍ଭିକ୍ଷ ଏକାବେଳେ ପଡ଼ିବ,
ଆକାଶୁ ପଡ଼ୁଛି ଘଡ଼ଘଡ଼ି । ଦିନ ଦିନକୁ ହେ । ହୋଇଲାଣି ପୃଥ୍ୱୀ
ରଣଭଣ । ପ୍ରଭୁଙ୍କ ବ୍ରହ୍ମାଣ୍ଡ ପ୍ରଭୁ ନ ରଖିଲେ କାହାର ନାହିଁ ନା
ପରିତ୍ରାଣ ॥ ଥଳ ଜଳ ସବୁ ହାହୋଳ ପକାଇ ଫେରୁଅଛି ଚନ୍ଦ୍ର
ଝଣ୍ଣବୃକ୍ଷ । ଥକାଇ ରଖ ବ୍ରହ୍ମାଣ୍ଡ ପ୍ରଳୟରୁ ଅନାଦିପୁରୁଷ ଶୂନ୍ୟବାସ,
ଥରି ଯାଉଛି ହେ । ଭସିପାଇ ନବଖଣ୍ଡ ମହୀ । କଳିଯୁଗ ପାପ ଭରି
ହେଉଅଛି ପେଲ ପକାଉଛି ସେହେ ଦହି । ତିନ ଭୁବନକୁ ମାୟା
ମୋହ ଜାଲେ ଡାଙ୍କି ପକାଇଲ ନିରନ୍ତର । ତିନ ତ୍ରୈଲୋକ୍ୟର
କରତା ଯେମନ୍ତେ ଅବନା ମନ୍ଦରୁ ବିଜେ କର । ଚିରି ନାହିଁନା ହେ ।
ଘୋଟିଲାଣି ଆସି କାଳମୃତ୍ୟୁ । ଛପନକୋଟି ଜୀବ ଭାସି ଯାଉଛନ୍ତି
ରଖିବାକୁ ଜଣେ ନାହିଁ କିଏ ॥ ଆଣି ଏତେ ସରି କଲ କଳିଯୁଗ
ଋଣରଙ୍ଗେ ଉଠିଲାଣି ଯୁଦ୍ଧ । ଅନାଦି ପୁରୁଷ ଅନ୍ତରେ ବିଷ୍ଣୁର

Digitized by srujanika@gmail.com

ରଖ ଏବେ ନବଖଣ୍ଡ ମହୀ । ଅନାଅନରେ ହେ । ଘୋଟିଲାଣି ଆସି ପୁର ବନ । କାହାର ହୃଦରେ ସତ୍ୟକ ନାହିଁନା ଅଜ୍ଞାନ ହେଲେଣି ଋଷି ମୁନ ॥ ଢୋକାଇଲାଣି ଏକ ଘରେ ସବୁଙ୍କୁ ବିଗୁଣ ରଜ୍ଜୁରେ ବାନ୍ଧି କରି । ଡାକୁଣୀ କବାଟ ଦେବ ନିରନ୍ତରେ ମାଡ଼ ମାରୁଅଛି ମୁଠ ଧରି । ଡେଉ ପସର ହେ । ଭସି ଯାଉଛନ୍ତି ଅକାରଣେ । କାହାର ହୃଦରେ ଜ୍ଞାନ ନଶୁନାହିଁ ଧନ୍ଦ ହେଉଛନ୍ତି ଭବ ବଣେ ।୨୧। ଡାକ ଡାକ ପ୍ରଭୁ କଣ୍ଠ ଶୁଖିଗଲା ଶୁଭୁଅଛି କି ନାହିଁ ମୋ ଗୁହାରି । ଡେଙ୍ଗା ଜଟଭାରୁ ଓହ୍ଲାଇ ଆପଣ ଥଯ୍ୟ କରି ରଖ ବନ୍ଧୁବରୀ । ଡର ମାଡ଼ୁଛି ହେ । ଯେଣୁ ମୋର ସାହା ସାଖୀ ନାହିଁ । ଢଣେ ଶ୍ରୀମହୀନ ପାମର ଅଜ୍ଞାନ ପ୍ରଭୁ ଆସିବାକୁ ଅଛି ରହି ।୨୨।

(C) ଠକ ଆଣିଲାଣି ପାପ କଳିଯୁଗ ସବୁରି ଗଳାରେ କାଲ ଶରି । ଠିକଣା ନାହିଁ କର୍ମ ଧର୍ମ କାହାର ସମସ୍ତେ ହେଲେଣି ଅନ୍ୟାଚାରି । ଠେଲା ମାରୁଛି ହେ । ଆକୁଳ ସାଗର ସିନ୍ଧୁପାଣି ଚଉଦିଗ ବ୍ୟାପି ଘୋଟି ଆସୁଅଛି ଶୁଭୁଅଛି ଘୁ ଘୁ ନାଦ ଧ୍ୱନି ।୨୩। ଟଳ ଯାଉଛନ୍ତି ସ୍ଥାବର ଜଙ୍ଗମ ଖାଟ ପଟଙ୍ଗାଦି ଗୃହଖାନ । ଟାଣ ଶୂନ୍ୟ ବାନା ଗୁରୁ ଅଛ ଯେବେ ଭବ ସାଗରରୁ ରଖ ପୁଣି । ଟିଆ କଣ୍ଠକୁ ହେ । ପଦାଶ୍ରିଲି ଆସି କାଳବେଳ । ହେଲା କଲେ ଆସି ଭେଲା ବୁଡ଼ିଅଛି ନାଶ ହେଉଛି ମହୀମଣ୍ଡଳ ।୨୪। ନଶୀ ଅନ୍ଧାର ଘୋଟିଲା ବ୍ରହ୍ମାଣ୍ଡକୁ ଅଭୁତ ତମିର କାଲ ରହୁ । ନାରାୟଣ ସ୍ୱାମୀ ନବାର ହୋଇକୁ ଜଗତଯାକ ଆଲୋକ ହେଉ । ନର ମନୁଷ୍ୟ ହେ । କେମନ୍ତେ ବଞ୍ଚିବେ କଳିକାଳେ । ପ୍ରଳୟରେ ସର୍ବେ ଭସି ଯାଉଛନ୍ତି ରଖନ୍ତୁ ରଖନ୍ତୁ ପ୍ରଭୁ ବେନି ଡୋଳେ ।୨୫। ଝାଡ଼ ପର୍ବତ ବନ ଗ୍ରାମ-ମାନଙ୍କୁ ଯେଣିକି ରହିଲେ ଅନ୍ଧକାର । ଝଟିତରେ ସ୍ୱାମୀ ପରକାଶ ହୁଅ ଜଗତ ନିକଟ ମାୟା କର । ଝିଙ୍କି ପକାଇ ହେ । ରୁନ୍ଧିଲାଣି ତିନିଭୁବନକୁ । ଉବୁରି ଯିବାକୁ କାହିଁ ବାଟ ନାହିଁ ଆବୋରିଛି ।

Digitized by srujanika@gmail.com

ଚଉ ଘାପାନ୍ତକୁ । ୨୬ । ଜ୍ୟୋତିସ୍ଥାନ ହୋଇଲାଣି ଏ ବ୍ରହ୍ମାଣ୍ଡ ଏଥର ସମ୍ଭାଳ ଶୂନ୍ୟବାସୀ । ଯୁଗ କଳକାଳ ପ୍ରବେଶ ହେଲାଣି ସମସ୍ତଙ୍କୁ ପଚାଉଛି ଗ୍ରାସି । ଧନ ପରଜା ହେ । ଗ୍ରସି ଯାଉଛନ୍ତି ଅକାରଣେ କାହାର ହୃଦଟେକ ଜ୍ଞାନ ପଶୁନାହିଁ ଅନ୍ଧ ହୋଉଛନ୍ତି ଭବ ବନେ । ୨୭ । ଛପନ କୋଟି ଜୀବଙ୍କୁ ଏକାବେଳେ ଚକ୍ରଏ କରିବ ବୋଲୁଅଛ । ଛଉ ବେଦବାସୀ ସୁଦୟା ହୋଇଲେ ଏତେବେଳେ ସବୁକଥା ଅଚ୍ଛି ଛଳ ପରଏ ହେ । ପଦ୍ମର ବିସ୍ତାର ମେଦ୍ଧମାରେ । କାଳକୁ ନବାର ବ୍ରହ୍ମାଣ୍ଡ ଉଦ୍ଧାର ରଖ ରଖ ତୁମ୍ଭେ ସୁଦୟାରେ । ୨୮ । ଚଉଦଗ ଗୃପି ମାଡ଼ି ଆସୁଅଛି ତମିର କୁହୁଡ଼ିମୟ ଧୂମ । ଚଦାନନ୍ଦ ସ୍ୱାମୀ କସ ଦେଖୁଅଛ ସାକ୍ଷାତରେ ଏନ୍ତୁ କାଳଯମ । ଗ୍ଳାଯାଉଛି ହେ । ରୂପ ତାର ଉଗ୍ରଙ୍କର ମୂର୍ତ୍ତି । ବଳସ୍ୱାର ହୋଇ ଶରୀର ବିସ୍ତାର କରି ଟଙ୍କାଲାଣି ନବଖିତି ॥ ଅର୍ଣ୍ଣି ଗଲାଣି ବ୍ରହ୍ମାଣ୍ଡକୁ ବପତ୍ତି ସୁଦୟାରେ ସ୍ୱାମୀ କ୍ଷମାକର । ଏତେକ ହୋଇଥାଉ ସବୁ ଭକ୍ଷଣ କରୁଅଛ ପର ଅଣାକାର । ଅନ୍ନ କଷ୍ଟରେ ହେ । ମରି ଯାଉଛନ୍ତି ଜନପ୍ରଜା । ସବୁଙ୍କର କର୍ମ ଧର୍ମ କାଟି କରି ଆପେ ପର ହୋଇଅଛ ରାଜା ॥ ଘୋର ଦୋଷ ପାପ କଲେ ଯେଉଁ ନରେ ବେଗେ ଦିଅ ତାଙ୍କ ଗଳେ ଛୁରୀ । ଘୂଞ୍ଚି ପଳାଉଛ ପଛକୁ କାହିଁକି ବ୍ରହ୍ମାଣ୍ଡକୁ ସ୍ୱାମୀ ଉଦ୍ଧର ଘୋର କଳରେ ହେ । ନିଷ୍କାମ ଧର୍ମକୁ ଉଦେ କର । ଅସମ୍ଭାଳ ସହୁଁ ହେଲ କଳିଯୁଗ ଘୂଞ୍ଚି ପଳାଉଛ ଉଦ୍ଧର ॥ ଗୁରୁ ହୋଇକରି ଦୋଷ ଅପରାଧ କଲୁ ଯେବେ ଆମ୍ଭେ ନ ବୁଝିବ । ଗାଡ଼ର ଭିତରେ ପଡ଼ିଛୁ ସମସ୍ତେ ଯେମନ୍ତେ ଏଥିରୁ ନ ତାରିବ । ଗାଳି ଗର୍ବକୁ ହେ । ମାନ ଛଳ କଷ୍ଟ ଧରି ନାହିଁ । ମୁକତି ପସରା ଆବୋରି ଆପଣ ଯେଣୁ ପର ବସିଅଛ ରହି । ୩୨ । ଷିର ସିନ୍ଧୁବାସୀ ଗୁରୁ ଅଛ ଯେବେ ଛେଦ କଳିଯୁଗ ଗୁଡ଼ ଯାଉ । ଖୋଜୁଥାଇ କାଠ ଶବର ଯେସନେ ସେହିମତ ଅଟେ କାଳରାହୁ । ଖିତି ମଣ୍ଡଳ ହେ । ଗ୍ରାହିଁ

Digitized by srujanika@gmail.com

ଦେଲେ ହେବ ନିର୍ମଳ । ଅଲେଖ ମହିମା ଦୀକ୍ଷା ନେବେ ସର୍ବେ ନାମ ଯେମିତ ଅନାଦି ମୂଳ । ୩୩ । କରତା ବୋଲାଇ କରିଅଛ ଯେବେ ପାତକ ଯାହାର ପୂର୍ଣ୍ଣ ଭାର । ଦଣ୍ଡ ଗ୍ରାମ ଗ୍ରାମ ପାମର ଅଜ୍ଞାନ ପ୍ରଭୁ ଯେବେ ନୁହ ଅପସର । ଘୋର କଳିରେ ହେ । ଭିନପୁର ମଧ୍ୟେ ନିନ୍ଦା ହେଉ । ଧର୍ମ ଉଚ୍ଛେଦକର ନାଶ କର ପୃଥ୍ୱୀ ଯୁଗେ ଯୁଗେ କାର୍ତ୍ତି ରହିଥାଉ । ୩.୪ ।

—୦—

( ୧୭ )

(କ) କଳିଯୁଗ ଶେଷ ହୋଇଲାଣି ଆସି କରୁଣା କେତେ ବେଳକୁ । କଣ୍ଟକର ମୋତେ କହିଥିଲ ସ୍ୱାମୀ କାରୁଣ୍ୟ ଅବତାରକୁ, ହେ ପିତା । କର ଯୋଡ଼ି କରି ପ୍ରଳମ୍ବିତା । କଳିବଳେ ପାଉଅଛୁ ବ୍ୟଥା । କାଳୁସ୍ରୋତରେ ବୁଡ଼ୁ ଅଛୁ ଚେତା । କମ୍ପା ନ କରୁଛ ମନେ ଚିନ୍ତା । କସ କର୍ମେ ଲେଖିଛୁ ବିଧାତା । କାଷ୍ଟକର ହୋଇଲାଣି ବୃଥା ହେ । ୧ । ଖିତ୍ତି ମଧ୍ୟେ ଖିନ୍ନ ରୂପ ଧରିଅଛ ଖଳ ନିବାରିବା ପାଇଁ ଅଖିଳ ବ୍ରହ୍ମାଣ୍ଡ କରି ଖଣ୍ଡ ଖଣ୍ଡ ଖଣ୍ଡା ହସ୍ତେ ଧରି ମୂହିଁରେ ସ୍ୱତ । କ୍ଷୟ ହେଉ ତ୍ରିପୁର ଜଗତ । ଖଣ୍ଡ ଦୁର୍ଜନ ହୁଅନ୍ତୁ ହତ । ଖେଳ ସରିଲେ କରିବ ସ୍ଥିତ । କ୍ଷଣେ ସମ୍ଭାଳ ଗତ ଆଗତ । ଖାଦ୍ୟ ଅଖାଦ୍ୟ ଦିନ ବଞ୍ଚିତ । କ୍ଷମା କରିବ ଦୁଃଖ ଦୁରିତରେ । ୨ । ଗତ କଥା ଶୁଣି ଗର୍ବ ପୋଡ଼ୁ ଆଛୁ ଗୁଣି ହେଜ ଦିନ ଗତି । ଗରବତା ପଣେ ଗର୍ଜ ହେଉଛନ୍ତି, ଗାନ୍ଧମା ଚଣରେ ମାତି ହେ ଗୁରୁ । ଗତି ନ ବଳୁଛି ଏ ମନରୁ । ଜ୍ଞାନ ଉଦେ ନ କଲେ ହୃଦରୁ । ଗୋଷ୍ଠୀ ଛାଡ଼ିଲେ ସାଧୁ ସଙ୍ଗରୁ । ଗୁରୁମାନ୍ୟ ଛାଡ଼ିଲ ସଂସାରୁ । ଗାଧି ଟେକିଛ ଶନ୍ୟ ମନ୍ଦିରୁ । ଗଞ୍ଜି ଦେବାକୁ ଭବ ସାଗରୁ ହେ ।୩। ଘୋରଘନ୍ତ-ଘଣ୍ଟ ଜଗତେ ଶୁଭିବ ଘରଦ୍ୱାର ଦେବେ ଛାଡ଼ି । ଘେନଣ ଭକତ ଘୋଡାଇ ରଖିବ, ଏକାମ୍ର ବନେ ମାଡ଼ିରେ ଶିଷ୍ୟ । ଘନ ଘୋଟିବ

Digitized by srujanika@gmail.com

ଶୂନ୍ୟ ଆକାଶ । ଘଡ଼ିକରେ ପୃଥ୍ୱୀ ହେବ ନାଶ । ଘାତ ପଡ଼ିଯିବ ଦଶ ଦିଶ । ଘାଏ ଘୂମାଇବେ ନର ବଂଶ । ଘାଉପାଇ ସବେ ଯିବେ ନାଶ । ଘାରି ହୋଇ ତୁ ମୂଢ଼ ବିକଳରେ ।୪। ଅନୁସରି ଅଛୁ ଆଶ୍ରିତ ପଥକୁ ଅନ୍ୟ ସେବା ନ ଯୋଗାଇ । ଆଶାକରି ମୁହିଁ ଅନ୍ୟଥା ହେଉଛୁ, ଅନ୍ତର୍ଯ୍ୟାମୀ ନାଥ ଥାଇଁ ହେ ପ୍ରଭୁ । ଆମି ପ୍ରଘଟ ହେଲଣି ସବୁ । ଅସନ୍ତୋଷେ ପାଉଅଛୁ ଲଘୁ । ଆଜ୍ଞା ଶ୍ରୀମୁଖ ବଚନ ଶୁଭୁ ଅନୁକୂଳ ଶୁଭ ଲଗ୍ନ ଯୋଗୁ । ଆମି ମନବାଞ୍ଛା ପୂର୍ଣ୍ଣ ଲଭୁ । ଏକାକ୍ଷରକୁ ଏ ଜୀବ ଭାବୁ ନେ । ୫ । ଚନ୍ଦ୍ରପ୍ରାପ୍ତ ଉଦେ ହୋଇଛୁ ସଂସାରେ ଚମକୁ ଅଛୁ କମ୍ପାଇଁ । ଚୂରିଦିବସକୁ ଠାକଥାଅ ସବେ ଗୁରୁ ଚରଣକୁ ଧ୍ୟାଇ ହେ ଦାସ । ଚଳ ସାଙ୍ଗୁ ମନ୍ତ୍ରମାଙ୍କ ଯଶ । ଚହିଁଚର୍ମ ରୁଧିର ମାଂସ । ଚୋର ଦ୍ରବ୍ୟ ନ କରିବ ଆଶ । ଚତୁର୍ପଣେ ଥିଲେ ନାହିଁ ଦୋଷ । ଚର୍ମ ଦେହ ନୋହୁଛି ବିଶ୍ୱାସ । ଚିଦାନନ୍ଦ ପ୍ରଭୁ ନାମ ଘୋଷ ହେ । ୬ । ଛୁପ୍ତା ପ୍ରାପ୍ତ ହୋଇ ଛନକା କରଇ ଉଦ୍ରିଉଛନ୍ତି ସମସ୍ତେ । ଛନ୍ଦ ଭାଷାମାନ କରୂପେ ମଣ୍ଡିବ ଛୁଡି ଦମ୍ଭକରି କେତେ ହେ ହରି । ଛବି ଚୂଡ଼ୁରିକ ସିନା ଉରି । ଛେକ ମାରୁ ଅଛନ୍ତି ଯେ ଧରି । ଛୁଟି ପିଠିଛନ୍ତି ବେଢ଼କରି । ଛି ଛି କାହେ ଉପହାସ କରି । ଛୁଡା ହୋଇଯିବ ଏକା ମରି । ଛୁଡିକ ଦମ୍ଭେ ପାଣ୍ଡି ନପାରି ହେ ।୭। ଯନ୍ତି ବେଶ ଧରି ବ୍ରହ୍ମାଣ୍ଡେ ବୁଲୁଛି ଜଣା ପଡ଼ୁଛି ସମସ୍ତ । ଯାଗ ଯୋଗ ଧାନ କରି ନେତ୍ରୁ ମୋର ବହି ଯାଉଛି ରକତରେ ଭକ୍ତ । ଜାତି ଅଜାତି କରିବ ଯୁକ୍ତ । ଯୁବା କରିବ ବୃଦ୍ଧ ସମସ୍ତ । ଜଣେ ଜଣେ ଦେବ ପଞ୍ଚାମୃତ । ଜାଣିଥାଅ ବ୍ରହ୍ମ ବାକ୍ୟ ସତ୍ୟ । ଯାଗି ନାମକୁ ହୃଦେ ଭଜ--ଥା । ଜୀରି ଲୁଟି କରିବ ନପାର ରେ । ୮ । ଝାଉରି ଭିତରେ ଝଞ୍ଜାକାଳେ ପଡ଼ି ଝିମାଇଁ ମାରୁଛି ଦେହ । ଝରି ଝରି ନେତ୍ରୁ ବହି ଯାଉଅଛି ରକତ ମାଂସ ଲୁହ ହେ ଯନ୍ତି । ଝାଉଁ ଝାଉଁ ପଡ଼ୁଛି ବାଟିଭି । ଝଡ଼ ପଡ଼ୁଛି ଦେହରୁ ଅସ୍ଥି । ଝିମାଇଁ ମାରୁଛି

Digitized by srujanika@gmail.com

ଦବା ଗତ । ଝଟତରେ ସାଧକର ପୃଥ୍ୱୀ । ଝାମ ମାରୁଛୁ ଅଙ୍ଗରେ ନଶ ଝାଉଁ ଆତ୍ମା ହେଉଛୁ ସନ୍ତାପି ହେ । ୯ । ନଷ୍ଟା କରିବାକୁ କହୁଅଛୁ ତୋହର ନଷ୍କାମ ଭକତ ଧର୍ମ । ନଣି ଦିବସରେ ନାମ ଲମ୍ବକର ଧର ଥିବୁ ମୋ ଚରଣରେ ପୂଜା । ନବମପୁ ଭକ୍ତଗଣ କଥା । ନରନ୍ତରେ ନେଇଥିବ ମଥା । ନାହିଁ ଚାହିବ କାହାର ଚେତନା । ରସାତଳେ ପଡ଼ିବେ ଦେବତା । ନଷ୍ଟେ ବୁଝିଥାଅ ଏହି କଥା । ନ୍ୟା କରିବ ସକଳ କଥାରେ । ୧୦ । ଟଳ ଟଳ ହେଉଅଛୁ ପିଣ୍ଡେ ପ୍ରାଣ ଟାଟକା ମାରୁଛୁ ମୋତେ । ଟେକ ପଞ୍ଚମନ ଟିଆକୁ ଟାଳଛୁ ସତ୍ୟଯୁଗ ପର- ସନ୍ତେ ହେ କର୍ତ୍ତା । ଟମାଳରେ ବୁଝ ମୋର କଥା । ଟଳୁଅଛୁ ଶ୍ରୀମୁଖ ବାରତା । ଟାଣେ କହ କରୁଛୁ ବମତା । ଟିକେ ନ କରୁଛ ମନେ ଚନ୍ତା । ଟେକା ମାରିଦେଉଛୁ ଅବସ୍ଥା । ଟୋପ କୁଣ୍ଡେ ପଡ଼ ହନ ଚେତା ହେ । ୧୧ । ଠିଆହୋଇ ହସ୍ତ ମାର କହୁଅଛୁ ଠିକଣା ପଦ ଦେଖାଇ । ଠଉର ପାଇଲେ ଠାବ ଦେବ ତୋତେ ଏକୋଇଶ ଅଙ୍କେ ଯାଇ ନହ ସାର । ଠାକୁରଙ୍କ ପାଦେ ସେବାକର । ଠଣା ନଗିଥାଅ ନରନ୍ତର । ଠାବ ଘୁଞ୍ଚିଲେ ହେବୁ ଅମର । ଠକ ଦେଖ ଦେଖନ୍ତୁ ସଂସାର । ଠିକଣାରେ ନାହିଁ କଥା ମୋର । ଠୂଳ ଶୂନ୍ୟ ଉପରେ ମୋ ଘରରେ । ୧୨ ।

(ଡ) ଡାକୁଥିଲେ ତୋତେ ଦେଖୁଅଛ ଏବେ ଶୂନ୍ୟମୟ ବ୍ରହ୍ମରୂପ । ଡେଇଁ ପଳାଇଲେ ଗୋଡ଼ାଇ ମୁଁ ଯିବ କରିଥିବ ସେବ ତପ, ହେ ମତ । ଡରୁଅଛୁ ଜୀବନରେ ନତ । ଡକାଇତଙ୍କୁ ମାର ନପାତ । ଡଙ୍ଗରକୁ ପଡ଼ୁ ଦଣ୍ଡ ଶାସ୍ତି । ଡେଇଁ ସିଂହଦାଣ୍ଡ ଦେଉ ଛନ୍ତ ହେ । ୧୩ । ଢାକୁଣୀ ଦେଇ ଭକତଙ୍କୁ ରଖିବ ଢାଳକରି ଶୂନ୍ୟ ବାନା । ଢାଳ ସୁଧା ମକରନ୍ଦ ପିଆଇବ ଖଣ୍ଡିବ ଦୁଃଖ ବେଦନା ରେ ଧନ । ଢାଉ ରଙ୍ଗକୁ ନ ଦେବୁ ମନ । ଢମାଳିଆ ସବୁ ଲୋକ ମାନ । ଢାଳ ଦେଇ ହେବେ ରଣ ଭଣ । ଢଳିଯିବେ ଯୁଦ୍ଧେ ଦୁଷ୍ଟଗଣ

Digitized by srujanika@gmail.com

ତୋଳ ପ୍ରାପ୍ତ ହୋଇବେ ମର୍ଦ୍ଦନ । ଶୋକ କରୁଛନ୍ତି ବିଷ ପାନରେ ।
ଅଣାକାର ପ୍ରଭୁ ଅସାଧନା ମାର୍ଗେ ଉଦ୍ଧାର କରିବେ ବୋଲି ।
ଅନ୍ତର୍ଗତେ ମୁହିଁ ଅନୁସରି ଅଛି ସାଧି କରି ମନ୍ତ୍ରଆଳି ହେ ସ୍ୱାମୀ ।
ଅନୁଭବେ ଅରୂପକୁ ଗମି । ଏଣେ ତେଣେ ଯାଉଅଛି ଭ୍ରମି । ଆଣି
ଠୁଳ କରି ଅନ୍ତର୍ଯ୍ୟାମୀ । ଅଣସାଧନାରେ ସିଦ୍ଧ ଭୂମି । ଅଣ ଆସ୍ୱତ
ସର୍ବେ ହେଲେଣି । ଆସି ଉଦେ ହୋଇଛ ମେଦିନୀ ହେ ॥ ତ୍ରୈଲୋ-
କ୍ୟର ନାଥ ତ୍ରିଗୁଣ ସାଧିବ ତଳେ ପାଇଥାଅ ଦୁଃଖ । ତତକ୍ଷଣେ
ପୃଥ୍ୱୀ ନ କରିବ ଯେବେ ଚନ୍ଦ୍ର ସୂର୍ଯ୍ୟ ଥାନ୍ତି ସାକ୍ଷ୍ୟରେ ନିତ୍ୟ । ତାର
ନେବ ସମସ୍ତ ଜଗତ । ତତ୍ତ୍ୱ ଦେବ ଧନ ରତ୍ନ ବିତ୍ତ । ସ୍ତ୍ରୀ ରତ୍ନ
କରିବ ପ୍ରାପତ । ତାହା ପାଏ ତୋର ରୂପବନ୍ତ । ତରି ତରି ନକର
ତୁ ଚିନ୍ତ । ନିନ୍ଦବାର କରୁଅଛି ସତ୍ୟରେ ॥ ଥରୁଛି ଜୀବନ ଚେତା
ଚଇତନ ଥିବଟିକି ପିଣ୍ଡେ ଲିପ୍ତ । ସ୍ଥିତି ଥିବାଯାଏ ଥୋଇ କହୁଛି
ଛନ୍ଦକ ଯାଉଛି ବନ୍ଧ ହେ ବ୍ରହ୍ମ । ଥିଲେ ପିଣ୍ଡେ ପ୍ରାଣ ସିନା କାମ ।
ଥରେ ଯେଉଁ ଯିବେ ଅବା ଯମ । ନଥାକେ ବର୍ତ୍ତିବାକୁ ନାହିଁ କ୍ଷମ ।
ଥୋମାଇ କରୁଛି ମୋତେ କାମ । ଥିବ ଯେବେ ଯିବ ନିଜ ଧାମ ।
ଥରେ ଜପୁଥିବ ତୁମ୍ଭ ନାମ ହେ । ଦେଶାଦୋଷ ସଙ୍ଖ ଦରିଦ୍ର ପଡ଼ିଏ
ବିହରୁ ଅଛି ଜଗତେ । ଦିବାନିଶି ମୋତେ ଦଣ୍ଡେ ସୁସ୍ଥ ନାହିଁ ଭକ୍ତଙ୍କ
ଦୁଃଖ ନମନ୍ତରେ ଶ୍ରମ । ଦେଖ ଜଳୁଅଛି ଅଙ୍ଗବ୍ରେମ । ଦଗାବାଜ-
ଅଛି ଘାତ ଧର୍ମ । ଦ୍ରବ ଭେଦ ଯାଉଅଛି ମର୍ମ । ଜଗାନନ୍ଦ କରି ସବୁ
ସମ । ଦବ ପଡ଼ିଲେଣି ଚଉଧାମ । ଦରଶନେ ରଖିଥାଅ ଧର୍ମରେ ॥
ଧରଣୀରେ ଧର୍ମ ସ୍ଥାପନ ହୋଇଲା ଜ୍ଞାନକୁ ଘଙ୍ଗତେ ଯେଉଁ । ଧର
ଧର ବୋଲି ଧର୍ମକୁ ଯାଚନ୍ତି ଧରି ନ ପାରିଲେ ଶିଷ୍ଟି ହେ ଯୋଗୀ ।
ଧୂଳି ଭଷାରେ ହେଲେଣି ଫଙ୍ଗି । ଧର୍ମ ପାତୁଛ କାହାର ଲାଗି ।
ଧରିବଅ ପୃଥ୍ୱୀ ଯାଉ ଭାଙ୍ଗି । ଧର୍ମେ ଅପରାଧି ପଛେ ହେବ । ଧରଣୀରେ
ଧର୍ମକୁ ରଖିବ । ଧରା ଭାର ଉଶ୍ୱାସ କରିବ ହେ ଯୋଗୀ । ୧୯ । ନବ

Digitized by srujanika@gmail.com

ଖଣ୍ଡମଣ୍ଡା ଭିଆଣ କରିଛୁ ନବକଳ୍ପ ତପ କରି । ନ ସମ୍ଭାଳିଲେ ନ ରହିବ ନଷ୍ଟଲେ ଭ୍ରଷ୍ଟହେଲେ ଯିବ ସରି ରେ ଥାଳ । ନର କୁଳେ ଜାତ ଭକ୍ତ ମୋର । ନଷ୍ଟ ହେଉଅଛନ୍ତି ସକଳ । ନାମ ଉଚ୍ଚେ ବସିବ ସକଳ । ନନ୍ଦା ସନ୍ଧ୍ୟା ନୁହଇ ଭଲ । ନଶୀ ଧୂଳି ପାହିଲଣି କାଳ । ନାଶ ହୋଇବ ମହୀମଣ୍ଡଳରେ । ୨୦ । ପଣତ ପ୍ରସାରି ଶ୍ରୀପଦ୍ମର ଧରି ମାଗୁଅଛୁ ପାନ୍ତ ହସ୍ତ । ପାଶେ ପାଶେ ଥିବ ପାଶୋରି ନ ଦେବ ପଦ୍ମପାଦେ ଦେଇ ଚିତ୍ତ ହେ ପ୍ରେମ । ପ୍ରାଣ ତେଜି କଲି ସର୍ବ ସମ । ପୃଥ୍ୱୀ ପାଷାଣ କରିଏ କର୍ମ । ପରିପର ନୁହେଁ ଗୁଣ ଗ୍ରାମ । ପୃଥ୍ୱୀ ମଧ୍ୟେ କରିଲ ବିଶ୍ରାମ । ପଥ ବଣଅଛୁ ମୋତେ ନିଷ୍କାମ । ପିଣ୍ଡ ସାଉ ରହୁ ଯଶ ଧର୍ମ ହେ ॥ ଫେଡ଼ିବ ବନ୍ଧନ ମିଟାଇବ ଦୁଃଖ ଫଳ ବାଣ୍ଟି ଦେବ ଦେଖ । ଫରହର ଶୂନ୍ୟ ବାନା ଉଡ଼ୁଅଛୁ ଛନପୁର ସଇଲୋକ୍ୟ ହେବ ଜୀବ । ଫନ୍ଦା ନୂଆ ଥିବ ବାଡ଼ ଦେବ । ପୂର୍ଣ୍ଣାରେ ସମସ୍ତେ ରହିବ । ଫଳ ପରଷିବେ ସର୍ବ ହେବ । ଫଳ ଲୋଭେ ନ ପଶିବ ରୋଗ । ଫଟା କୁଡ଼ିଆ ଉଆସ ହେବ । ଫାଟିଯାଉ ଘୋର କଳିଯୁଗ ହେ ॥ ବାଧିଲ କଷଣ ଜୀବନକୁ ମୋର ବନ ଗ୍ରାମ ବୁଲି ବୁଲି । ବାର ବେଶ ଧରି ବାଘ ଲାଗୁଛନ୍ତି ବେଦ ନିନ୍ଦା କଲେ ବୋଲି ହେ ପ୍ରାଣ । ବାନା ନିନ୍ଦୁଛନ୍ତି ମୂଢ଼ଜନ । ବନ୍ଧୁ ବଡ଼ିମା ଶଳତ ଠାଣ । ବୁଲି ନ ପାଇଲେ ଭକ୍ତେ ସ୍ଥାନ । ବାସ୍ନା ହୋଇଲେଣି ସର୍ବଜନ । ବତାଇଣ ଦେଉଛ ଆପଣ । ବୁଦ୍ଧ ଅବତାରେ ପରଂବ୍ରହ୍ମ ହେ । ୨୩ । ଭରସା ହେଉଛି ଘରି ଉଣ୍ଡାସିବ ଘରେ ବଞ୍ଚୁଥାଅ ହନ । ଭବସିନ୍ଧୁ ଘୋରେ ନ ପଡ଼ିବ ତୁମ୍ଭେ ଭକ୍ତିରେ ରଖିଲେ ମନରେ ପିଣ୍ଡ । ଭରି ପୃଥ୍ୱୀ ହେବ ଧର୍ମ କୁଣ୍ଡ । ଭରଣା ହୋଇବ ନବଖଣ୍ଡ । ଘରୁ ହେଉଛବଇଁ ଖଣ୍ଡ ଖଣ୍ଡ । ଘାତ ବଉତନ ହେବ ମଣ୍ଡ । ଧ୍ୱଜା ଟେକିଅଛୁ ବାହୁ-ଦଣ୍ଡ । ଭଜୁଥାଅ ଧର୍ମର ଦାଣ୍ଡରେ । ୨୫ ।

Digitized by srujanika@gmail.com

ମ) ମନୁଷ୍ୟ ଗ୍ଲାରକ ମନକୁ ଧରିବ ମୁନୀନ୍ଦ୍ର ପରସ୍ତ ହୋଇ । ମୀନ ପ୍ରାପ୍ତେ ମନ ଚହଟି ଯାଉଛି ମାୟା ମୋହେ ହୋଇ ବାଇ ହେ ସିଦ୍ଧ୍ୟ । ମୋତେ ଦିଅ ଅନୁଭବ ପଦ । ମନୁଷ୍ୟକୁ ଦିଅ ପଦ୍ମପାଦ । ମତ୍ତ ପ୍ରେମ ଭରେ ଗଦ ଗଦ । ମାୟା କରୁଅଛି ଖେଦ ନାଦ । ମାନଧରି ନ ପାରୁଛି ଆଦ୍ୟ । ମୃତ୍ୟୁ ଜୀବନେ କରୁଛି ବାଦ ହେ । ୨୫ । ଜାତ ହୋଇଅଛୁ ଦ୍ଵିଶାପୁ ଯୁଗକୁ ନିଜ ମନ୍ତ୍ରମାନଙ୍କ ଅଂଶୁ । ଯତନେ ମନ୍ତ୍ରମା ନାମ ପ୍ରକାଶିବ ଉଦେ ହୋଇଛି ଆକାଶୁ ହେ ସ୍ଵାଦୁ । ଜନ୍ମ ହୋଇଛି ଅନାମ ବେନ୍ଦୁ । ଯୁଗ ଆଶିଷ ହେଉଛି ପାଦୁ । ଜୀବ କାୟାରେ ହେଉଛି ସିଧୁ । ଯୋଡ଼ିଥିବୁ ପାଦ ପ୍ରାନ୍ତ ଆଦ୍ୟ । ଜଗି ପିଉ ଥାଅ ସୁଧା ମଧୁ । ଯଦ୍ଵ ପାର ହେବୁ ଭବସିନ୍ଧୁ ହେ ॥ ରାକ୍ଷସ ମନୁଷ୍ୟ ଋଷି ମୁନି ଆଦି ହୋଇଛନ୍ତି ମିଶାମିଶି । ରୋଗ ଶୋଷ କରୁଛନ୍ତି ପ୍ରାଣୀମାନେ ପାଶରେ ନୋହୁଛି ବସି ହେ ପୁଂସ । ରହି ନ ପାରିଲା ଭୁମ୍ଭ ଶିଷ୍ୟ ରଣ ଯୁଦ୍ଧ କରିଅ ପ୍ରକାଶ । ରକ୍ତ ମାଂସ କରୁ ପୃଥ୍ୱୀ ଗ୍ରାସ । ରାଜ୍ୟ ଦେଶ ସର୍ଗି ହେଉ ନାଶ । ରସା ବାସୁକ ଭାର ନିଶ୍ୱାସ । ରଖ ବାଛି କରି ଭୁମ୍ଭ ଦାସ ॥ ଲବଧା ଭକ୍ତ ପାଲ ଲମ୍ଭ ଏତେବେଳେ ଦେଖି ଦିଗାମ୍ବର ବେଶ । ଲାବଣ୍ୟ ମୂରତି ରୂପକୁ ଭଜିଲେ ଘୁଞ୍ଚିଯିବ ମୃତ୍ୟୁ ଦୋଷ ହେ ସ୍ତ୍ରିଶ । ଲଭି ପାରିବୁକ ମୋତେ ଧରି । ଲାଭ ବାଣିଜ୍ୟ ହେବ ତୋହରି । ଲଭି ଭଜ ଚିତ୍ତ ଦୃଢ଼ କରି । ଲଘୁ ହେବ ମୁଁ ଗଲେ ବାହାରି । ଲକ୍ଷେ ଯୁଗ ଗଲଣି ଏପରି । ଲୋକେ ଦେଖୁ ଦେଖୁ ଯିବେ ମରି ହେ ॥ ବଚନେ ଉଦ୍ଧାର ହୋଇବ ବୋଲୁଛି ବୁଝିବାକୁ ନାହିଁ ଶକ୍ୟ । ବସିଥାଇ ବସାଘରେ ଭଜୁଥିବ ଶୂନ୍ୟମୟ ବ୍ରହ୍ମ ରୂପ ହେ ଦୃଶ୍ୟ । ବୁଦ୍ଧି ସାଧିବାକୁ ନାହିଁ ଆସ୍ୟ । ବୁଦ୍ଧି ଅଟେ ବାଲ୍ୟତ ବୟସ । ବୃଦ୍ଧ ପୁରାତନ ନୁହେ ଶିଷ୍ୟ । ବନ୍ଧି ନ ପାରେ ବାନା ଅଂଶେଷ । ବେଗେ ସାଧି ହୁଅ ସାରବେଶ । ବାସ ଦିଅ ଚଉଁସି ଇଆସ ହେ ॥ ସରିଲାଣି ଆସି ପୃଥ୍ୱୀ ଜପ ତପ ସାଧ ହୋଇବ ଏ

Digitized by srujanika@gmail.com

ମଣ୍ଟି । ଶରଣ ସମ୍ଭାଳ ଭକ୍ତଙ୍କୁ ରଖିବ ଶକ୍ତି ନ ପାରିବେ କେହି ହେ ସାଧୁ । ଶିଷ୍ୟ ପରାପତ ହେବ ବଦ୍ୟା । ଶିରେ ଢାଳ ଦେଣ ପ୍ରେମ ସୁଧା । ସୁର ଲୋକଙ୍କୁ ହୋଇବ ନନ୍ଦା । ସ୍ୱର୍ଗେ ଦେଖୁଥିବେ ଅର୍କ ବୃନ୍ଦା । ସବୁ ଭକ୍ତଙ୍କୁ କରିବ ଗଦା । ସାର ଲଭିଯିବେ ମନ ବାଧା । ୩୦ । ସତ୍ୟାଦ୍ଦ ଯୁଗକୁ ଡାକୁନ୍ତ ସମସ୍ତେ ଶୂନ୍ୟମୟ ରୂପ ଧାରୀ । ସତ କହ ସଖି ପତ ବୋଲାଇବ ପ୍ରଭୁ ଯେବେ ଯିବେ ଥୋଇ ହେ ସତ । ସମ କରୁଅଛୁ ଜାତି ଗୋତ୍ର । ଶୁଣ ଶାଆସ୍ତ ବେଦ ବେଦାନ୍ତ । ଶୁଚେ ବୁଝିନଅ ଆଦ୍ୟଅନ୍ତ । ଶାନ୍ତ ସୁମର ପୂର୍ବ ସୁକୃତ । ସାଧ ହେବ ଏବେ ସ୍ୱର୍ଗ ମର୍ତ୍ତ୍ୟ । ଶନ୍ଧୁ ମାର ରଖ ଭୁମ୍ଭ ଭକ୍ତ ହେ ସତ ॥ ଶୁଖିଲ ନାବରେ ପାଣି ପଶିଯିବ ସମସ୍ତେ ଥାଆନ୍ତୁ ସାକ୍ଷି । ସୁଖ ନାହିଁ ମୋତେ ଦିବସ ରଜନୀ ଭୁମ୍ଭପାଇଁ ମୁଁ ଯେ ଦୁଃଖିରେ ଶଣି । ଶେଷ ପାହାନ୍ତ ହେଲଣି ଆସି, ଶୋଇଅଛ ସର୍ବେ—ଉଠ ଚେତ । ଶନ୍ଧୁ ବେଢ଼ିଲଣି ଚଉକତି । ଶାସ୍ତି ଦଣ୍ଡ ପଡ଼ିବ ଏ କ୍ଷିତି । ଶସ୍ତ୍ର ଧେନ ହସ୍ତେ ଖଣ୍ଡା କାତି । ଶୂନ୍ୟ ହେବ ଜମ୍ବୁଦ୍ୱୀପ ପୃଥ୍ୱୀ । ୩୨ । ହେଉ ଏଥର ପରେ ହତ୍ୟା ପାଇବ ହାଣ ଉଠାଇବ ନଷ୍ଟେ । ହସ୍ତୀ ଚଢ଼ି ହସ୍ତ ଲଗାଇ ମାରିବ ଦୁଷ୍ଟ ନ ରଖିବ ମର୍ତ୍ତ୍ୟେ ହେ କବ । ହାକ ଜନପୁରରେ ଯାଉ ଶୁଭ । ହେଜ ଠିଆକଣ୍ଠ ଥାଅ ଜାଗି । ହକାଉଛୁ ନାମ ମାୟା ଲଗି । ହାକ ଶୂନ୍ୟ ଚନ୍ଦକୁ ଦେଖିବ । ହଂସା ବାଦ ଛନ୍ଦ ନ ରଖିବ । ହଟ ହଟେ ଦୈତ୍ୟଙ୍କୁ ମାରିବ ॥ ଖାଲେ ପଡ଼ିଛୁ ଖଣ୍ଡିକ ଝିଙ୍କିନେବ କ୍ଷମା ଦେଲେ ଯିବ ତରି । ଭଣେ ଭୀମ ଭୋଇ ପାମର ଅଧମ ଗୁରୁ ପାଦପଦ୍ମ ଧରି । ହେ ସନ୍ଥେ । ଦରଶନ କଲି ବାର ସତ୍ୟେ । ସ୍ୱାମୀ ଅନାସ୍ଥ ନ କର ମୋତେ । ଅନ୍ତର୍ଦ୍ଧାନ ହେଲେ ଅବଧୂତେ । ସାଧୁ ଯେବେ ଦୟାକର ମୋତେ । ମନବାଞ୍ଛା ହେଉ ପରାପତେ । ପଡ଼ି ଚରଣ ଧରୁଛୁ ଦନ୍ତେ । ୩୪ ।

—୦—

Digitized by srujanika@gmail.com

( ୧୮ )

(କ) କଳକାଳ କାଠ ହୋଇଲଣି ଆସି କର୍ମ ଥିବ ଜମ୍ବୁଦ୍ୱୀପ । କରତା ବିଜେପ୍ତେ କରିବେ ଏଥର ନବଘନ ଶ୍ୟାମରୂପ ଯେ । ୧ । କ୍ଷୀରସିନ୍ଧୁବାସୀ କ୍ଷେତ୍ର ମଧ୍ୟେ ଆସି ଗୁପତ ଖେଳ ନମନ୍ତେ । ଖଟିଥିବେ ପଦ୍ମ ମଣ୍ଡଳାର ଭିତରେ ହିଜେ ଅନାଦ୍ୟ ଅନନ୍ତେ ଯେ । ୨ । ଗରବ ଗଞ୍ଜିବେ ଜ୍ଞାନ ମନ୍ତ୍ରାଇବେ ଗତି ପତି ଦଇତାରି । ଗୋପ ପୁରପାଏ ଲୀଳା ଆରମ୍ଭିବେ ଗୋପବୃନ୍ଦ ସଙ୍ଗେ ଧରି ଯେ । ୩ । ଘେନ ଭକ୍ତବୃନ୍ଦ ଘୋଟି ବେଢ଼ିଥିବେ ଘୋଟି ଆସିଲାଣି ଯୁଗ । ଘାଘୂରି ଘଣ୍ଟି ଘୁମର ହସ୍ତେ ଧରି ସଜ ହୁଅ ବେଗ ବେଗ ଯେ । ୪ । ଅଲେଖ ପୁରୁଷ ଅନ୍ତର୍ଯ୍ୟାମୀ ନାଥ କରିବେ ଅନନ୍ତ ଖେଳ । ଅସତ୍ୟ ନୁହନ୍ତି ଅଲେଖ ମହିମା ଗୁରୁଯୁଗ ଧାଷା ବଡ଼ ଯେ ॥ ଚଳୁଥାଯୁଗ ମଧ୍ୟେ ଚଳ ଆସିଅଛି ଯେଉଁପରି ବିଧିଅଛି । ଚର୍ମ ନେତ୍ରେ ଚାହିଁ ସୁଦେହେ ଲଭିଲେ ପ୍ରଭୁଙ୍କ ଯେତେ ଭକତ ଯେ । ୬ । ଛନ୍ନ ଛନ୍ନ ହୋଇ ଗୁଡ଼ ହୁଅ ନାହିଁ ଅଛି ତିନଗୋଟି ଦିନ । ଛଦ୍ମ କଳା ଦେଖାଇ ଗୁଡ଼ିଲ କରାଇ କହୁଛନ୍ତି ଭକ୍ତ ମନ ଯେ । ୭ । ଜଗିଥିବ ରହ୍ମ ଯୁଗ ଶେଷ ଧାପୁ ଜୀବନକୁ ପିଣ୍ଡ ରଖି । ଜାଣି ହୋଇଲାଣି ଜମ୍ବୁଦ୍ୱୀପ ମହୀ ଆସି ରହିଲାଣି ବାକ ଯେ । ୮ । ଝୀନ ବାସ ପିନ୍ଧି ଝୁମାଉ ଝୁମାରି ଛଳ ଛଳ ନାଚୁଥିବେ । ଝର ଝୁମ୍ପାରୁ ଝଡ଼ ପଡ଼ିବ ପୁଷ୍ପ ଅର୍ଘ୍ୟସ୍ଥାଳୀ ବଢାଇବେ ଯେ । ୯ । ନକଟ ହେଲଣି ନଷ୍କାମରେ ଧରି ନଶତେ ନହୁଅ ଗୁଡ଼ । ନାରୀମାନେ ନାନା ବସ୍ତ୍ର ନାଚୁଥିବେ ପିନ୍ଧି ରଙ୍ଗ ପାଟଶାଢ଼ୀ ଯେ ।୧୦। ଟାକଥିବ ଯେବେ ଟୀଆ ଘରସନ୍ତେ ଦେଖିବ ଆଖି ପୂରିକି । ଟିକେ ସମ୍ଭାଳିଲେ ଯେଉଁ ଖେଳ ହେବ ଘୋରଯୁଗ ମଧ୍ୟେ ନାହିଁ ଯେ । ୧୧ । ଠକ ନୁହେଁ ଠିକ ବଚନେ କହୁଛି ଯୁଗ ଯୁଗାନ୍ତରେ ସତ୍ୟ । ଏଣେ ଗ୍ରାମ ଗ୍ରାମ ପାମରୁ ଅଜ୍ଞାନ ଗୁପତ ଲୀଳା ବିବିଧ ଯେ । ୧୨ ।

Digitized by srujanika@gmail.com

(ଢ) ଡର ଭୟ କର ଦୂର, ଧଈଥା ସ୍ୱାମୀ ପସ୍ୱର, ଛାଉ ଛାଉ ରୂପ ରୂପ ସେ ସମାବର ଯେ । ୧୩ । ହୋଇଲାଣି ଆସି କଥା, ମନରେ ନ କର ଚିନ୍ତା, ଭ୍ରମ ଜଣନ୍ତୁକୁ ଗୁଣ୍ଡ ସେ ଗୁଣ୍ଡ, ଗ୍ରଜ ବନ୍ଦିତା ଯେ । ୧୪ । ଅନାଦ୍ଧ ହୋଇବେ ରଜା, ଖଟିବେ ଦାସ ପରଜା । ଅନୁକ୍ଷଣେ ସାରତ୍ର ସେ ଭ୍ରମ; ବାଜିବ ବାଜା ଯେ ॥ ତିନିପୁର ହେବେ ରୁଣ, ପୁର ଜମ୍ବୁଦ୍ୱୀପ ଖଣ୍ଡ । ଦଳ ଦଳ କମ୍ପୁଥିବ ସେ ଥିବ ସପ୍ତ ବ୍ରହ୍ମାଣ୍ଡ ଯେ ॥ ମୁକ୍ତି ପାଇବେ ସମସ୍ତେ, ବାଞ୍ଛା କରନ୍ତି ଯେତେ, ଥାଅ ସତ୍ତେ ସଜ ହୋଇ ସେ ହୋଇ ନାମ ଆଶ୍ରିତେ ଯେ ॥ ଦୁଃଖ ମିଟିବ ଏଥର, ଚଉଦ ସିଦ୍ଧ ପଥର ଦସ୍ୟୁମାନେ ସମସ୍ତେ ସେ ଚିତ୍ତେ ନୁହ କାତର ଯେ । ଧର୍ମ ସ୍ଥିରଯୁଗେ ବସି ଚୌଦ୍ଦରେ ଇନ୍ଦ୍ର ବରଷି । ଧରଣୀରେ ସବୁ ଖଣ୍ଡୀ ସେ ଖଣ୍ଡ ପଡ଼ିବ ଖସି ଯେ ।୧୯। ନବୀନ ଯୁବକମାନ, ଖଟିବେ ସ୍ୱାମୀ ଗହନ । ନାମ ବ୍ରହ୍ମ ଚିତ୍ତ ଦେଇ ସେ ଦେଇ, ବଞ୍ଚିବେ ଜନ ଯେ । ପୁଣ୍ୟ ପରକାଶ ହେବ । ପାତକ କ୍ଷୟ ହୋଇବ, କଳିକାଳ ନାଶ ଯାଇ ସେ ଯାଇ, ସତ୍ୟ ବସିବ ଯେ ॥ କରୁଣା ସ୍ତ୍ରୀ ପୁରୁଷ । ସର୍ବଦା ବସନ୍ତ ମାସ, ଫଟା ଘର ଦ୍ୱାରମାନ ସେମାନ, ହେବ ଉଆସ ଯେ । ୨୨ । ବେଦ ମନ୍ତ୍ରରେ ଚଳିବେ, ସାତ୍ତ୍ୱିକ୍ୟ ଧର୍ମ ପାଳିବେ ବର ପୁରୁଷଙ୍କୁ ସ୍ତ୍ରୀ ସେ ସ୍ତ୍ରୀ, ଆଜ୍ଞାରେ ନେବେ ଯେ ॥ ଗ୍ରାମ ଅରକ୍ଷିତ କରିବ, ଏ ମାନ ହେବ ନଷ୍ଟପ୍ରାୟ, ଭାଷା ସେ ତିନି ପୁରକୁ ଶୁଭିବ ସେ ଜୟ ଜୟ ଯେ । ୨୦ ।

(ମ) ମହିମା ପ୍ରକାଶ ମହୀମଣ୍ଡଳରେ ମିଛ ନୁହେଁ କଥା ସତ୍ୟ । ମନର ଭିତରେ ଯାହା ବାଞ୍ଛାଅଛୁ ହେବ ତାହା ପରାପତ ଯେ ॥ ଜଣେ ଜଣେ ଯାଚି ଦେଉଥିବେ ବର ଯୁଗ ଶେଷ ଠାଆ ମୂର୍ତ୍ତେ । ଯୋଗ ଭୋଗ ଗୋପଲକ୍ଷ୍ମୀ ପରସନ୍ତ ଲେଖାଅଛୁ କର୍ମକାଣ୍ଡେ ଯେ ॥ ରହସ୍ୟ ଦ୍ୱାରକା ରାସ ମଣ୍ଡଳ ନବାଇବେ କୁଞ୍ଜସ୍ଥଳ, ରଜଜଣ

Digitized by srujanika@gmail.com

ବସି ଅଭିଷେକ ହେବେ ସେ ଅନାଦି ଗୋଗେଶ୍ୱର ଯେ । ୨୭ । ଲଭିବେ ଲାବଣ୍ୟ ରୂପକୁ ସମସ୍ତେ ଲାଗିଥିବେ ସଙ୍ଗେ ସଙ୍ଗେ । ଲେପ୍ସ କରିଥିଲେ ପ୍ରଭୁ ପାଦପଦ୍ମେ ଲୀନ ହେବେ ନିଜ ଅଙ୍ଗେ ଯେ । ୨୮ । ଷାରଦଧି ବାନା ଜଗତେ ଉଡ଼ିବ ବଡ଼ ବଡ଼ ବୋଲାଇବେ, ବୁଦ୍ଧି ବିବେକ ପଣ୍ଡିତ ପଣରେ ସେ ମଣଧନେ ବଡ଼ ହେବେ ଯେ । ୨୯ । ସରିଲାଣି ଆସି ସର୍ବ ଅପକର୍ମ କଳିକାଳ ପଣ ଲାଗି, ସାର ହେବ ଶିଷ୍ଟ ସମ୍ପଦ ଲଭିବେ ନବଖଣ୍ଡ ଦ୍ୱୀପ ପୃଥ୍ୱୀ ଯେ । ୩୦ । ସତ୍ୟ ପଶିଲାଣି ସଂସାର ଭିତରେ ନେହି ନ ପାରିଛ ଜାଣି, ଶୂନ୍ୟରେ ଏଥର ପଡ଼ିବ ବ୍ରହ୍ମାଣ୍ଡେ ସତ୍ୟାଦି ସାଗର ଧ୍ୱନି ଯେ । ୩୧ । ସୁବର୍ଣ୍ଣ ମନ୍ଦିର ହୋଇବ ତିଆର ଶୂନ୍ୟକର୍ତ୍ତାଙ୍କ ଆଜ୍ଞାରେ । ଶୁଣିଥାଅ ସର୍ବେ ସାଧୁ ସନ୍ଥ ଜନ ଦେଖିବ ଚର୍ମ ନେତ୍ରରେ ଯେ ॥ ହରିହର ବ୍ରହ୍ମା ଚରଣେ ଖଟିବେ ଗୁମୁରେ ଖଟିବେ ଦାସ, ହେବ ଯେତେ କଥା ଶ୍ରୀଗୁରୁ ଜାଣନ୍ତି ଅଲେଖ ଶୂନ୍ୟ ପୁରୁଷ ଯେ ।୩୨। କ୍ଷୀନ ରୂପ ଧରି ଗୁପତେ ଖେଳନ୍ତି କ୍ଷମା ମହିମା ଅଶେଷ । ଖେଳ ଆରମ୍ଭିବେ ଅଳପ ଦିନରେ ଭଣେ ଶ୍ରୀମ ଭକ୍ତ ଦାସ ଯେ । ୩୩ ।

—·୦—

( ୧୯ )

(କ) କଳିଯୁଗେ କର୍ତ୍ତା ଚିତ୍ତ ମୁକ୍ତ ଦାତା ବୁଦ୍ଧ ରୂପେ ବିଜେ କଲେ, ନିତ୍ୟ କର୍ମ ଜାତି ଭକତମାନଙ୍କୁ ମହାନତ୍ୟ ଧର୍ମ ଦେଲେ ଯେ, କଳି ହୋଇଲାଣି ଶେଷ, ଆଉ ରହିଛି ଅନ୍ନ ଦିବସ ଯେ । ୧ । ଖଳ ଲୋକମାନେ ସର୍ବେ ନାଶ ଯିବେ ଠମକ ବାଜୁଛି ମସ୍ତ, ଖଣ୍ଡା ଜାତ ହେବ କୋମ୍ବାଳ ମଠରେ ଦୁଷ୍ଟ ନିବାରିବା ପାଇଁ ଯେ, କ୍ଷିତ ମଧ୍ୟରେ ଅନାଦି, ରଜା ହୋଇବେ ବ୍ରହ୍ମାଣ୍ଡ ସାଧେ ଯେ ।୨। ଗୋଷ୍ଠୀ ଠିକଣ ଯୁଦ୍ଧ ହେବ ତହିଁ ବହିବ ରକତ ନଦୀ । ଗଡ଼ାଗଡ଼ି ହୋଇ ମଡ଼ା ଭାସୁଥିବ ସମୁଦ୍ର ପୁଲିନକୁ ଭେଦି ଯେ, ଗାଢ଼ ସଂଗ୍ରାମ ହୋଇବ, ଗର୍ଜି

Digitized by srujanika@gmail.com

ରକତ ନଖ ବନ୍ଧିବ ସେ । ୩ । ଘୋଡ଼ା ହାଣ୍ଡି ଚର୍ମ ହୋଇଯିବେ ଛୁଇ ରବି ଶଶୀ ନ ଦିଶିବ, ଘୁ ଘୁ ନାଦ ଦେଇ ରକତର ନଖ ଦଶ ଦିବସ ବନ୍ଧିବ ସେ, ଯୋଟି ଆସୁଥିବ ମାଡ଼ି । ସେତେବେଳେ ଚଳଇ ସିନ୍ଧୁ ଲଙ୍ଘିବ ସେ । ୪ । ଉତ୍ତରୁ ରୁଧିର ଦକ୍ଷିଣ ଦିଗକୁ ବନ୍ଧିବ ପ୍ରଚଣ୍ଡ ହୋଇ, ଉଠି ଆସୁଥିବ ସାତତାଳ ଉଚ୍ଛେ ଭୂମଣ୍ଡଳ ହେବ ଦୁଲ ସେ, ନିକଟରେ କ୍ଷତ୍ରୀମାନେ । ଦିବସୁ ପଳାଇବେ ଏଣେ ତେଣେ ସେ । ଚିତ୍ତ ବୃତ୍ତି ଦେଇ ପ୍ରଭୁ ପାଦେ ଧ୍ୟାସ୍ତି ରହିଥାଅ କେଉଁ ଜଣେ । ଭକତ ବେଦନା ଶୂନ୍ୟବାସୀ ବିନା ବୁଝିବାକୁ ନାହିଁ ଜଣେ ସେ, ଚେତି ଯାଉଥିବ ଯେବେ, ଚିତ୍ତ ଅବଶ୍ୟ ପୂର୍ଣ୍ଣ କରିବେ ସେ । ୬ । ଛପ୍ପନକୋଟି ଜୀବ ପଡ଼ି ପାଉଛନ୍ତି ଧ୍ୟାସ୍ତି ଯେବଣ ପାଦକୁ, ଛଟ ତଳେ ରହି ଚିହ୍ନି ନ ପାରୁଛ ବେନି ନେତ୍ରେ ଦେଖି ଦେଖି ସେ, ଛୁଡ଼ିପଡ଼ିବଟି ଶିର, ସେବେଳେ ବସନେ ଝଡ଼ ପଚର ସେ । ୭ । ଯୋଗୀ ବେଶ ହୋଇ ବ୍ରହ୍ମାଣ୍ଡ ଗୋସାଇଁ ମର୍ତ୍ତ୍ୟକୁ ବିଜୟେ କଲେ । ଜାଗିଥାଅ ବୋଲି ଭକତମାନଙ୍କୁ ମହାନିତ୍ୟ ଧର୍ମ ଦେଲେ ସେ, ଜାଗି ନ ପାରୁଛ କେହି, ଯୋଗୀ ନୁହେଁ ବ୍ରହ୍ମାଣ୍ଡ ଗୋସାଇଁ ସେ । ୮ । ଝଡ଼ିବ ପାତକ ସାତ ଜନ୍ମଯାକ ପ୍ରଭୁ ନିଜ ରୂପ ଦେଖି, ଝଟକ ବିକଳ ରୂପ ଦରଶନେ କଳିଯୁଗ ଯିବ ଶଙ୍କି ସେ, ଝାଡ଼ିବଣ ଲଗା ହେବ, ଶୁଷ୍କତରୁ ପଲ୍ଲବ ଉଠିବ ସେ । ୯ । ଜାହା ଗର୍ବ ସବୁ କେଉଁ ପ୍ରାୟେ ହୋଇ ପ୍ରଭୁ ପାଦେ ଥାଅ ମଡ଼ି, ନିକଟ ହେଲାଣି ଲୀଳା କରିବାକୁ ନିଶି ଅଛୁ ପାଞ୍ଚଦଣ୍ଡ ସେ, ନିଶ୍ଚେ ପ୍ରକାଶ ହୋଇବ । କଳି ଭାଙ୍ଗି ସତ୍ୟ ଉଦେ ହେବ ସେ । ୧୦ । ଟେକ ଦେଲଛନ୍ତି ଅଲେଖ ବାନାକୁ ଟାଣ ଭାଙ୍ଗିବାର ପାଇଁ, ଟେକ ଦେଲେ ମଥା ସଉଜିବ କଥା ଟିକେ ମାତ୍ର ଥାଅ ସବୁ ସେ, ଟାଣୁ ଟମାଳିଆ ସେତେ, ଟୋପ ଗାଡ଼େ ଉଡ଼ିବେ ସମସ୍ତେ ସେ ॥ ଠାବ ଦେଇ ଭକ୍ତମାନଙ୍କୁ ରଖିବେ ଠିକ ଯାଏ ଟାକିଥାଅ, ଠିକ ଶ୍ରୀମସେନ ଗୀତରେ କହିବା ଅନାଦି ଗୁରୁଙ୍କ

Digitized by srujanika@gmail.com

ପୁଅ ହେ ଠିକ ପୁରୁଷ ଅଲେଖ, ଠକଦେଇ ଗଲାଗଲେ ଦେଖ ଯେ । ୧୨ ।

(ଡ) ଡର ମଣିଲେଣି ଧର୍ମକୁ ସମସ୍ତେ ସୁରାପାନେ ହେଲେ ବଶ, ଡଗଂରଙ୍କ ସଙ୍ଗେ ଗୁଡ଼ାଦେଇ ସବେ ଶ୍ରୀଗୁରୁଚରଣେ ରସ ଯେ, ଡାକ ଗୁରୁ କହୁଛନ୍ତି, ଭକ୍ତେ କେହି ନ ପାରୁଛ ଚେତି ହେ । ୧୩ । ଡାଙ୍କି ବାଜା ଜଗତରେ ବନ୍ଦ ହେବ ବଳ ଇନ୍ଦ୍ର ହେବାପାଏ, ଢେଙ୍କାନାଳ ଗଡ଼ ଡାଙ୍କୁଣୀ ଉଠିବ ଡୁଲାଇ ଚଢ଼ିବ ଘାଏ ଯେ ଡାଳ ସଦାବ୍ରତ ଦେଇ, ଭକ୍ତକୁଳ ରକ୍ଷିବେ ବଞ୍ଚାଇ ଯେ । ୧୪ । ଅମୃତ ବରଷା ସ୍ୱର୍ଗରୁ ହୋଇବ ଢେଙ୍କାନାଳ ଯୋରନ୍ଦାରେ, ଅଖିଳ ବ୍ରହ୍ମାଣ୍ଡ କରତା ଯାହାକୁ ଛକଦେବେ ଶ୍ରୀହସ୍ତରେ ଯେ, ଓଡ଼ିଶାର ନରସାଇଁ । ବାର ଅଙ୍କେ ଯିବେ କାଠପାଇଁ ଯେ ॥ ଚରଚର ଶତ ନ ହୁଅ ଭକତ ପ୍ରଭୁ କରିଛନ୍ତି ବିଜେ, ଭନଦାନ ଗଲେ ବୁଝାମଣା ହେବ ଗୋବିନ୍ଦ ଦୈତ୍ୟର ରାଜ୍ୟେ ଯେ, ଛନ୍ତି ଏକଇ ଭକତ ତାଙ୍କୁ ଶ୍ରୀହସ୍ତରେ ଦେବେ ଛକ ଯେ । ୧୫ । ଥପ୍ପ ସ୍ୱାମୀର ନାହିଁ ସନ୍ଧୀ କୁଳେ ତହିଁ ଥୋଇ ଅଛନ୍ତି ଗୋସାଇଁ, ଚନ୍ଦ୍ରଦର୍ଶୀ ପଣେ ଶାଢ଼ୀ ବାନ୍ଧି ଦେବେ ମହାନିତ୍ୟ ଧର୍ମ ଦେଇ ଯେ, ଥପ୍ପ ହୋଇଲେ ବ୍ରହ୍ମାଣ୍ଡ, ଶତ୍ରୁ ଉପରେ ହୋଇବେ ଷଣ୍ଢ ଯେ । ୧୬ । ଦୀନବନ୍ଧୁ ନାମ ସତ୍ୟକୁ ନ ଲଙ୍ଘି ଭକ୍ତ ଭାବେ ଚିତ୍ତ ଥିଲେ, ଦୁରିତ ନାଶିବ ପ୍ରଭୁଙ୍କୁ ଦେଖିବ ପୂର୍ବରୁ ସୁକୃତ ଥିଲେ ଯେ, ଦୁଃଖ ଗ୍ରାସ କ ରହିବ, ଦୟାନିଧି-ପାଦେ କର ଭାବ ମେ ॥ ଧର୍ମକୁ ସମସ୍ତେ ବିମୁଖ ହେଲେଣି ସୁରାପାନେ ହେଲେ ବଶ । ଧର ଧର ଏତେବେଳେ ସଜ ଅଛି ଘଣ୍ଟାନ୍ତେ ନ ଦେବ ଦୋଷ ଯେ, କହୁଅଛି ସମସ୍ତଙ୍କୁ, ଧର୍ମ ଗୁଡ଼ିଲ ଏବେ ତୁମ୍ଭଙ୍କୁ ଯେ । ୧୭ । ନାହିଁ ଦାନ ଧ୍ୟାନ ନାହିଁ ଜପତପ ନାହିଁ ତୀର୍ଥବ୍ରତ କଲ୍ପ । ନିତି ନାମ ବ୍ରହ୍ମ ଅଧର ମାରିଲେ ଏ ଜୀବଙ୍କ ମୋକ୍ଷ ... ... ... ଭୁଞ୍ଜୁଛି ... ... ... ଭିନ୍ନ ଭିନ୍ନ

Digitized by srujanika@gmail.com

ଯେ । ୨୦ । ପ୍ରାତଃକାଳୁ ଉଠି ସ୍ନାଦାନ ସାଗରେ ଗୋମୟ ମାର୍ଜନ ହେବ, ପ୍ରଭୁ ପାଦେ ଶିର କମଳ ସମର୍ପି କରଣୁ ଅଶ୍ରୁ ଚରେ ଥିବ ଯେ, ସଂଗ ନବକ କଳେଣ, ମୋ ଆନନ୍ଦେ କଣ୍ଠଦ ଦନ ଯେ । ୨୧ । ସ୍ଥଳମଣେ ଥାଇ ମିଛେ ନୃହବାଲ ମିଳିବ ଥରେ ଡାକୁଣୀ, ସଂଗରୁ ସାର ବାନା ଉଡଅଛି କେହି ନ ପାରୁଛ ଜାଣି ଯେ, ସଦାବୃତ୍ତି ଯିବ ନାଶ, ଫାଟିଯିବ ଏ ଦକ୍ଷିଣ ଦେଶ ଯେ ॥ ବ୍ରାହ୍ମଣୀମାନେ ଯେ ଧର୍ମକୁ ଗ୍ରହଣ ବେଶ୍ୟାବୃତ୍ତି ଆଚରିଲେ, ବ୍ରାହ୍ମଣ ଗାୟତ୍ରୀ ମନ୍ତ୍ରକୁ ଗ୍ରହଣ ବାଣିଜ୍ୟ ବେପାର କଲେ ଯେ, ବକଲେଣି ଜଗ ସଙ୍କ, ମୀନ ମାରବାକୁ ହେଲେ ଆଉ ଯେ ॥ ଭସିଯାଉଅଛି ନବଖଣ୍ଡମଣ୍ଡ ଅସଂଖ୍ୟ ପାତକ ହେଲ, ଉଣେ ଗ୍ରାମ ସ୍ଥାନ ପାମର ଅଜ୍ଞାନ କଳିଯୁଗ ଏହା କଲ ଯେ । ଭକ୍ତପଣେ ଅଛ ଯେତ୍ତୁ, ତାକ ଅଲେଖଙ୍କୁ ପୃଥ୍ୱୀ ରହୁ ଯେ । ୨୮ ।

(ମ) ମାଣ୍ଡ ଆସିଲେଣି ନବକୋଟି ଯୋଗି ଆଜ୍ଞା ପାଇ ବ୍ରହ୍ମାଣ୍ଡକୁ । ମହାକାଳ ମାନ୍ତ ପ୍ରାୟେ ମରିଯିବେ ବେନି ନେତ୍ରେ ଦେଖୁ ଦେଖୁ ଯେ, ମହିମାଙ୍କୁ ଜଗ ଜୟେ, ମନ ହରେଣି ଶ୍ରୀଗୁରୁପାୟେ ଯେ ॥ ଯୋଗୀବେଶ ହୋଇ ମହିମା ଗୋସାଇଁ ବିଜୟେ କଲେ ମର୍ତ୍ତ୍ୟକୁ, ଜାଣି ନ ପାରୁନ୍ତ ଜଗତରେ କେହି ବେନି ନେତ୍ରେ ଦେଖୁ ଦେଖୁ ଯେ, କାଳ ବେଶ୍ଚିତ୍ତି ନୟନ, ସେହେଲୁ ପାବ ଛଡ଼ା ଦରମଣ ଯେ । ୨୬ । ରବି ଚନ୍ଦ୍ର ଦୁହେଁ ମର୍ତ୍ତ୍ୟକୁ ଆସିବେ ବଧ ହୋଇଯିବ ମହୀ, ସାତଦିନଯାଏ ଅନ୍ଧକାର ହେବ ପଥ ନ ଦିଶିବ କାହିଁ ଯେ, ସେ ତାଳେଯାଇ ପଦ ନୋହୁ, ସ୍ୱାମୀ ଶ୍ରୀମୁଖ ବଚନ ଏହୁ ଯେ । ୨୭ । ଲକ୍ଷେକ ସୁବର୍ଣ୍ଣ କୁମ୍ଭ ବସିଥିବ ଲକ୍ଷେ ଛତ୍ର ଟେଣା ହେବ, ଲକ୍ଷେ ଗଜନକୁ ଗାଡ଼ୀ ବାନ୍ଧଦେବେ ଶ୍ରୀହସ୍ତରେ ଗୁରୁଦେବ ଯେ, ଲୀଳା ଅସଂଖ୍ୟ ହୋଇବ । ସ୍ୱର୍ଗ ଅମରା ଆସିଥିବେ ଯେ ॥ ବାଜୁଥିବ ଲକ୍ଷେ ଲକ୍ଷେ ଗାର ବାଜା ବାଜନ୍ତା ନଡନ ଥିବେ, ପ୍ରଭୁଙ୍କ ଖଣ୍ଡାରୁ ଅଡ଼ାଇ

Digitized by srujanika@gmail.com

ବେଳକହିଁ ଧନ ବସ୍ତୁ ଆଣି ଦେବେ ଯେ, ବ୍ରହ୍ମାଣ୍ଡରେ ଅଚ୍ଛି ପୂର, ସ୍ୱାମୀ ରଖିନଥିଲ୍ଲ ମୂଦ ମାଡ଼ ଯେ । ୯ । ସମ୍ବଲପୁରରୁ ପ୍ରସାଦ ଚଳିବ ଲକ୍ଷ୍ମୀ ବାଜେ କଣଙ୍କନ୍ନ, ମୁନି ଭକ୍ତମାନେ ହୋଇବେ ଯେ ନିମେଳ ଅଲେଖଙ୍କ ପୁଲନାଶ୍ରିତ ଯେ, ଆବଦାଇ ଥିବେ ବନ୍ଦୀ, କଳିଯୁଗରେଟି ଶ୍ରୀମ ଭୋଇ ଯେ ॥ ସର୍ଗ୍ରେ ଦେବ ତହିଁ ଲକ୍ଷେ ରାଜା ଥାଇ ପଣ୍ଡବ ଧର୍ମର ଦ୍ୟାସ୍ତୁ, ମନମୋହ ଟଣେ ରହିଅଛୁ ହେଲେ ବୁଝିବା ଯେ ରହି ରହି ଯେ, ପଣ୍ଡବଟି କଷାକଷି, ସର୍ବ ଧର୍ମ ହେବ ବସ୍ତୁବଳୁ ଯେ । ୩ । ଶଙ୍କର ତହିଁରେ ବାଜେ କରୁଥିବେ ପଗୃରବେ ବ୍ରହ୍ମଜ୍ଞାନ, ସର୍ବ ଭକ୍ତ ପ୍ରୀତ ଅଲେଖ ଭକତ ବାକ୍ୟ କରିବେ ବଖାଣ ଯେ, ସର୍ବ ମନ ହେବ ତୋଷ, ସଦଜ୍ଞାନ ଦେବେ ଉପଦେଶ ଯେ ॥ ହରିବୋଲ ହୁଳହୁଳି ଶବଦରେ କମ୍ପୁଥିବ ତ୍ରିଭୁବନ, ହରି ଅରଜୁନ ବାଜେ କରିଥିବେ ବ୍ରହ୍ମା ଆଦି ହନୁମାନ ଯେ, ହେବ କଳଙ୍କି ପରୀକ୍ଷା, ସର୍ବ ଧର୍ମ ହେବ ତହିଁ ରକ୍ଷା ଯେ । ୩୨ । କ୍ଷୟ ଯିବ କଷ୍ଟ ଥିବ ଯାର ଘଟ ବୃଦ୍ଧା ଅଙ୍ଗ ଯୁବା ହେବ କହେ ଶ୍ରୀମ ଭୋଇ ଅଜ୍ଞାନ ପାମର ଏକାକ୍ଷର ହୃଦେ ଭାବ ଯେ, କ୍ଷଣେ ବିଳମ୍ବ ନ କର, ଖେଳ ଲାଗିଛି ଜମ୍ବୁ ଦ୍ୱୀପର ଯେ । ୩୪ ।

—o—

( ୨୦ )

(କ) କର୍ତ୍ତାଙ୍କ ଶ୍ରୀମୁଖରେ କରଯୋଡ଼ି ଶିରେ ନତ କରୁଛି ଜଣାଣ । କର ପ୍ରତିକାର ଭକତ ତୁମ୍ଭର ହୋଇଲେଣି ହୀନମାନ ଯେ । କର୍ମା ଗୁପତେ ଅଛ । କଥା କାହିଁପାଇଁ ନ ଶୁଣୁଛ । ୧ । କହନ୍ତି ଅଲେଖ ରହି ଶୂନ୍ୟ ଶିଖ କିଛି ନ କରିରେ ଭୟ । କରମୂଳ ଆଣି ଭକ୍ତଙ୍କୁ ରଖିବ ଉପର ନେବ ନଷ୍ଟପ୍ରୟେ । କର୍ମା ଅଟଇ ସତ । କାଳ ମୁଖେ ଦୁଷ୍ଟେ ହେବେ ହତ ॥ କ୍ଷମାସାଗର ଅଲେଖ ଅବଧୂତ ତୁମ୍ଭ ପର ପ୍ରଭୁ ଥାଉଁ । ଖଳ କଥା ଶୁଣି ହୃଦ ହୁଏ ହାଣି

Digitized by srujanika@gmail.com

ସମ୍ଭାଳ ନୋହୁଛି ଆଜ ଯେ । ଖେଦ ମାରୁଅଛନ୍ତି । ଖୋଜ ଭକ୍ତେ ଠାବ ନ ପାବନ୍ତି ॥ ଖଟିଥାଅ ଧାଇଁ ଅଭୟ ପାଦକୁ ଖେଦ ନକର ମନକୁ । ଖଣ୍ଡ ଖଣ୍ଡ ହୋଇ ଖପର ଦାଢ଼ରେ ଛେଦିବ ଦୁଷ୍ଟ ବଳକୁ ରେ । ଖାଲ ଡ଼ି ପରେ ପଡ଼ । ଖଙ୍ଗ ଖଙ୍ଗ ଖଙ୍ଗ ପିବେ ମଣରେ । ୪ । ଗୁରୁଙ୍କ ଛାମୁରେ ଜଣାଣ କରୁଛି ପାଦପଦ୍ମ ତଳେ ପଡ଼ି । ଗରବଷ୍ଟା-ପଣେ ଧାଇଁ ଦୁଷ୍ଟଗଣେ ଗର୍ଜି ହେଉଛନ୍ତି ଝାଡ଼ ଯେ । ଗର୍ଜୁଛନ୍ତି ବହୁତ । ଗାଳ ଭର୍ତ୍ସନାରେ ଅପ୍ରମିତ । ୫ । ଗୋପନରେ ଅଛି, ନ ଭାଳେ କିଛି ସହିଥାଅ ଗାଳ ହନ୍ଦ । ଗୋଧର୍ମ ଦାଣ୍ଡରେ ସଭିଙ୍କୁ ରଖିବ, ଯେତେକ ଭକତ ବୃନ୍ଦରେ । ଗଙ୍ଗ ଗଞ୍ଜିବ ନଷ୍ଟେ । ଗହଣିଆ ଭକ୍ତ ପଛେ ଥିବେ ॥ ଘରଦ୍ୱାର ଦୂରକରଣ ତୁମ୍ଭର ଚରଣେ ଲଗାଇ ଆସ । ଘଡ଼ଏ ବିଶ୍ରାମ ନାହିଁ ନବଗ୍ରାମ ବୁଲୁଛନ୍ତି ତୁମ୍ଭ ଦାସ ଯେ । ଘୋର ଘଡ଼ଘଡ଼ ଦ୍ୟନ୍ତି । ଘନ ଘନ ରଡ଼ି ଗୁଡ଼ୁଛନ୍ତି । ୬ । ଘଡ଼ିଘଡ଼ିକେ ନର କି ହେବ ମୋହର ଏଥିକୁ ନସହି କିଛି । ନବାଣିବା ପାଇଁ କଳିଯୁଗ ଭାର ଶୂନ୍ୟ ଲୀଳା ଲଗାଇଛି ରେ । ନନ୍ଦା ସୁତ ମୋ ସମ । ନଜାଣି ନିନ୍ଦନ୍ତି ନରାଧମ । ୮ । ଉଦେ ହୋଇଅଛ ଧର୍ମରକ୍ଷା ଅର୍ଥେ ସ୍ୱୟଂ ବୁଦ୍ଧ ବାଇଷ୍ଣବ । ଆପଣେ ଆପଣ ଆପେ ନିରମାଣ ଶୂନ୍ୟ ବ୍ରହ୍ମ ଗୁରୁଦେବ ଯେ । ଅନ୍ନୁ ସରିଛି ଧାଇ ଆଉ ଅନ୍ୟରେ ଭରସା ନାହିଁ ।୯। ଅଣାକାର ବ୍ରହ୍ମ କହୁଅଛୁ ଆମ୍ଭେ ଆରତ ନୁହଁରେ ବଳା । ଆଠ ପଦ୍ମ ଭକ୍ତ ବ୍ରହ୍ମାଣ୍ଡେ ରଖିବ ଶୂନ୍ୟେ ଲଗାଇବା ଲୀଳା ରେ । ଆଉ ଯେତେ ସଂସାର । ଅବଶ୍ୟ ହୋଇବ ନାରଖାର ।୧୦। ଚମକ ପଡ଼ୁଛି ଚଉଦ ବ୍ରହ୍ମାଣ୍ଡ ହାଟବାଟ ଜଳ ଭୁଟେ । ସ୍ୱର୍ଗଁ ସ୍ୱର୍ଗଁ ବଣା ହୋଇଲେ ସରବେ ଦଣ୍ଡ ମାୟା ଛନ୍ଦ କୂଟେ ଯେ । ବୈର ଚଣ୍ଡାଳ ବୋଲି । ସ୍ୱତନ୍ତ୍ରେ ଦେଉଛନ୍ତି ଗାଳି । ୧୧ । ଚନ୍ଦ୍ର ସୂର୍ଯ୍ୟ ମୋର ଆଜ୍ଞା ଦେଖିକରି କରନ୍ତି ଫେରି ପ୍ରହରୀ । ସ୍ୱର୍ଗଁ ଆଉ ସର୍ବେ ଯେ ଯାହା କହନ୍ତି ଅବଶ୍ୟ ଦଣ୍ଡିବେ ଧରିରେ । ସ୍ୱର୍ଗଁ ଛନ୍ତି

Digitized by srujanika@gmail.com

ଯାକଲେ । ସ୍ୱରୂପକ ଆସ୍ଥା ଧରଗୋ ଭଲେ । ୧୨ । ଛନକା ମଣିଲ ପରାଏ ଜଗତ ହେଉଅଛୁ ନନ୍ଦ ଛନ୍ଦ । ଛନ୍ଦ କୂଟ ଲକ୍ଷ ମିଛେ ଧନ ଖୋଇ କରୁଛନ୍ତି ବର୍ତ୍ତମାନ ସେ । ଗୁପ୍ତ ସତ୍ୟବଚନ । ଛନ୍ଦେ ହୋଉଛନ୍ତି ନାମ ଛାମ ଯେ । ୧୩ । ଛଡ଼ିବେଦ ମନ୍ତ୍ର ଜାଣ ଶୂନ୍ୟ ବ୍ରହ୍ମ ବୋଲନ୍ତି ଶୂନ୍ୟରେ ମୋ ଏ । ଗୁପ୍ତ ଦେଖୁକର ରହିଥାଅ ସବେ ଆଉ ଅଲୁଧନ ଯାଏରେ । ଛଣା ହେଉଛୁ ଜ୍ଞାନ । ଛନ୍ଦେ ନ ପଡ଼ ସୁଜ୍ଞାନ ଜନ ॥ ଯୁଗ କରତା ଅଭୟ ବରଦାତା ଶରଣ ପଞ୍ଜର ଗୁରୁ । ଯୋଗୀନ୍ଦ୍ର ଜ୍ୟୋତି ସଚ୍ଚିଦାନନ୍ଦ ଚିତ୍ତ ଅବ୍ୟକ୍ତ ମହାମେରୁ ଯେ । ଜାଣ ସକଳ ଧର୍ମ । ଜଗତକୁ କର୍ମ କର ଭ୍ରମ ॥ ଜାତ ମୁଁ କରୁଛି ଆଜ୍ଞା ମୁଁ ଦେଉଛି ମୋତେ ସେବା କର ବୋଲି । ଜାଣିଶୁଣି କର ଆଜ୍ଞାକୁ ପାଶୋର ଅମଡ଼ାରେ ଗଲେ ଭୁଲେରେ । ଜୀବ ନାହିଁ ମୋ କସ । ଯେଝା କର୍ମେ ସବେ ଯିବ ନାଶ ॥ ଝଗଡ଼ା ଜଞ୍ଜାଳ ଝଞ୍ଜାରେ ପଡ଼ ଝୁମାଇ ହେଲେଣି ମୋହେ । ଝର ମକରନ୍ଦ ଗୁଡ଼ ଗୁରୁପଦ ବାନ୍ଧବଜନ ପରାଏ ନେହେ । ଝଟେତ ବୁଝା ହେଉ । ଝଗଡ଼ାରେ ବ ଭସ୍ମ ନ ଥାଉ । ୧୭ । ଝଡ଼କେ ଯେତେକ ଝାବୁଡ଼-ଆଲେକ ଦୁଷ୍ଟବଳ ଯେତେ ହେବେ । ଝାଡ଼ ପର୍ବତ ନଦୀ ବନ ଗ୍ରାମରେ ଯେତେରେ ଯେ ଯାହିଁ ଥିବେରେ । ଝଡ଼ିଯିବେ ପ୍ରମାଣ । ଝଞ୍ଜାରେ ହୋଇ ରଣଭଣ । ୧୦ । ଆପ ମନ୍ଦମାନେ ଜାଣେ ହୋଇଅଛୁ ଅରୂପ ବ୍ରହ୍ମ ମୂରତି । ନ ଚିହ୍ନିଲେ କେମନ୍ତ ଶାନ୍ତି ବୃତେ ବାଇ ରୂପ ରଙ୍ଗେ ଭୁଲୁଛନ୍ତିରେ । ନାନା ପଥେ ଭ୍ରମିଲେ । ନାମ ଭଜନକୁ ନିନ୍ଦା କଲେ । ୧୯ । ନିନ୍ଦା କଲେ ନର କସ ହେବ ମୋର ଏଥକୁ ନ ଭଲ କରୁ । ନିବାରିବା ପାଇଁ କଳିଯୁଗ ଭାବ ଶୂନ୍ୟ ମହାଚୈତନ୍ୟ ଅଛୁରେ । ନିଜ ମହିମା ଦେଖ । ନିଦା ବ୍ରହ୍ମ ମୁଁ ଧ୍ରୁ ରୁ ଅଲେଖ । ୨୦ । ଟାଣ୍ଟ କରୁଛନ୍ତି ଟମାଳ ମଣ୍ଡନ୍ତି ନିନ୍ଦା କରୁଛନ୍ତି ମୂଢ଼ । ଠାକି ଅଛୁ ପ୍ରଭୁ ତୁମ୍ଭ ଶ୍ରୀ ଆଜ୍ଞାକୁ ଅନୁସର ଅଛୁ ଦୃଢ଼ ହେ । ଠିକ ଠିକ ମୁସନ୍ତି । ଠାଣେ ଜଡ଼ା ସମାନେ

Digitized by srujanika@gmail.com

ଭାଷନ୍ତି ॥ ଝାଣ ଭାଙ୍ଗିବାକୁ ଆସିଅଛୁ ଆମ୍ଭେ ଝିକଏ ସମ୍ଭାଳ ବାବୁ । ଝାଳ୍ପ କଲା ଲୋକ ଭାଙ୍ଗିଯିବ ବେଳ ଅବଶ୍ୟ ଦେଖିବୁ ସବୁରେ । ଝାଡ଼ି କରିବେ ଯେତ୍କ । ଝିକାଳରେ ଧାଧ ହେବ ମଞ୍ଜା । ୨୨ । ଠାକୁ-ରଙ୍କ ଆଗେ ଠିଆ ହୋଇ ଏବେ ପାଦ ପଡ୍ଡେ ଜଣାଉଛୁ । ଠଉର ନୋଡ୍କ ସେ ବେଶ୍ଯ ଜଣାଉଛୁ ଦେବକୂଠ ପଡ଼ିଅଛୁ ଯେ । ଠାକୁର ଅନ୍ତର୍ଯ୍ୟାମୀ । ଠକେ ଦସ୍ଯାକର ଗୁରୁସ୍ୱାମୀ ।୨୩। ଠିଆ ହୋଇ ଗୁରୁ ଠାରି କହୁଛନ୍ତି ଠିକେ ଶୁଣରେ କୁମର । ଠୂଲ ଶୂନ୍ୟ ପରେ ରହି ଅନାମରେ ଆସନ କରୁଛୁ ମୋର ରେ । ଠିକେ ବାଞ୍ଛିତ ଖଣ୍ଡେ । ଠକ ରହ ଆଉ ହନ କେତେ । ୨୪ ।

(ଡ) ଡରେ ଘନ ଘନ କମ୍ପେ ପିଣ୍ଡ ପ୍ରାଣ ଡାକ କହୁଛୁ ନଉଳେ । ଡାହାଣି ପିଶୁସି ଭୂତ ପ୍ରେତ ଆସି ଡରାଉ ଅଛନ୍ତି ମୋତେ ହେ । ଡର ଛେଦ ହେ ଗୁରୁ । ଡଙ୍ଗରକୁ ଗାରମା ଯେ ଧରୁ । ୨୫ । ଡାକ କହୁଛନ୍ତି ନିଷ୍କାମ ଭକ୍ତଙ୍କୁ ଯେତେ ଅଛ ମୋତେ ହବ । ଡରଭୟ ଦୂର କର ରହିଥାଅ ତୋର କଉଧୂମ ଦେଖାରେ । ଡାକ ଦେଉଛୁ କହି । ଡଙ୍ଗରକୁ ନ ରଖିବ ମଞ୍ଜା । ୨୬ । ଢୋକୁଛନ୍ତି ସବେ କାଳ-କୂଟ ବିଷ ଅମୃତ ରସକୁ ଛାଡ଼ି । ଢଳି ପଡ଼ୁଛନ୍ତି ଧାଡ଼ି ଧାଡ଼ି ହୋଇ ମେଦନୀ ଉପରେ ମାଡ଼ି ହେ । ଢଙ୍ଗଢଙ୍ଗରେ ମାଣ୍ଡି ଭମପଟଣା ହାସ୍ୟ କରୁଛନ୍ତି । ୨୭ । ଢୋକୁଛନ୍ତି ସବେ କାଳଆ ଗରଳ ଏଥକୁ ଯିବରେ କାହିଁ । ଢଳିବେ ସମସ୍ତେ କାଳଚକ୍ର ବାଟେ ବଞ୍ଚିବାକୁ ଆଶା ନାହିଁ-ରେ । ଢଳ ଚଢ଼ିବେ ସବେ । ଭମପଣିଆ ଜଣେ ନ ଥିବେ । ୨୮ ।

ଅନାଥ ପରାଏ ଅନୁସରି ଅଛୁ ଅସୁରଙ୍କ ଧାପ ଦେଖି । ଆସି କହୁଛନ୍ତି ଆମ୍ଭର କଣ୍ଟକ ଡରେ ବୁଝ ବେଳ ଆଗି ଯେ । ଅଙ୍କ ପ୍ରାପ୍ତ ବସିଛୁ । ନାମ ବ୍ରହ୍ମକୁ ଆଶ୍ରେ କରିଛୁ । ୨୯ । ଅଣାକାର ଧୂନ ଯେଉଁ ଧନ ଅଣି ସ୍ଥାପି ଦେଲୁ ମର୍ତ୍ତ୍ୟ ପୁରେ । ଅସୁର ମେଲଛ ନବାରିବା ପାଇଁ ସ୍ୱୟଂ ବାଜେ ରହ ଚଳେରେ । ଅଠ ପହୁ ଭକତ । ରଖି ନାଶିବ

Digitized by srujanika@gmail.com

ଦୁଷ୍ଟ ସମସ୍ତ ରେ ।୩୦। ତ୍ରୈଲୋକ୍ୟ ନାଥଙ୍କ ପାଦପଦ୍ମ ବିନା କିଛି ନ ରୁଚଇ ମୋତେ । ଚରଣ ଧରୁଛି ପାଦେ ଜଣାଉଛି ଶାନ୍ତିକର ଦୟା ଚିତ୍ତେ ଯେ । ତତ୍ତ୍ୱ ସନ୍ଦେଶ କହ । ତୁମ୍ଭ ପାଦ ତଳେ ନେଇ ଥୁଅ ॥ ଚରାଚର ମୂଢ ସନ୍ଧି ରହିଥାଅ ତେଜ ଅଛୁ ଦିନା କେତେ । ତିନ ବ୍ରହ୍ମାଣ୍ଡକୁ ଲେଉଟାଇ ଦୟନ୍ତ ମିନ୍ତ୍ର ମଧ୍ୟରେ ଅଭିଳ୍ପ ନର । ତିଳ ପ୍ରାଣପ୍ରିୟ ମୋତେ । ତାହା ସନ୍ଧିଟି ଭକ୍ତ ନମସ୍କାରେ ।୩୨। ଥରଥର ହୋଇ ଥରୁଛି ଜୀବନ ଆତ୍ମାକୁ ଠାକି ରହିଛି । ଥଳକୂଳ ବୋଲି ନ ଜାଣିଲି କିଛି ଅଥଳେ ଭାସି ଯାଉଛି ଯେ । ଥୋକାଏ ରଖ ପାଦେ । ଥୟ ନ ଲାଗୁଛି ଅପ୍ରମାଦେ ॥ ଥାଅରେ ଭକତେ ସମ୍ଭାଳି ଜଗତେ ଦୁଃଖ ଦୂରିତ ଖଣ୍ଡିବ । ଧୋଇବ ସଭିଙ୍କୁ ଏକାମ୍ବର ବନେ ବାନା ଘୋଡ଼ାଇ ରଖିବ ରେ । ଥୟ କରିବ ପୃଥ୍ୱୀ । ଥିବ ସମସ୍ତେ ମୋ ପଛ କତି ॥ ଦୁଷ୍ଟଦଳନ ବାନାକୁ ବହିକରି ବୁଝିନ୍ତୁ ତୁମ୍ଭର ଦାସ । ଦାତା ଦେବା ଅନ୍ନ ଭୁଞ୍ଜିଲି ବେଳକୁ ବଅନ୍ତ ଧୂଳି ପାଉଁଶ ଯେ । ଦୁଷ୍ଟ ଦାନବ ଆସି । ଦୟନ୍ତ ଘଉଡ଼ି ଦୁର୍ଭାଷା ଭାଷି ଯେ ।୩୫। ଦେଖିଅଛୁ ଆମ୍ଭେ ଶୂନ୍ୟ ମାର୍ଗେ ରହି ଯେ ଯାହା ଅଛନ୍ତି କହି । ଦୁଷ୍ଟ ଦାନବଙ୍କୁ ନ ରଖିବ ମଞ୍ଚେ ମେଳଛ ନାଶୁକ ଯେଉଁରେ । ଦୃଢ଼ ପ୍ରତିଜ୍ଞା ମୋର । ଦୟାଧର୍ମ କରିବ ପ୍ରଚାରରେ ।୩୬। ଧରିନେଇ କୋହ୍ୱି ଧରମ ଦାଣ୍ଡରୁ ବନ୍ଧରେ ଦୟନ୍ତ ପକାଇ । ଧର୍ମକୁ ନ ମାନି ଧାମ ଭାଙ୍ଗୁଛନ୍ତି କୁକଥା ବଚନ କହି ଯେ । ଧର୍ମବନ୍ତ କରତା । ଧର୍ମ ବୁଝି ଶୂନ୍ୟ ବ୍ରହ୍ମ ବେତ୍ତା ଯେ ।୩୭। ଧର୍ମରେ ଏ ମହୀ ରଖିବାର ପାଇଁ ଆସିଅଛୁ ଆମ୍ଭେ ଧାଇଁ । ଧର୍ମ ନ ଗୁଳିଣ ଧାମ ଯେ ଭାଙ୍ଗିବ ଭର୍ତ୍ସନା ବଚନ କହିବରେ । ଧର୍ମ ଯେତୁ ନନ୍ଦିବେ । ଧୂଳିପ୍ରାୟେ ଚୂର୍ଣ୍ଣ ହୋଇ ଯିବେରେ ॥ ନିଦ୍ରା ନ ମାଡ଼ଇ ଅନ୍ନ ନ ରୁଚଇ ଦେଖି ଭକତଙ୍କ ଦୁଃଖ । ନିଜ ଗୁରୁ ହୋଇ ତୁମ୍ଭେ ନ ରଖିଲେ ବୁଡ଼ିବ ତୁମ୍ଭର ହିକ ଯେ । ନିଜ ମହିମା ମେରୁ । ନେଇ ଭକ୍ତଙ୍କୁ ରଖ ହସ୍ତରୁ । ୩୯ । ନିଜ ଗୁରୁ

Digitized by srujanika@gmail.com

ଆମ୍ଭେ ଡାକ କହୁଅଛୁ ଶୁଣରେ କୁମର ମଣି । ନୋହିଲେ ଯିବ ଏ ନିପୁର ସଂସାର କାଳଚକ୍ରେ ହେବ ହାଣିରେ । ନାହିଁ ନୋହିବ ବାସ । ନଷ୍ଟେ ହୋଇବ ପୃଥ୍ୱୀ ଉଶ୍ୱାସ ।୪୦। ପ୍ରଭୁ ପଣେ ପୁର ରହିଛ ଆପଣ ପରମ ଭୂମ୍ୱର ବାସ । ପରପର ନୂହ ପୁର ରହିଥାଅ ଆଉ ମୁଁ କହିବ କସ ଯେ । ପୂର୍ଣ୍ଣାନନ୍ଦ ମହିମା । ପ୍ରଭୁ ସଖାଙ୍କୁ ଏକା ଉପମା ॥ ପ୍ରତ୍ୟେ କର ମୋର ପାଦପଦ୍ମ ଧ୍ୟାଇ ଅନୁସରି ରହିଥାଅ । ପ୍ରଳୟ ପ୍ରକୃତି ବାଧା ନ ଲଗିବ ପରାପର ସମସ୍କନ୍ଧେ ରେ । ପାଶୋରି ନାହିଁ ଚିତ୍ତ । ପ୍ରତେ କହିଦେବ ପୂର୍ବ ହେଉଛୁରେ ॥ ଫେଡ଼ି କହ ପ୍ରଭୁ କେତେ ଦିବସରେ ଆସିବ ଏ ଧରଣୀକି । ସ୍ମରୁଣା ହୋଇବୁ କର୍ଣ୍ଣ ମୂଳେ ଶୁଣି ନୟନ ଗୋଚର ଦେଖି ଯେ । ଫେଡ଼ି ଦିଅ ସଂଶୟ । ଏଁଠୁ ମନୁ ଭ୍ରାନ୍ତି କହିଦିଅ । ୪୪ । ଫେଡ଼ି ଶୂନ୍ୟବାସୀ କହନ୍ତି ଆଗ୍ୟାସୀ ଅବତାର ଆମ୍ଭେ ନୋହୁ । ଫେରୁଥାଉ ଏହିପରି ଗ୍ରହ ଯୁଗେ ବୁଦ୍ଧ ଶରୀରଟି ବହୁରେ । ଫେରୁ ଏ ବମୂନ୍ଦସ୍ତ । ଫେଡ଼ି କହି ଦେଉଛି ବସ୍ତ୍ରାଦି ।୪୫। ବାଛି ପ୍ରାପ୍ତ ହୋଇ ଜଣାଣ କରୁଛି କୋପ ନ କରିବ ଚିତ୍ତେ । ବାରମ୍ବାର ପାଦଗତେ ଜଣାଉଛି ଦାହିକର ପ୍ରଭୁ ମୋତେ ଯେ । ବ୍ରହ୍ମ ଗୁରୁ ଅନାଦି । ବ୍ରହ୍ମାଣ୍ଡ ରଖ ପ୍ରଭୁ ସମାଧି । ୪୬ । ବୁଦ୍ଧ ରୂପ ଧରି ଇଚ୍ଛାରେ ବିହରି ଏ ବ୍ରହ୍ମାଣ୍ଡେ ବୁଲୁଥାଏ । ବୃକ୍ଷର ବକଳ ପିନ୍ଧାଇ ଭକ୍ତଙ୍କୁ ଭାବରେ ଦର୍ଶନ ଦିଏରେ । ଦହି ବୁଦ୍ଧ ଶରୀର । ବ୍ୟସ୍ତ ଆସ୍ତ ନାହିଁ ନା ମୋହର ॥ ଭୟ ନିବାରଣ ଭକତ ତାରଣ ଅଖିଳ କରତା ଗୁରୁ । ଭାବ ଭକ୍ତ କଥା କେମନ୍ତ ବାରତା ଆଜ୍ଞା ହେଉ ଶ୍ରୀମୁଖରୁ ଯେ । ଭାବେ କହ ଗୋସାଇଁ । ଭକ୍ତ କେମନ୍ତ ଲୋକଙ୍କୁ କହି ଯେ । ୪୭ । ଭକତ ଲକ୍ଷଣ ଅଟଇ ନିର୍ଗୁଣ କାହାକୁ ଅନ୍ତର ନାହିଁ । ଭାଇ ବନ୍ଧୁ ଯାଏ ସମାନରେ ସ୍ୱାମୀ ଏକ ଆତ୍ମା ମଣୁଥାଇ ରେ । ଭଜୁଥାଇ ମୋ ନାମ । ଭାବେ ମୋ ପାଦେ ପଶି ଶରଣ ରେ । ୪୮ ।

Digitized by srujanika@gmail.com

(ମ) ମହା ମହିମା ମେଦିନୀ କେଉଁ ରୂପେ କଲ ହେ ପ୍ରଭୁ ଭିଆଣ । ମହା ସଂଶୟ ଲଗିଲା ଗୁରୁ ମୋତେ ବୁଝାଇ କହ ଆପଣ ହେ । ମହାପୁରୁଷ ହୋଇ । ମାୟା ଜାଲ କଲ କାହିଁପାଇଁ ହେ ।୪୯। ମହାଶୂନ୍ୟ ଶିଖେ ରହିଅଛ ଏକା ନିଶ୍ୱାସ ମରୁତ ହେଲା । ସେଥିରୁ ନେତ୍ରରକ୍ତ ମଣିଲୁ ମେଦିନୀ ମନୁ ବ୍ରହ୍ମା ବୋଲାଇଲେରେ । ମନୁ ଜଗତ ହେଲା । ମାୟା ଆଦିଶକ୍ତି ବୋଲାଇଲେରେ । ୫୦ । ଜଣାଣ କରୁଛି ଚରଣ ଧରୁଛି ପଡ଼ିଅଛି ପାଦ ତଳେ । ଜଗତରେ ପ୍ରଭୁ କେମନ୍ତ ପ୍ରକାରେ ସତ୍ୟଧର୍ମକୁ ସ୍ଥାପିଲ ହେ । ଜାଣି ନଥିଲେ କେହି । ଜଗତକୁ ମାୟା ଥିଲା ମୋହିରେ । ୫୧ । ସେଦିନୁ କଳି ଦଶସହସ୍ର ବର୍ଷ ଭୋଗ ହୋଇଗଲା ପୂର୍ଣ୍ଣ । ଜଗନ୍ନାଥ କ୍ଷେତ୍ରେ ପ୍ରବେଶ ହୋଇଲୁ ବୃଦ୍ଧ ଶରୀର ବ୍ରାହ୍ମଣ ମେ । ଜଗନ୍ନାଥ ଜାଣିଲା । ଜାଣି ମୋ ଚରଣେ ସେବା କଲେରେ ।୫୨। ରଚିଲ ବ୍ରହ୍ମାଣ୍ଡ ପୃଥ୍ୱୀ ନବଖଣ୍ଡ କେଉଁଠାରୁ କଲ କସ । ରହିଥିଲ କେଉଁଠାରେ ମଠ କରି କାହିଁରେ ତୁମ୍ଭ ପ୍ରବେଶ ହେ । ଋଷି କାହିଁ ହୋଇଲେ । ରହି କେଉଁ ଠାବେ ସେବା କଲେ ହେ । ୫୩ । ରହି ନାହିଁ କାହିଁ କପିଳାସେ ପାଇଁ ଗୋବିନ୍ଦ ଦାସ ଭେଟିଲା । ରହି କଷ୍ଟ ଆୟୁ ଅଳଙ୍କାର ତେଜ ଶୂନ୍ୟ ଘରୁ ବାନା ନେଲେରେ । ଋଷି ଭକ୍ତେ ହୋଇଲେ । ରହି ଆଜ୍ଞା ସେବାରେ ଖଟିଲେରେ । ୫୪ । ଲେଉ ଶୂନ୍ୟପଦ କରିଛି ସମ୍ବାଦ ଅବନା ମନ୍ଦିରେ ଭେଦ । ଲୟୁବାରେ ପ୍ରଭୁ ଯାହା କରିଦେଲେ ତାହା ମୁଁ କଲି ସମ୍ବାଦ ହେ । ଲେଖି ନୁହେଁ ମହିମା । ଲୟେ ନ ଜାଣିଲେ ଦେବ ବ୍ରହ୍ମା । ୫୫ । ଲୟ କରି ଦେଖ ମହାଶୂନ୍ୟ ଶିଖ ଉପରେ ରହିଛି ଏକା । ହୋଇବ କାରଣ ଅନୁମାନେ ଚନ୍ଦ୍ର ମିଟିବ ସକଳ ଦକାରେ । ଲମ୍ବ ସ୍ଥୂଳ ମୋ ନାହିଁ । ଲଗି ଦେଖ ଅଳଗାରେ ଥାଇ । ୫୬ । ବଡ଼ ହୋଇ ପ୍ରଭୁ ତୁମଠାରୁ ଅଜ ଏ ବ୍ରହ୍ମାଣ୍ଡେ କେହି ନାହିଁ । ବିନତି କରଣ ପାଦେ ଜଣାଉଛି ବ୍ରହ୍ମଙ୍କମା

Digitized by srujanika@gmail.com

କେ ବୋଲଇ ଯେ । ବଚନ ବୁଦ୍ଧ ସାର । ବ୍ରହ୍ମଜ୍ଞାନୀଙ୍କ କେଉଁ ବସ୍ତର । ୫୭ । ବୋଲନ୍ତ ଅଲେଖ ମନେକର ଏକ ବ୍ରହ୍ମଜ୍ଞାନୀ ଯେ ବୋଲଇ । ବାଛନ୍ଦ ବସ୍ତର ସବୁ ସମାପ୍ତର ଯେଉଁ ଭିକ୍ଷା ଦେଲେ ଖାଇ ରେ । ବାରଣ ନାହିଁ ତାର । ବିଶ୍ରାମ କରେ ଗ୍ରାମ ବାହାର ।୫୮। ଶ୍ରୀ ସ୍ୱାମୀ ହେ ବ୍ରହ୍ମ ସବୁଠାରେ ସମ ଏ ଘଟେ ଅଛନ୍ତି ରହି । ସ୍ୱୟଂ ବ୍ରହ୍ମ ହୋଇଅଛ ତୁମ୍ଭେ ମହୀ ଜେଉଁ ଦୃଷ୍ଟିରେ ନ ରହିଁ ଯେ । ସର୍ଜି କର୍ମା ବ୍ରହ୍ମାଣ୍ଡ । ଶାନ୍ତ ନ କରୁଛ ଦେଇ ମଣ୍ଡ ।୫୯। ଶ୍ରୀ ଅଲେଖ କହେ ଶୁଣରେ ତନପ୍ତେ ପଚାରିଲୁ ମୋତେ ଯାହା । ଶହେ ଶୂନ୍ୟ ତାର ଚନ୍ଦ୍ର କରଣ ଯେ ଏ ଅଟେ ମୋହର ଗୁପ୍ତାରେ । ଶୂନ୍ୟ ପବନ ପର । ମେଘ ନତ୍ୟରୁ ସକଳ ସଞ୍ଚର । ୬୦ । ସେହି ନତ୍ୟ-ପୁରେ କାଳ କାମ ନାହିଁ କାହୁଁ ହୋଇଲେ ଜନମ । ସ୍ୱାମୀ ମୋତେ କହ ସଂଶୟ ମିଟାଅ ସେ ସନ୍ଧ ଭେଦ ମରମ ହେ । ସେହି କାଳ କାମିନୀ । ସୁଜ୍ଞାନଙ୍କୁ ନ ପାରଇ ଜିଣିରେ । ୬୧ । ଶ୍ରୀ ଅଲେଖ କହେ ବଟମୂଳ ଠାଏ କାମାକ୍ଷୀ ଜଗତ୍ତୁ ହାର । ସେ ଦେଖା ଯାହାକୁ ଘଟେ ଗୁରୁଦେବ ସେ ଯୋଗୀ ସିଦ୍ଧ ଅମରରେ । ଶ୍ରୀକ୍ଷେତ୍ରଙ୍କ ପ୍ରମାଣ । ସତ୍ୟ ଶାନ୍ତ ଦୟା ଧର୍ମ ପୂର୍ଣ୍ଣ । ୬୨ । ଶରଣ ପଶୁଛି ଚରଣ ଧରୁଛି ପଡ଼ିଅଛି ପାଦ ତଳେ । ସ୍ୱୟଂ ବ୍ରହ୍ମ ହୋଇ କାଳ କାମ ଦୁଇ ଜାତ କଲ କ ନିମନ୍ତେ ଯେ । ସେତ କାଳ କଳ୍ପନା । ଶିବ ବ୍ରହ୍ମାଙ୍କୁ କଲଇ ବଣା ॥ ସଦଗୁରୁ ଆମ୍ଭେ ନିଗମରେ ଅଛୁ ଶୂନ୍ୟେ ଲଗାଇଛୁ ଲୀଳା । ସାତ ବଖରିଲୁ ବତିଶ ପାବଛି ସ୍ୱର ହଗ ହଶେ ମେଳରେ ସତ ଅଷ୍ଟ ଉତ୍ତର । ସେହି ମହାନତ୍ୟର ଭିତର । ୬୪ । ହରତା ହେଉଛି ଅନାଦ ପୁରୁଷ ହତ୍ୟା ଲଗିବ ତୁମ୍ଭଙ୍କୁ । ହର ହର ବ୍ରହ୍ମା ଧରନ୍ତି ଆକାଶ ରହିଛନ୍ତି ଶ୍ରୀ ଆଜ୍ଞାକୁ ଯେ । ପ୍ରାତକାଳ ବୋଷାଇ । ହେଜ କଥାର କହୁଛ ମହୀ । ୬୫ । ହାକ କରୁଅଛି ଶୁଣରେ କୁମର ହୁକୁମ ମୋହର ଗାଢ଼ । ହରହର ବ୍ରହ୍ମା ଭେଟ ନ ପାଇଲେ ହଜ

Digitized by srujanika@gmail.com

ରହିଛୁ ନଗୁଡ଼ରେ । ହର ଲୀଳାକି ମର୍ତ୍ତ୍ୟ । ହଂସ ଧରିଛୁ ଦେହ ମଲ୍ଲରେ । ୬୬ । କ୍ଷମା ଦୟାସିନ୍ଧୁ ଭକ୍ତ ପ୍ରାଣବନ୍ଧୁ ଶ୍ରୀଚରଣ ତଳେ ଧାଇ । କ୍ଷିତି ପଟରେ ଆସି ବିଜେ କରିଅଛ କ୍ଷମେ ଭଣେ ଖ୍ୟାମ ହୋଇ ଯେ । କ୍ଷମା କର ମୋ ଦୋଷ । କ୍ଷମେ ଜଣାଉଛି ହୀନ ଦାସ । ୬୭ । କ୍ଷୀନ ରୂପ ଧରି ଇଚ୍ଛାରେ ବିହରି ଶୂନ୍ୟେ ଚୋଳାଇବୁ ଗାଦି । ଖେଳ ଲଗିଅଛୁ ଅମନ ମଧ୍ୟରେ ଦୁଷ୍ଟ ଦାନବଙ୍କ ବାଦରେ । ଖଟିଥାଅ ମୋ ପାଶ । ଖଣ୍ଡିଦେବ ଜନ୍ମ ମୃତ୍ୟୁ ଦୋଷ ଯେ ।୬୮।

—୦—

( ୨୧ )

(କ) କଳିଯୁଗେ କରତା ବିଜୟେ ରବ ତଳେ । କାଳରୁ ଉଦ୍ଧାରିବେ ଭଜିଲେ ଏତେବେଳେ । କର ଯୋଡ଼ି କର ସେବା ଭକତ ଅଭୟ ପାଦ ତଳେ ହୋ । ୧ । ଖିରସିନ୍ଧୁ ବେହାର ଖିତିର ମଧ୍ୟ ସତେ । ଖଣ୍ଡିବେ ପାପ ଭାର କଉନ୍ତ ଯେତେ ଯେତେ । ଖେଳ କଉତୁକ ଏ ନମଣ ବସ୍ତୁର ଅନ୍ତର୍ଗତେ ହୋ । ୨ । ଗୁରୁ ବିଜେ କରିଛନ୍ତି ଅନାଦି ଯୋଗେଶ୍ୱର । ଗର୍ବିତା ନାହିଁ ବହ ସୁଜ୍ଞାମୀ ସାଧୁ ନର । ଗୁରୁ ପ୍ରଭୁ ବ୍ରହ୍ମ ମୂରତି ଏବେ ମର୍ତ୍ତ୍ୟରେ ଅବତାର ହୋ । ୩ । ଘରଦ୍ୱାର ତେଜଣ ଭଜିବ ଯେଉଁ ଜନ । ଘଟ ମଧ୍ୟେ ଦେଖାଇ କହିବେ ବ୍ରହ୍ମଜ୍ଞାନ । ଘେନଣ ଭକତ ବୃନ୍ଦ ହୋଇବେ କଳଙ୍କି ରୂପ ଜାଣ ହୋ । ୪ । ଅଲେଖ ନିରଞ୍ଜନ ବୋଲୁଛନ୍ତି ଯାହାକୁ । ଆପେ ସର୍ଜି ଅଛନ୍ତି ଏ ପିଣ୍ଡ ବ୍ରହ୍ମାଣ୍ଡକୁ । ଏବେ କଳି-ଯୁଗ ସେହି ବିଜେ ଏ ନେତ୍ରରେ ଦେଖ ତାଙ୍କୁ ହୋ । ୫ । ଚନ୍ଦ୍ରମା ପର ଏକ ଉଦୟ ହୋଇଛନ୍ତି । ଭୁଞ୍ଜିଲେ ପୂର୍ବଦିଗେ ଫିଟିବ ମନୁ ଭ୍ରାନ୍ତି । ଚଉକତି ବ୍ରହ୍ମ ତେଜ ପଡ଼ୁଛି ଏ ନବଦ୍ୱୀପ ପୃଥ୍ୱୀ ହୋ । ୬ । ଛପନା କୋଟି ଜୀବଙ୍କୁ ତାରିବାର ପାଇଁ । ଛଳେ ବୁଦ୍ଧ ଅବତାର ମହିମା ଗୋସାଇଁ । ଛାଡ଼ିଛନ୍ତି ନିଜ ନାମ ମହିମା

Digitized by srujanika@gmail.com

ଧରମ ଡାକ ଦେଇ ହୋ । ୭ । ଜାଗ୍ରତ ଶବ୍ଦେ ଭକ୍ତ ଜଗତ କରତାଙ୍କୁ । ଯୁଗ ଶେଷ ହେଲାଣି ନେତ୍ରରେ ଦେଖି ଦେଖି । ଜାତି ଯିବ ବୋଲି ନରେ ନ ବୋଲି ସ୍ୱଜନ ଧରମକୁ ହୋ । ୮ । ଝିଟକୁ ଅଛି ହଂସ ଅବନା ମନ୍ଦରରୁ । ଝରୁଛି ମକରନ୍ଦ ଅଭୟେ ଶ୍ରୀପଦ୍ମରୁ । ଝିଲ ଦିଶୁଅଛି ବ୍ରହ୍ମ ସ୍ୱରୂପ ଅନାଦି କଳ୍ପତରୁ ହୋ ।୯। ନିରଞ୍ଜନ ପୁରୁଷ ସେ ଠୁଳ ଶୂନ୍ୟବାସୀ । ନିନ୍ଦା କର ନାହିଁ ବ୍ରହ୍ମରେ ହେବ ଦୋଷି । ନିଶି ଦିବସରେ ନାମ ମହିମା ଭଜନ କର ବସି ହୋ ॥ ଟେକ ଧରି ଅଛନ୍ତି ଏ ପିଣ୍ଡ ବ୍ରହ୍ମାଣ୍ଡକୁ । ଟାଣ ଶୂନ୍ୟ ବାନାରେ ଘୋଡ଼ାଇ ସମସ୍ତଙ୍କୁ । ଟାକି ଥିବ ଯେଉଁ ଟିଅ ପର୍ଯ୍ୟନ୍ତେ ଦେଖିବ ମହିମାକୁ ହୋ । ୧୦ । ଠାକୁର ଆସି ଅଛନ୍ତି ନବଖଣ୍ଡ ମଧ୍ୟ । ଠାବ ନ ମିଳୁଅଛି ଠିଆ ଅଛନ୍ତି ହୋଇ । ଠିକେ କହେ ଶ୍ରୀମସେନ ଅର୍ଖିତ ଦର୍ଶନ କର ଯାଇଁ ହୋ । ୧୨ ।

(ଡ) ଡାକ ଦେଉଛନ୍ତି ଶରଣ ପଶ ଆସି । ଡଗର ଦୁଷ୍ଟ ସନ୍ତ ଯେ ଅଛ ମୁନିଋଷି । ଦଣ୍ଡ ପଡ଼ୁଅଛି କଳି ଯୁଗର ପାପରେ ଯିବ ଭାସି ହୋ ।୧୩। ଢାଙ୍କି ପକାଉଅଛ ଏ ପିଣ୍ଡ ବ୍ରହ୍ମାଣ୍ଡକୁ । ଢାଳି ଶୂନ୍ୟ ବାନାରେ ଘୋଡ଼ାଇ ସମସ୍ତଙ୍କୁ । ଢାଉ ରଙ୍ଗେପଡ଼ି ନାଶ ନକର ଦୁର୍ଲଭ ଜନମକୁ ହୋ । । ୧୪ । ଅଣାକାର ସ୍ୱରୂପୀ ଅନାଦି ଶୂନ୍ୟରୂପୀ । ଅନାଇଲେ ସର୍ବେ ରହିଅଛନ୍ତି ବ୍ୟାପୀ । ଆଶ୍ରୟ କର ହେ ସେହି ପାଦକୁ ଏ ପିଣ୍ଡ ପ୍ରାଣ ବିକ ହୋ । ୧୫ । ତତ୍ତ୍ୱ କରି ଧଇଲେ ବସ୍ତୁର ହୃଦୟରୁ । ତରିଯିବ ସମସ୍ତେ ଏ ଘୋର ନରକରୁ । ସ୍ତ୍ରୀ ଶିଶୁ ବାଳି ଯୁବା ବୃଦ୍ଧା ସମସ୍ତ ଉଦ୍ଧାର ନେବେ ଗୁରୁ ହୋ ॥ ଥାଉଁ ଥାଉଁ ଏ ଘଟରେ ହେଉ ଚେତା ବୁଦ୍ଧି । ଥୟକର ମନକୁ ଲଭିବ ସର୍ବସିଦ୍ଧି । ସ୍ଥିତି ନ ମିଳିବ ନିଷ୍ଟେ ପଛକୁ ଧୋଟିଲେ ଭବ ନଦୀ ହୋ ॥ ଦାସ ଦାସୀ ହୋଇଣ ଚରଣେ ସର୍ବେ ଖଟ । ଦିବା ନିଶି ଭଜିଲେ ଫିଟିବ ଦୁଃଖ କଷ୍ଟ । ଦୟା ହୋଇବ ଯେବେ ଶ୍ରୀମୁଖରୁ ପାଇବ ନିଷ୍ଟେ

Digitized by srujanika@gmail.com

ଭେଟ ହୋ । ୧୮ । ଧର୍ମବନ୍ତ ପୁରୁଷ ସେ ମହାଶୂନ୍ୟ ଦେହୀ । ଧରଣୀ ମଣ୍ଡଳରେ ମାନବ ରୂପ ହୋଇ । ଧର ଧର ସର୍ବେ ଏବେ ସେହୁ ପାଦକୁ ମୁକତି ଦେବେ ସେହୁ ହୋ । ।୧୯। ନବଖଣ୍ଡ ମେଦ୍ଧ–ମାଟରେ ମହିମା ଶବଦ । ନାମବ୍ରହ୍ମ ପଦକୁ ହୃଦରେ କର ଭେଦ । ନଣି ଅବସରେ ଯେଉଁ ଯେଉଁ ଭଜିବ, ହୋଇବ ଅଙ୍ଗ ସିଦ୍ଧ୍ୟ ହୋ । ୧୦ । ପୂର୍ଣ୍ଣାନନ୍ଦ ପୁରୁଷ ପରମ ଗୁରୁଦେବ । ପୂର୍ବ ହେତୁ ସୁମର ଚରଣେ କର ଭାବ । ପାତକକୁ ନାଶି ସେହୁ ତାରିବେ, ଛପନକୋଟି ଜୀବ ହୋ ।୨୧। ଫୁଙ୍କାବନ୍ଧ ପରେ ଫଣି ମଣିର ଉପରେ । ଫୁଟିଅଛୁ ଜ୍ଞାନବ୍ରହ୍ମ ବଜସ୍ତୁ ସେ ଠାବରେ । ଫୁଲ କେଶର ଉପରେ ଶସ୍ତ୍ରକ ଅବନା ମନ୍ଦରରେ ହୋ ।୨୨। ବେଦମାନେ ପାବଛ ହୋଇଣ ଛନ୍ତି ଯହିଁ । ବୈକୁଣ୍ଠପୁର ଭୁବନ ତାହାକୁଟି କହି । କାରଣ ନ ଯାଇ ଅବା ରଜନୀ ଏମନ୍ତ ପୁର ସେହୁ ହୋ ॥ ଭରସି ହେଲ ପଶ ନ ଉର ଅନ୍ଧାରକୁ । ଭଯ୍ମ ଭ୍ରାନ୍ତ ତ୍ୟାଗକରି ବଳାଅ ମନକୁ । ଖ୍ରମ ଅରକ୍ଷିତ ଡାକ କହୁଛୁ ବୁଝାଇ ସମସ୍ତଙ୍କୁ ହୋ । ୨୪ ।

(ମ) ମନୁଷ୍ୟ ଜନ୍ମ ହୋଇ ଶ୍ରୀଗୁରୁ ସେବା କାର । ମାୟା ମୋହକୁ ତେଜି ନାମ ବ୍ରହ୍ମକୁ ଆଶ୍ରେ କର । ମୃତ୍ୟୁଦେବ ଗ୍ରୁର କସ କରିବ ହୋଇବ ଅଜାମର ହୋ । ୨୫ । ଜାଇବା ପଥ ଧର ତରିବ ଭବ ବାର । ଜଳେ ବୁଡ଼ ମର ନାହିଁ ପଥର ବାନ୍ଧିକରି । ଜୀବ ଥାଉଁ ଥାଉଁ ଏହୁ ପିଣ୍ଡରେ ନାମରେ ହୁଅ ପାରି ହୋ ।୨୬। ରଙ୍ଗ ପସ–ରାରେ ଭୁଲ ନ ମର ସୁଜ୍ଞଜନ । ନାମ ବ୍ରହ୍ମ ପଦକ ହୃଦରେ କର ଧ୍ୟାନ । ରଖ ରଖ ସର୍ବେ ଧର୍ମ କାରଣ ସଂସାରରେ ଯଶ ଗୁଣ ହୋ ॥ ଲକ୍ଷେ ଯୁଗ ଗନ୍ଧିଣୀ ବାହାର ଏହୁପରି । ଲୋଭ ମୋହ ନଛାଡ଼ ଅନେକ ଗଲେ ମରି । ଲାଗି କର ନିତି ସେବା ଭକତି ଅଭୟ ପାଦ ଧରି ହୋ ।୨୮। ବ୍ରହ୍ମ ବୋଲିବାର କଥା ସମସ୍ତେ ବୋଲୁଛନ୍ତି । ବହୁମା ପଣରେ କେହୁ ଭେଟ ନ ପାଅନ୍ତି । ବହୁ ଗୁରୁ ଆଜ୍ଞା ଶିର ଉପରେ

Digitized by srujanika@gmail.com

ନାମରେ ହୁଅ ପ୍ରିତ ହୋ । ୨୯ । ସ୍ୱର୍ଗପୁରେ ବସିବ ଅମୃତ ଭୋଗ ଭୁଞ୍ଜି । ଶିରୋମଣି ଠାକୁର ସକଳ ଦେବେ ଖଞ୍ଜି । ଶିର ପାଦତଳେ ନେଇ ଲଗାଅ ବେଦର ସାର ଭୁକ୍ତି ହୋ । ୩୦ । ଶୂନ୍ୟର ପୁରୁଷ ଆସି ଅଛନ୍ତି ମର୍ତ୍ତ୍ୟକୁ । ସକଳ ଗୁଢ଼ ଭେଦ ମହିମା ଅଲେଖଙ୍କୁ । ସତ୍ୟ ରୂପିକର ବିଶ୍ୱାସ ଜନ୍ମାଇ ମରଣକୁ ହୋ ।୩୧ । ମୂଳ ସତ୍ୟ ଧର୍ମକୁ ପ୍ରଦାନ କଲେ ବଳେ । ସମର୍ପି ଦିଅ ନେଇ ଶ୍ରୀ ଗୁରୁ ପାଦ ତଳେ । ସତେ ପୁରୁଷକୁ ଆପେ ତାରିବ ପୂର୍ବର ଭାଗ୍ୟ ଥିଲେ ହୋ । ୩୨ । ହରି ଧ୍ୱନି ଶବଦ ହୃଦରେ କର ଭାବ । ହୋଇଅଛି ଜନମ ଛପନ କୋଟି ଜୀବ । ହଜାଅ ନାହିଁ ସେ ନିଜ ନାମକୁ ମଣିଷ୍ଟାନ୍ତେ ବଣା ହେବ ହୋ । ୩୩ । ଷିଶ୍ରୁ ବୁଦ୍ଧ ଅବତାରେ ସତ୍ୟ ଧର୍ମ ସ୍ଥାପି । ଖେଳ ଭିଆଇବେ ସେ ଅନାଦି ଶୂନ୍ୟ ରୂପୀ । ଷମେ ଭଣେ ସ୍ୱାମୀସେନ ଅର୍ପିତ ଏ ପିଣ୍ଡ ପ୍ରାଣ ବିକ ହୋ । ୩୪ ।

—o—

( ୨୨ )

(ହୋ) ଖୋଲ ମୋଲ ନୁହନ୍ତି ସଦା ବ୍ରହ୍ମମୂର୍ତ୍ତି, ଖଡ଼ଗେ ନ ଛୁଡ଼ନ୍ତି, ଅଗ୍ନିରେ ନ ପୋଡ଼ନ୍ତି, କ୍ଷୟ ବୃଦ୍ଧି ନାହିଁ ହୋ-ବ୍ରହ୍ମର ନ ଗୁଢ଼ ବାଢ଼ବୃତ୍ତି ହୋ । ୧ । ହରିହର ବ୍ରହ୍ମା ଯେ ଅଙ୍ଗରୁ ଅବତାର, ହେଭୁକର ମନରେ ସୁଜ୍ଞାନ ସାଧନର, ହୋଇଛନ୍ତି ତିନି ବ୍ରହ୍ମାଣ୍ଡେ ପାଳଣ ଅଧିକାର ହୋ । ୨ । ଶାକଣ୍ଠ ଉପରେ ଅଲେଖ ପ୍ରଭୁ ଥାଇ, ସମ୍ଭାଳ ବ୍ରହ୍ମାଣ୍ଡକୁ ଅଛନ୍ତି ଆଜ୍ଞାଦେଇ, ଶତ ଶାନ୍ତି ଦୟା କ୍ଷମାକୁ, ଅଙ୍ଗରେ ଛନ୍ତି ବନ୍ଧି ହୋ । ୩ । ଶେଷ ନୁହେଁ ଅଶେଷ ତାହାଙ୍କୁ ଗୁଣ ସୀମା, ଶେଷକରି ନ ପାରିଲେ ହରିହର ବ୍ରହ୍ମା ସ୍ୱୟଂ ଅଜ୍ଞାତ ଯେ ଅଟନ୍ତି, ସେଠାରୁ କ୍ଷରୁଛି କଲ୍ୟାଣ ହୋ । ୪ । ସୁରନର ଗନ୍ଧର୍ବ ରାକ୍ଷସ ନାଗଗଣ, ସର୍ଜନା କରିଛନ୍ତି ଅନାଦି ନାରାୟଣ ଶରଣ ପଶ ଯାଇ ଛାମୁରେ, କରିବେ ନିର୍ବାଣ ହୋ ॥ ବନଗିରି

Digitized by srujanika@gmail.com

କନ୍ଦର ମନ୍ଦର ମେରୁ ଦମ୍ଭ, ବେଦରୁ ତୋଳି ନେଇ ସ୍ଥାପିଲେ ଚଉଦଗ, ବଦତ କରାଇଲେ ପୁରାଣେ, ସଂସାରେ ବ୍ରତ ଧର୍ମ ହୋ ।୭। ଲଗିଗଲା ମାୟା ଯେ ଜାଣିଲେ ତାହାଙ୍କୁ, ଲୁଚିଛନ୍ତି ନିଗମରେ କହୁଛନ୍ତି ତୁମ୍ଭଙ୍କୁ, ଲକ୍ଷ କର ଯେତ୍ନ ଭଜନ, ପ୍ରସନ୍ନ ହେବେ ତାଙ୍କୁ ହୋ ॥ ରୂପକୁ ବିଆରିଛନ୍ତି ଅତ୍ୟନ୍ତ ଯତ୍ନ କରି, ରଙ୍ଗିମା କଳା ଗୋରା ଶ୍ୟାମଳ ବର୍ଣ୍ଣ ଧରି, ରଖିଲେ ଯେ ସର୍ବରେ ତାହାଙ୍କୁ ସ୍ଥାପିଲେ ତିନିପୁରୀ ହୋ । ୮ । ଜୀବଜନ୍ତୁ ଚରଙ୍ଗ ସ୍ଥାବର ବୃକ୍ଷଖାନି, ଜନ୍ମ କର୍ମ ଯେଉଁ କରାଇ ନାନା ଯୋନି, ଯୁଗ ଜାଣି ଶୂନ୍ୟପୁରୁଷ, କହିଣ ହେଲେ ଭୁନ ହୋ ॥ ମଣ୍ଡନରେ ରହିଲେ ଅଲେଖ ଗୋସାଇଁ, ମହାତ ପୁରୁଷ ସେ ଅନନ୍ତ ନାମ ବହି, ମାନ କର ସେବା ଚରଣେ, କହଇ ସ୍ୱାମ ଯେଉଁ ହୋ । ୧୦ ।

(ଡ) ଘରେ ଭର ସମର୍ପି ଅନ୍ତର ହେଲେ ପ୍ରଭୁ, ଭାଷା ପରିବନ୍ଧରେ ପୂରଣ କଲେ ସବୁ, ଭାବ କଉତୁକ ଜନ୍ମାଇ, ପ୍ରକୃତି ପ୍ରେମ ଯୋଗୁ ହୋ ॥ ବେଦର ଉଚରୁ ଭିଆଇ ବ୍ରହ୍ମାଣ୍ଡକୁ, ବୀଜ ରଜ ମିଶାଇ ସଞ୍ଚନ କଲେ ତାଙ୍କୁ, ବସି ତିନିଜଣ ବରାର, ରଚିଲେ ସଂସାରକୁ ହୋ ।୧୨। ସୃଷ୍ଟିଲେ ଲତା ପ୍ରାୟେ ଛପନ କୋଟି ଜୀବ, ଫଳ ପ୍ରାୟେ ବଣିଲେ ଶରୀର ବନ୍ଧ ସବ, ଫନ୍ଦା ବୁଦ୍ଧିମାନ ଭିଆଇ, ବାଣ୍ଡିବେ କର୍ମ ଯୋଗ ହୋ ।୧୩। ପାପପୁଣ୍ୟ ଦୁହିଁକୁ ଶକ୍ତିରୁ ଜାତ କଲେ, ପୂର୍ବେ ଶୂନ୍ୟ ହୋଇଣ ଏକାକ ଖେଳୁ ଥିଲେ, ପୃଥ୍ୱୀ ହେଲା ଯେତେବେଳେ ବନରୁ, ବ୍ୟାପିଲେ ଚରାଚରେ ହୋ ॥ ନିରାକାର ସ୍ୱରୂପେ ଶୂନ୍ୟରେ ହୁଏ ଠୁଳ । ନୁହନ୍ତି ଗୋଳିଆ ସେ ସର୍ବଦା ନିର୍ମଳ, ନଦୀ ପ୍ରାୟେ ବହୁଯାଉଛି, କରୁଣାସିନ୍ଧୁ ଜଳ ହୋ । ଧବଳାଙ୍ଗ ଶରୀର ଅରୁଣ ବର୍ଣ୍ଣ କାନ୍ତି, ଧରିଛନ୍ତି ଆଟୋବାର ମୁଣ୍ଡନ ନବଷିତ, ଧାୟୀ ଯେହୁ ପାରିବ ତାହାଙ୍କୁ, ଭୁଟିବ ମନୁ ଭ୍ରାନ୍ତି ହୋ ।୧୬। ଦସ୍ୱାକୁ ପୁରୁଷ ଦର୍ଶନ ହେବା ପାଇଁ, ଦୂରେ ନାହିଁ ଅଛନ୍ତି ପାଶରେ ଉଷ୍ଣ

Digitized by srujanika@gmail.com

ହୋଇ, ଦୁଃଖୀଜନ ଧନ ସଙ୍ଖାଳି, ଭବରେ ବନ୍ଧୁ ସେହୁ ହୋ ॥ ସ୍ଥଳ ମହାନିତ୍ୟବାସୀଙ୍କ ଧର୍ମ ଶୁଣ, ସ୍ଥାବର ଜଙ୍ଗମ କୀଟ ପତଙ୍ଗ ତରୁତୃଣ ସ୍ଥିତି ହୋଇ ସ୍ୱର ଅଛନ୍ତି, ନକରି ଆନ ଭିନ୍ନ ହୋ ॥ ତିନ ତ୍ରୈଲୋ-କ୍ୟର ଅଟନ୍ତି ପିତା ମାତା । ତିଆରିଛନ୍ତି ସେ ଏକକୁ ଆରେକ ଜାତ । ତିନି କାଳାନ୍ତକୁ ରହିଛି, ଏ ରବ ତଳେ କଥା ହୋ ॥ ଅଣାକାର ପୁରୁଷ ନୁହନ୍ତି ନାଦବନ୍ଦ, ନୁହଇ ଅନ୍ତଜାର କରୁଣା ଯାର ସିନ୍ଧୁ । ଅଣ ସାଧନାରେ ପାର କରନ୍ତି, ହିଗୁଣ ଭବ ସିନ୍ଧୁ ହୋ ।୨୦। ଡାକୁଣୀ ଭିତରେ ରହିଅଛନ୍ତି ଅଲେଖ, ତଳ ତଳ ଦିଶୁଅଛି ବଜ୍ର ଝଲକ । ଭ୍ରମ କହୁଅଛି ବୋଲିବ, କସ ମୁଁ ଦେବ ଲକ୍ଷ ହୋ ।୨୧। ଡେଙ୍ଗା ଦରବାରେ ଅଛନ୍ତି ବଜେ କରି, ଡାଳମୂଳେ ରହିଛନ୍ତି ଜୀବର ହିତ କାରି । ତାଙ୍କ କହେ ଭ୍ରମ ଅରକ୍ଷିତ, ଶ୍ରୀଗୁରୁ ପାଦ ଧରି ହୋ ।୨୨।

(୦) ଠକ ନାହିଁ କହୁଛି ସତ୍ୟ ଏ ବଚନ, ଠୁଳ ଶୂନ୍ୟ ମଣ୍ଡଳ ଉପରେ ଛନ୍ତି ଜାଣ । ଠାକୁର ପଣକୁ ସକତା, ସେହିଟି ପରଂବ୍ରହ୍ମ ହୋ । ଟଳ ଯାଆନ୍ତି ନାହିଁ ଅଟଳ ମହାମେରୁ, ଟିକେ ବଞ୍ଚିଅଛ ଯେ ସେ ପ୍ରଭୁ କରୁଣାରୁ । ଟେକପଡ଼ ଡାଳ ଦେଉଅଛନ୍ତି ଅନନ୍ତ ଭଣ୍ଡାରରୁ ହୋ ।୨୪। ନିର୍ଗମେ ରହିଛନ୍ତି ନୁହନ୍ତି ଗମାଗମ ନିଶବ୍ଦ ଭୁବନ ସେ ନ ପଶେ କାଳ ଯମ । ନଦାନ ବୈକୁଣ୍ଠ ଶକତି ତହିଁରେ ଛନ୍ତି ବ୍ରହ୍ମ ହୋ ।୨୫। ଝର ଝର ହୋଇଣ ବହୁଛି ପଞ୍ଚଧାର, ଝିମାଇଁ ଶୋଇଛନ୍ତି ସେ ବ୍ରହ୍ମାଣ୍ଡ ଠାକୁର । ଝଲକୁଛି ସିଂହା-ସନ ତଳରେ, କନକ ରତ୍ନପୁର ହୋ ।୨୬। ଯୋନିଗତେ ଜନମ ନୁହନ୍ତି ସେ ପୁରୁଷ ଜଳ ଅଗ୍ନି ସୂର୍ଯ୍ୟର ନ ବାଧେ ତପସ, ଯାଉଁଳି କବାଟ ଅଛି ଶୂନ୍ୟରେ, ନୁଅନ୍ତି ଅବକାଶ ହୋ ॥ ଛଡ଼ ବେଦ ପରେ ଆସନ ବାନ୍ଧିକରି, ଛପି ରହିଅଛନ୍ତି ଅରୂପାନନ୍ଦ ହରି । ଛଡ଼ ବେଦ ବାମି ଗୁମ୍ଫରେ, ଅଛନ୍ତି ଆଜ୍ଞାକାରୀ ହୋ ।୨୮। ଚଉର ପଣେ ପ୍ରଭୁ ଅଛନ୍ତି ସେ ଉପର, ଚିଦାନନ୍ଦ ପୁରୁଷ ନୁହନ୍ତି ଅବତାର । ଚେତାଉ

Digitized by srujanika@gmail.com

ଛନ୍ତି ପିଣ୍ଡ ବ୍ରହ୍ମାଣ୍ଡ, ନ ଖାଇ କ୍ଷୀର ମାଲ ହୋ । ୨୯ । ଅନ୍ତର୍ଯ୍ୟାମୀ ପଦକୁ ଅଙ୍ଗରେ ଛନ୍ତି ବନ୍ଧି, ଆଣି ଉତ୍ପତ୍ତି ସ୍ଥିତି ପ୍ରଳୟ ଯେ କରଇ । ଓଁକାର ଅର୍ଦ୍ଧମାତ୍ରା ଅକ୍ଷର, ଚକ୍ଷୁଙ୍କ ନ ଗମଇଁ ହୋ ।୩୦। ଘୋଟିଣ ରହିଅଛି ନିଘୋର ବ୍ରହ୍ମାଣ୍ଡରେ । ଘୋର ବନ ଲତା ଥିଁ ଗ୍ରାମର ଦେହାନ୍ତରେ । ଘଟେ ଘଟେ ପୂରି ଅଛନ୍ତି, ଆତ୍ମାର ସ୍ୱରୂପରେ ହୋ ।୩୧। ଗତ ପତ ପୁରୁଷ ଅଟନ୍ତି ଯୁଗେଯୁଗେ, ଗଡ଼ ବାନ୍ଧି ଅଛନ୍ତି ଆପେ ସେ ଶୂନ୍ୟ ମାର୍ଗେ, ଜ୍ଞାନ ଧ୍ୟାନ ସତ୍ୟ ସୁକୃତ, ପୂରିଛି ତାଙ୍କ ଅଙ୍ଗେ ହୋ ।୩୨। ଖଣ୍ଡ ଖଣ୍ଡ ନୁହନ୍ତି ଅଖଣ୍ଡ ବ୍ରହ୍ମ ତନୁ । କ୍ଷୀରସିନ୍ଧୁ ବାସୀ ଅଟନ୍ତି ମହାଶୂନ୍ୟ । ଖେଳ କଉତୁକ ତାଙ୍କର, ଯାଣୋଣି ନୁହେଁ ମନୁ ହୋ ।୩୩। କର୍ମଦେବ ଗୁରୁ ଅଟନ୍ତି ପୂର୍ଣ୍ଣାନନ୍ଦ । କରପତ୍ର ଯୋଡ଼ିଣ ଦର୍ଶନ ପାଦବନ୍ଦ । କର୍ତ୍ତା ଏକା ସେହି ସଂସାରେ, କହଇ ଶ୍ରୀମ କନ୍ଦ ହୋ । ୩୪ ।



( ୭୩ )

(କ) କର୍ମଦେବ ଯାକୁ କହି । କପୋଳ ଦୁଆରେ ଅଛଇ ରହି । ସୁମନରେ । କରତା ପୁରୁଷ ସେହି । ୧ । ଚିତ୍ତରେ କର ଭଜନ । କ୍ଷମାସାଗରଙ୍କୁ ହୃଦରେ ଚିହ୍ନ । ସୁମନରେ । କ୍ଷୀରସିନ୍ଧୁ-ବାସୀ ଜାଣ ॥ ଗୁରୁଦେବ ଛନ୍ତି ପାଶେ । ଗର୍ଭ ଭିତରକୁ ଯିବ ନାହିଁ ତୁ ଆପେ । ସୁମନରେ । ଜ୍ଞାନ ଲଭିବୁ ସାକ୍ଷାତେ ।୩। ଘାଣ୍ଟି ପ୍ରକୃତି ହୃଦୟ । ଘୋଟି ରହିଅଛି ମାୟା ବିଷୟ । ସୁମନରେ । ଘୋର ବନ ଅଟେ ଦେହ ॥ ଅନନ୍ତ ଯାହାକୁ କହି । ଓଁକାର ଅକ୍ଷର କଣ୍ଠେ ଅଛଇ । ସୁମନରେ । ଅଣଆକାର ତା ଦେହି । ୫ । ଚିହ୍ନିଲୁ ନାହିଁ କାହିଁକି । ଚର୍ମ ନୟନରେ ଯିବ ନ ଦେଖି । ସୁମନରେ । ଚନ୍ଦ୍ର ସୂର୍ଯ୍ୟ ଛନ୍ତି ସାକ୍ଷୀ । ୬ । ଛନ୍ଦ ନିର୍ମାଣ କରିଛି । ଛଡ଼ଚକ୍ର ତୋର ଦେହରେ ଅଛି । ସୁମନରେ । ଛଡ଼ ବେଦ ବୋଲଇଛି । ୭ ।

Digitized by srujanika@gmail.com

ଜଗନ୍ନାଥଙ୍କୁ ଭଜ । ଯୁବା ଦେହେ ତୋର ପ୍ରକୃତ ତେଜ । ସୁମନରେ ଜ୍ୟୋତିରୂପ ଦେବରାଜ ।୮। ଝଟକ ବିଜୁଳି ତାଙ୍କ । ଝଳ ଦିଶୁଅଛି ଦେହରେ ଦେଖ । ସୁମନରେ । ଖାଉଁ ଖାଉଁ ବ୍ରହ୍ମରୂପ ।୯। ନିଷ୍କାମର ଅଛୁ ଲୁହ । ନାମ ବ୍ରହ୍ମ ବୋଲି ଯାହାକୁ କହ । ସୁମନରେ ନିର୍ବିକାର ଅଟେ ସେହ । ୧୦ । ଟାଣି ନେଉଅଛୁ ତାକୁ । ଟିଆ କରି ନେଉଅଛୁ ଯାହାକୁ । ସୁମନରେ । ଟେକ ଧରିଛୁ ପିଣ୍ଡକୁ । ଠିକଣାରେ ଧର ଲୁହ । ଠୂଳ ଶୂନ୍ୟରୂପ ତାକୁ ଅଟଇ । ସୁମନରେ । ଠିକେ କହେ ଶ୍ରୀମ ଭେଇ । ୧୨ ।

(ଡ) ଡରୁ ତୁ ଅଛୁ ଭସ୍ମରେ । ଡଗର ଜନକୁ ଦେଖି ବାଦ୍ୟରେ । ସୁମନରେ । ଡେଇଁ ପଡ଼ୁଛି ମାୟାରେ । ୧୩ । ଢମା-ଳରେ ଅଛୁ ମାତି । ଢାଉ ଢାଉ ତୋର ଦେହରେ ଜ୍ୟୋତି । ସୁମନରେ । ଢମ ନଗର ତୋ ଜାତି । ୧୪ । ଅଣରୂପ ଅଣାକାର ଆଣି ଠାବ କର ଦେହରେ ତୋର । ସୁମନରେ । ଅନାହତ ଧ୍ୱନି ଘର । ୧୫ । ତରିବାକୁ କର ଗଣ୍ଡି । ତତ୍ତ୍ୱ ପଦ ବୋଲି ଯାହା କହନ୍ତି । ସୁମନରେ । ତାକ ତରକ ବୁଦ୍ଧିଟି ॥ ଥୋଇଚ ଧନ ଭଣ୍ଡାର ସ୍ଥାନକୁ ଆବୋରି ଜାଗ୍ରତେ ଧର । ସୁମନରେ । ସ୍ଥିତି ଅଟେ ତୋ ଶରୀର । ୧୭ । ଦରଶନ କର ନାହିଁ । ଦେବତା ବୋଲଣି ଯାହାକୁ କହି । ସୁମନରେ । ଦେହରେ ପୁରିଛି ସେହି । ୧୮ । ଧର୍ମ ଲଗିଅଛି ସଙ୍ଗ । ଧ୍ୟାନ ଧାରଣାରେ ରଖ ତୋ ଅଙ୍ଗ । ସୁମନରେ । ଧରିଥାଅ ନାବ ମଙ୍ଗ । ୧୯ । ନିତ ପ୍ରତି ଭାବ ବଳା । ନବଘନ ରୂପ ଯହୁଁ ବହିଲ । ସୁମନରେ । ନର ଦେହକୁ ବହିଲ । ୨୦ । ପୂର୍ଣ୍ଣକୁ ବାଞ୍ଛିତ କର । ପିଣ୍ଡରୁ ଦେଖ ନାହିଁ ନା ଆର । ସୁମନରେ । ପରମ କରିଛି ଘର । ୨୧ । ଫୁଲ ଫୁଟିଛି ଜାଣୁ । ଫନ୍ଦା କରିଅଛୁ ସେବକ ହନୁ । ସୁମନରେ । ଫଳ ଅଟେ ତୋର ତନୁ ।୨୨। ବାଞ୍ଛା କରୁଛୁ ନିତ । ବିକାର ତୋ ଦେହେ

Digitized by srujanika@gmail.com

ମନ ପ୍ରକୃତି । ସୁମନରେ । ବାଜନ ପାଠକ ଜାତି । ୨୩ । ଭଜନ୍ତୁ ଯହାକୁ ତୁହ୍ମେ । ଭବ ପୀରତିରେ ଭ୍ରଷା ଅଟଇ । ସୁମନରେ । ଶ୍ୟାମ ଅପେକ୍ଷିତ କହ୍ମ । ୨୪ ।

(ମ) ମନ ଅଟେ ଯେଉଁ ଜନ । ମଦନ ଆରମ୍ଭେ ପ୍ରେମରେ ଛନ୍ନ । ସୁମନରେ । ମତ୍ତ ଗରବଟି ଜାଣ । ୨୫ । ଜୀବଟି ଯହାକୁ କହ୍ମ । ଯୋନି ଦୁଆରରେ ଜନମ ହୋଇ । ସୁମନରେ । ଯମ ଘର ଅଟେ ସେହ୍ମ । ୨୬ । ଯଗ ଶିକ୍ଷା ଯାହା କହ୍ମ । ରଜରବ ନଦୀ ଆସୁଛୁ ବହ୍ମ । ସୁମନରେ । ରକତ ମାଂସ ଦେହ୍ମ । ୨୭ । ଲଭିବାକୁ ନାହିଁ କଷ୍ଟ । ଲଭ ବଣିଜକୁ ଧର ତୁ ବାଟ । ସୁମନରେ । ଲକ୍ଷଣ ହୋ ଦେହେ ଅଛୁ । ୨୮ । ବଅର୍ଥେ ଭୂମି ନ ମର । ବୁଝାମଣା କର ହେତୁରେ ଧର । ସୁମନରେ । ଦେହ ଅଦେହେ ବହର । ୨୯ । ଶିଖା ବୋଲି ଯା କହୁଛୁ । ଶରଣ ପଶ ତୁ ଧ୍ୟାନରେ ନତ । ସୁମନରେ ଶିର ପରେ ଶିଖା ଅଛୁ ।୩୦। ଶୂନ୍ୟମୟ ଅନ୍ତର୍ଯ୍ୟାମୀ । ଶ୍ରବଣ ତଟରେ ନଗମ ଭୂମି । ସୁମନରେ । ସତ୍ୟପଦ ଗୁରୁସ୍ୱାମୀ । ୩୧ । ଶୁଣୁଛୁ କଥା ଯେତେକ । ସହ୍ମ ତାର ନେବେ କଷଣ ଦୁଃଖ । ସୁମନରେ । ସନ୍ତୋଷ ହବଟି ସୁଖ ।୩୨। ହାନି ଲଭକୁ ହସ୍ତର । ହରଷ ହବରେ ମନକୁ ଧର । ସୁମନରେ ହୃତ ଅଟେ ତୋ ଶରୀର ॥ କ୍ଷିତି ବୋଲି ଯାହା କହୁ । କ୍ଷମା ମହ୍ମମାଙ୍କ ଚରଣେ ଧ୍ୟାଇ । ସୁମନରେ । କ୍ଷମେ ଭଣେ ଶ୍ୟାମ ହୋଇ । ୩୪ ।



(କ୍ଷ) ଖେଳ ଦେଖ କ୍ଷିନ ନାହେ । କ୍ଷୟ ବୁଦ୍ଧି ନାହିଁ ବରଜ କାଳେ । ସୁମନରେ । ଖେଳୁଛୁ କଦମ୍ବ ମୂଳେ । ହେତୁରେ ତୁ ଧର ଏବେ । ହର ନାମ ଆଶ୍ରେ କରିବୁ ଯେବେ । ସୁମନରେ । ହୃଦ ମୁକାବନ ଠାବେ ॥ ଶୂନ୍ୟ ବୋଲି ଯାହା କହୁ । ଶ୍ରବଣ

Digitized by srujanika@gmail.com

ଜଡ଼ରେ ନଗମ ଭୁଲିଁ । ସୁମନରେ । ସାର ବ୍ରହ୍ମ ଅଟେ ସେହ୍ୱ । ୩ ।
ଶୁଣିରେ ସାଧି କି ଦେଖ । ମଦ ସମାନରେ ଜଣ ଷଟ୍‌ବଜ୍ଞ ।
ସୁମନରେ । ଶୁକ୍ଳବର୍ଣ୍ଣ ତାର ରୂପ । ୪ । ଶରଦ ଉଷ୍ମ ନାହିଁ ।
ସରବରୁ ନଦୀ ଆପ୍ସୁଣ୍ଡି ବନ୍ଧ । ସୁମନରେ । ସ୍ନାନ କର ତହିଁ ଯାଇଁ
। ୫ । ବାଗ୍‌ନଧି ଯେ ସାଗର । ଦାଟରେଣୀ ପଡ଼ୁଛି ତ୍ରିବେଣୀ ଧାର ।
ସୁମନରେ । ବାମ ଡାହାଣ ଉପର ॥ ଲଗିଣ କର ଭକତ । ଲବଣ
ସିନ୍ଧୁରେ କର ତୁ ପ୍ରିତ । ସୁମନରେ । ଲବ୍ଧ ଲବଣ୍ୟ ମୁରତ । ୭ ।
ରୂପଟି କୃଷ୍ଣ ହୋଇଲା । ରହାସ ମଣ୍ଡଳେ କରୁଛି ଲୀଳା । ସୁମନରେ
ରାଧାଟି ଧବଳ ଡୋଳା ।୮। ଜଇବୁ ଯେମନ୍ତେ ଭୁଞ୍ଚ । ଜୀବ ପରମର
କାରଣ ନାହିଁ । ସୁମନରେ । ଯୁଗଳରେ ମିଶା ନେଇ । ୯ । ମାଣ
ଶ୍ୟାମ ହୋଇ ଖଟେ । ମାୟା ଦେଖାଇଛି ଅନେକ ବାଟେ । ସୁମନରେ
ବ୍ରହ୍ମଟି ମହିମା ଅଟେ । ୧୦ ।

(ଭ) ଭରସା କର ତୁ ଧର । ଭବଗ୍ରାହ୍ୟାନ୍ତନ୍ତ ହୃଦ ଉତର ।
ସୁମନରେ । ଭବେ ଦରଶନ କର ।୧୧। ବୃଷ୍ଟିବୁ ଯେବେ ବସ୍ତୁର ।
ବାମ ଡାହାଣ ଭୁଜ ଅଟେ ସ୍ଥିର । ସୁମନରେ । ବେଦ କୋଇଲି ତାକୁ
ଠାର ॥ ମୂଳ ମୂର୍ତ୍ତିଅଛି ତହିଁ । ପୂଜା ମଣ୍ଡଳରେ ହୋଇଛି ସ୍ଥିଇ ।
ସୁମନରେ । ଫଣି ମଣି ଶିଖେ ସେହ୍ୱ । ୧୩ । ପବନ ମଣ୍ଡଳେ ବାସ ।
ପୂର୍ଣ୍ଣ ବ୍ରହ୍ମଟି ଅନାଦି ପୁରୁଷ । ସୁମନରେ । ପରମ ହୋଇଛି ଦାସ ।
। ୧୪ । ନାମ ସେହ୍ୱଠାରୁ ଷର । ନୟନ ଝିଲୁଟ ଆସୁଛି ବାର ।
ସୁମନରେ । ନଜ ନାମ ଅନୁସର ॥ ଧର ସଙ୍ଗେ ଭକ୍ତ ଗଣ । ଧରଣୀ
ହୃଦୟ ଏ ବୃନ୍ଦାବନ । ସୁମନରେ । ଧୀପ ଧୂପ ଗନ୍ଧ ଦନ । ୧୬ ।
ଦୟାଳୁ ପୁରୁଷ ସେହ୍ୱ । ଦେଇଛନ୍ତି ପ୍ରଭୁ ପାଦ ବଢ଼ାଇ ।
ସୁମନରେ । ଦାନ ଦଅ ପ୍ରାଣ ଦେଇ । ୧୭ । ଥଳ ମହାଜନତ୍ୟ ବସ୍ତୁ ।
ଥରକୁ ଥର ହେଉଛି ଓଲଟ । ସୁମନରେ । ଥବରେ ଶବ୍ଦ ଉଚାଟ ।
।୧୮। ତତ୍ତ୍ୱ ଯେବେ କହିଥିବୁ । ତଳ ଗ୍ଲେପାର କବାଟ ଫେଡ଼ିବୁ ।

Digitized by srujanika@gmail.com

ସୁମନରେ । ତାଣ୍ଡବ ନୃତ୍ୟ ଦେଖିବୁ । ୧୯ । ଅଣାକାର ଯାକୁ କହି ।
ଅନୁଭବ ଦୃଷ୍ଟି ସହିଁକି ନାହିଁ । ସୁମନରେ । ଅବନା ଭୂମିଟି ସେହି
। ୨୦ । ଝଲଝଲ ଜ୍ୟୋତି ରୂପ । ଝାଙ୍କୁଣୀ ଫିଟଇ ପ୍ରତ୍ୟକ୍ଷ ଦେଖ ।
ସୁମନରେ । ଟାଳ ମକରନ୍ଦ ଭକ୍ଷ ।୨୧। ଡୋଳାରେ ଦେଖିବୁ ଯାଇଁ ।
ଡଗର ଧର୍ମ ପରମ ଅଟଇ । ସୁମନରେ । ଡାକ କହେ ଶ୍ରୀମ
ଢ୍ରେଇ । ୨୧ ।

(ତ) ଠିଆ ହୋଇ ଠାରୁଅଛୁ । ଠୂଳ ଶୂନ୍ୟ ପରେ ଯେହୁ
ବସିଛୁ । ସୁମନରେ । ଠାବ କର ତାଙ୍କୁ ବାଛୁ । ୨୩ । ଝାକଅଛୁ
ଭକତଙ୍କୁ । ଠିକକର ଭଜ ଗୁରୁଦେବଙ୍କୁ । ସୁମନରେ । ଟେକ
ନେବେ ଉପରକୁ । ୨୦ । ନସତ ନ ହୁଅ ଭୂନ୍ଦ । ନତଳରେ ଥାଅ
ସେବା ଲଗାଇ । ସୁମନରେ ନଦାବ୍ରହ୍ମ ଅଟେ ସେହି । ୨୫ । ଝଟ-
କୁଛୁ ରୂପ ତହିଁ । ଖାଡ଼ଖଣ୍ଡ ଯେବେ ଧାରବୁ ତେଇଁ । ସୁମନରେ ।
ଝିଙ୍କି ନେବ ଶୂନ୍ୟ ଦେହୁ ।୨୬। ଜାଗି ଧର ଆତ୍ମା ଲିଙ୍ଗ । ଜୀବନକୁ
କର ବ୍ରହ୍ମରେ ସଙ୍ଗ । ସୁମନରେ । ଯୁବା ହୋଇଥିବ ଅଙ୍ଗ । ୨୭ ।
ଛଟକେ ଦେଖି ଭୁ ରହି । ଛଳ ଦେବେ ତୋତେ ଜଣା ତ ନାହିଁ
ସୁମନରେ । ଛେକ ତୁ ଆଗରେ ଯାଇଁ ।୨୮। ଚମକୁ ଅଛୁ ଶରୀର ।
ଚାଆଁ ଚଇତନ ସହିଁରେ ଘର । ସୁମନରେ । ଚର୍ମ ନାସିକା ଭିତର ।
।୨୯। ଅଲେଖ ଯାହାକୁ କହି । ଲେଖା ସଂଖ୍ୟା କର ବୁଝଇ ଯେହି ।
ସୁମନରେ । ଅଣ ଅକ୍ଷରଟି ସେହି । ଘେନ ନାହୁଁ ସଙ୍ଗେ ପଢ ।
ଘରର ଘରଣୀ ଜୀବ ଯୁବକ୍ଷ । ସୁମନରେ । ଘାଟରେ କାନ୍ଦୁଛୁ
ନଢ । ୧ । ଜ୍ଞାନ ବୋଲି ଯାକୁ କହି । ଗତ ଜନ୍ମ ଯାର ବାସନା
ଥାଇ । ସୁମନରେ । ଗତ ମୁକତିଟି ସେଇ । ୩୨ । ଖାଇବା ପିଇବା
କଲ । ଖୋଜ ଭିତରେ ଉଦର ସ୍ଥାପିଲ । ସୁମନରେ । କ୍ଷୁଧା ତୃଷ୍ଣା
ତେଣୁ କଲ ।୩୩। କ କର୍ମ କରବ ମୁହିଁ । କରତା ପୁରୁଷ ଚରଣେ
ଧାଇ । ସୁମନରେ କହେ ଶ୍ରୀମସେନ ଦ୍ବାଇ ॥

—୦—

Digitized by srujanika@gmail.com

( ୨୫ )

(କ) କୃଷ୍ଣ କହନ୍ତ ଯାହାକୁ କାମଦେବ ସେହି, କରିଅଛନ୍ତି କର୍ମ ଜାଣରେ ବଜିଲ, କାମ କଲ୍ପନା ଛିଆଇଲେ । ୧ । ଖଣାର ବିମ୍ବରେ ଚଢ଼ି ସବୁ ବହିଗଲ, ଖପର ଯେଉଁ ଅଟଇରେ ବଜିଲ, ସ୍ତିରି ପଦ୍ମକୁ କହିଲରେ । ୨ । ଗର୍ବ ବୋଲି ଯାହା କହି ମାତା ଛଡ଼ିଦଲ, ଶିଶମାନେ ଭାସୁଛନ୍ତିରେ ବଜିଲ, ନ ମିଳୁଛନ୍ତି ଥଳ-କୂଳରେ । ୩ । ଯୋଠି ରହିଛନ୍ତି ସବାଙ୍କେ ଦେହକୁ ଘୋଡ଼ାଇ, ଘୋର ତାପ ଯେଉଁ ଅଟଟରେ ବଜିଲ, ଶୋକ ବେଦନଟି ସେହିରେ । ୪ । ଅନନ୍ତ ପୁରୁଷ ଯେଉଁ ଅଙ୍ଗ ବୋଲି ଜାଣ । ଜୀବଆତ୍ମା ପିଣ୍ଡେ ପୁରିରେ ବଜିଲ, ନେଣୁ ଭାଷଇ ବଚନରେ ॥ ଭ୍ରମର ଅଟଇ ଯେଉଁ ଚକ୍ଷୁର ମଟକ, ଚେତ ବିସ୍ମରି, ବୁଝିଲେରେ ବଜିଲ, ଭ୍ରମି ପଡ଼ୁଛନ୍ତି ଛଟକରେ । ୬ । ହଂସ ବାନା ଯେଉଁ ଶିର କମଳ ହୋଇଲ, ଘୁଘୁ ମଣ୍ଡପରେ ଜୀବରେ ବଜିଲ, ଥାଇଁ ସୁଖେ ବିଶ୍ରାମିଲରେ । ୭ । ଜ୍ୟୋତି ଲିଙ୍ଗ ଯାହା କହି ଜୀବନ ଅଟଇ, ଯୁଗଳରେ ଯାଇ ଅଛିରେ ବଜିଲ, ମାଛା ଯୋନି ଦ୍ୱାର ନୋହାଇରେ । ୮ । ଝଞ୍ଜା ଅଟଇ ଯେଉଁ କାମ କ୍ରୋଧ ଲୋଭ, ଝଗଡ଼ା ପକାଇ କରିନ୍ତି ବଜିଲ, ଧରି ନେଇଅଛନ୍ତି ସବରେ । ୯ । ନାମବ୍ରହ୍ମ ବୋଲି ଏହି ଦେହକୁ କହିଲ, ନଶି-ଦ୍ୱିବସରେ କବରେ ବଜିଲ, ବେଦଶାସ୍ତ୍ର ବଖାଣିଲରେ । ୧୦ । ଚିଆ କଣ୍ଠୁ ଯାହା କହି ଜନ୍ମ ମରଣଟି, ଚଳିଯିବ ପିଣ୍ଡୁ ପ୍ରାଣରେ ବଜିଲ ଠାଣେ ମିଟିଗଲେ ଚଣ୍ଡିରେ । ୧୧ । ଚୈତନ୍ୟ ବୋଲି ଯେଉଁ ଦେହଟି ଅଟଇ, ଠିକ ଠିକ ଚନ୍ଦ୍ର ବାଣିରେ ବଜିଲ, ଶ୍ରୀମ ଅରକ୍ଷିତ କହିଲେ । ୧୨ ।

(ଖ) ଜଗତଟି ଯେଉଁ କ୍ଷୁଧା ତୃଷାଟି ଅଟଇ, ଜାକ ଧରି ନେଉ ଅଛନ୍ତିରେ ବଜିଲ, ଆଜେ ନ ପାରୁଛନ୍ତି ରହିରେ । ଡାକୁଣୀ କବାଟ ଦଣ୍ଡଦ୍ୱାରକୁ ରହିଛନ୍ତି, ଧାଇଁ ଯାଉ ଯେତେବେଳେରେ ବଜିଲ

Digitized by srujanika@gmail.com

ତାର ଇସ୍ଥରେ ଫିଟିଛୁରେ ॥ ଅଣାକାର ଯାହା କହ୍ଣ ଅବକାର ପଥ, ଏକାନ୍ତ ମଣି ପାରିଲେରେ ବଉଳ, ସବକର୍ମ ପରିପତରେ । ୧୫ । ତପତ ଆନନ୍ଦ ଯେହୁ ଦେହରେ ଜ୍ଞୁମ । ତାକୁ ପାଦ ପଶିଯନ୍ତରେ ବଉଳ, ସବକର୍ମ ପରିପତରେ । ୧୫ । ତପତ ଆନନ୍ଦ ଯେହୁ ଦେହରେ ଜ୍ଞୁମ । ତାକୁ ମାଦ ପଶିଯନ୍ତରେ ବଉଳ, ଫେରୁଛନ୍ତି ଜ୍ୱାଳା ଧୂମରେ । ୧୭ । ସ୍ଥିତ ବୋଲି ଯାହା କହ୍ଣ ତାକୁକା ସେ ଗିରୀ, ସ୍ଥଳରୁ ଖସିଆସୁଛୁରେ ବଉଳ, ବିନ୍ଦୁ ନାଦରୂପେ ପୂରିରେ । ୧୭ । ଦୟା ବୋଲି ଯାହା କହ୍ଣ ଦେହଟି ହୋଇଲା, ଦେଖି କରୁଣା ନେତ୍ରରେ ବଉଳ, ଯେବେ ମୁଠାଏକ ଦେଲାରେ । ୧୮ । ଧ୍ୟାନ ବୋଲି ଯାହା କହ୍ଣ ଧର୍ମଟି ହୋଇଛୁ, ଧରଣୀ ହୃଦୟ ତଟରେ ବଉଳ, ଧର୍ମ ଧରି ସମ୍ଭାଳିଛୁରେ ॥ ନର୍କକୁଣ୍ଡ ଦେଖି ପ୍ରାଣୀ କରୁଛନ୍ତି ଛୁ ଛୁ, ନାଭିକମଳ ତଳକୁରେ ବଉଳ, ସବ ଶରୀରରେ ଅଛୁ ।୨୦। ପାପୀ ବୋଲି ଯାହା କହ୍ଣ ପବଣଟି ଅଟେ । ପିଣ୍ଡେ ଜୀବ ଆବୋ-ଶଣରେ ବଉଳ, ଅଛୁ ମେରୁଦଣ୍ଡ ତଟେରେ । ୨୧ । ଫୁଙ୍କାର ପବନ ଯେହୁ ନାସା ଦ୍ୱାରେ ଫେରି, ଫାଟିଗଲେ ଜଳ ବୁନ୍ଦରେ ବଉଳ, କେହୁ ନୋହିବେ କାହାରିରେ । ୨୨ । ବବରଟି ଯେହୁ କାମ କଳ୍ପନାଟି ଜାଣ, ବଧ୍ୟମତ ସାରସ୍ୱତରେ ବଉଳ, ସବୁ କରୁଛୁ ବାରଣ ॥ ଭବ ପ୍ରୀତି ବୋଲି ଭବ ହାରକୁ କହିଲି । ଲଣେ ଭ୍ରମ ଅରକ୍ଷିତରେ ବଉଳ । ସୋହଙ୍କରେ ଭସିଗଲାରେ । ୨୪ ।

ମ) ମର୍ତ୍ତ୍ୟପୁର ଯାହା କହ୍ଣ ମିଥ୍ୟା ବୋଲି ଜାଣ । ମାୟା ମୋହେ ପଡ଼ି ଜୀବରେ ବଉଳ, ହେଉଅଛୁ ଅକାରଣରେ ।୨୫। ଜୀବ ବୋଲି ଯାହା କହ୍ଣ ପିତା ବୀଜ ଅଟେ । ଯୁଗଳରେ ମିଶୁ ଅଛୁରେ ବଉଳ, ମାତା ଯୋନିଦ୍ୱାର ବାଟେରେ । ୨୯ । ସ୍ୱଗ ବେଷ ଯାହା କହ୍ଣ ରଜ ହଂସ ସେହ । ଗୌର ହୋଇ ଉଛୁଳିଲାରେ ବଉଳ, ଗୁହ୍ୟ ଦ୍ୱାରେ ଗଲା ବହିରେ । ଲମ୍ଭିବା ପଦଟି ଯେହୁ ଲଗିଅଛୁ

Digitized by srujanika@gmail.com

ଲତା, ଲଙ୍ଘି ଯାଉଛ୍ଛି ଧର୍ମକୂଳରେ ବଉଳ, ଲେଶେ ନ ରହୁଛି ଚେତାରେ । ୨୮ । ବସନ୍ତ ପବନ ଯେହ୍ନ ପଚଣ୍ଡ ପ୍ରକୃତ । ବିଭୂଷଣ କରୁଅଛିରେ ବଉଳ, ସ୍ଥିର ନ ରହୁଛି ମନ୍ତରେ । ୨୯ । ସୁରଙ୍ଗ ଶୃଙ୍ଗାର ଯେହ୍ନ ବିଖ୍ୟାତ ଯୁଗଳ । ସମ୍ମି ଗାଉଁ ଯାଅଛନ୍ତିରେ ବଉଳ ତିନଭୁବନ ସକଳରେ । ୩୦ । ଶଙ୍କିତ ଯାହାକୁ କହି ବଳ ସାମର୍ଥ୍ୟ ଅଟେ ॥ ସବୁ ଯାଉଅଛି ସବୁରେ ବଉଳ, ପଡ଼ି ମାୟା ନଷ୍ଟ କୁଣ୍ଟରେ । ୩୧ । ସମାନ ଅଟଇ ଯେହ୍ନ ସାମର୍ଥକୁ କହି । ଶାନ୍ତଶୀଳ ଦୟା କ୍ଷମାରେ ବଉଳ, ହୃଦ ପଦ୍ମେ ଅଛି ରହିରେ । ୩୨ । ସ୍ଥିତ ବୋଲି ଯାହା କହି ଅନୁଭବ ପଥ । ହରଷ ବିରସ ସବୁରେ ବଉଳ, ଏ ଦେହରେ ଆତଯାତରେ । ୩୩ । ଛିଡ଼ି ବୋଲି ଯାହା କହି ଦେହଟି ହୋଇଲା । କ୍ଷମା ମହିମାକୁ ଧାଇରେ ବଉଳ, ଶ୍ରମ ଅର୍ପିତ ଭଣିଲାରେ ।

—o—

( ୨୭ )

(ଛ) କ୍ଷୟ ବୃଦ୍ଧି ନାହିଁ ତାଙ୍କୁ କ୍ଷୀରସିନ୍ଧୁ ବାସୀ । କ୍ଷୀଣ ଅବତାର ରୂପରେ ବଉଳ, ଏବେ ଧଇଛନ୍ତି ଆସିରେ ॥ ହବ ଧୂତ ଯାହା କହି ପିତା ସାଜ ଅଟେ । ହରି ନେଇ ଯାଉଅଛିରେ ବଉଳ, ଗର୍ଭଗତର ଖେପାରେ । ୨ । ଶୁଦ୍ଧ ମୁନି ବାକ୍ୟ କହି ବଚନ ହୋଇଲା । ସିଦ୍ଧାନ୍ତ ମହାଭାରତରେ ବଉଳ, ଶାସ୍ତ୍ର ପଦ ଯାଅଁରଲାରେ । ୩ । ଶୁତ ପୌରାଣିକ ମୂଳଙ୍କ ବତାଇବ କେତେ । ସମାଯୁକ୍ତ ହୋଇଗଲାରେ ବଉଳ, ଅଷ୍ଟାଙ୍ଗ ଲ ପରଯନ୍ତେରେ ॥ ଶ୍ରୋତା ହେତୁ ହେଲେ ଦୁଇ ଶଆ ଚଇତନ । ସରମ ପ୍ରେମ ପ୍ରକୃତରେ ବଉଳ, ତହୁଁ ହେଲା ମାହା ମାନରେ । ୫ । ବ୍ୟାସ ସଟଭିବର ଗାନ୍ଧ ପଦୁ ବୋଲି ଜାଣ । ବାରସ୍କନ୍ଧ ପୂରଣରେ ବଉଳ, ତହୁଁ ହେଲା ଉତପନରେ । ୬ । ଲେଖନ କଳମ କାଠ ହେଲା

Digitized by srujanika@gmail.com

ଇନ୍ଦ୍ର ଅଣ୍ଡ । ଲିଙ୍ଗ ଶାସ୍ତ ରଜରସରେ ବଉଳ, ପଦ୍ମ ଅଟେ ହୋମ କୁଣ୍ଡରେ । ୭ । ରଗ ରଗ ଅଗ୍ନି ଯେହ୍ନ ଡପତ ସେ ଜାଣ । ରଜଗାର୍ଦ୍ଧ୍ୟ ବନ୍ଧା ହେଲାରେ ବଉଳ, ଦେହ ସେ ଶାସ୍ତ ପୁରାଣରେ ॥ ଜଗନ୍ନାଥ କବ ଯେହ୍ନ ଜହ୍ମାତି ଅଟଇ । ଜାଣି କରତା ପୁରୁଷରେ ବାଉଳ, କଣ୍ଠ ତଟେ ହେଲେ ମୋଇତେ । ୯ । ମୁନିଗଣ ଯେ ଅଟନ୍ତି ପଞ୍ଚଭୂତ ମାନ । କହେ ଖ୍ରୀମ ଅନ୍ତରଷତରେ ବଉଳ, ଦେହ ନୈମିଷ୍ୟା ଅରଣ୍ୟରେ । ୧୦ ।

(ଓ) ଭାଗବତ ଯାହା କହୁ ଭାବ ପ୍ରୀତି ଅଟେ । ଭୋଗବାଗ ଲାଗୁ ଅଛିରେ ବଉଳ, ରତ୍ନମୁଖ ମଦବାଟେରେ ॥ ବାଲ୍ମିକ କହୁ ବାକ୍ୟ ବଚନ ହୋଇଲା । ରଜଗାର୍ଦ୍ଧ୍ୟ ମନ୍ତ୍ର ଧାତୁରେ ବଉଳ, ରାମାୟଣ ଗ୍ରନ୍ଥ ହେଲାରେ । ଫଦାବୃତ୍ତି ଯାହା କହ ନାମବ୍ରହ୍ମ ଅଟେ । ଫଳ ଭୋଗ ହେଉ ଅଛିରେ ବଉଳ, ଭଜ ପାଇଥିଲେ ଆଣ୍ଟରେ ॥ ପରଣତି ଯାହା କହୁ ପରମ ପୁରୁଷ । ପିଣ୍ଡେ ପୂର ରହୁଅଛିରେ ବଉଳ, ସାକ୍ଷୀ ରୂପେ ପରକାଶରେ ॥ ନଷ୍ଟା ବୋଲି ଯାହା କହୁ ଜହ୍ମା ଅଗ୍ରେ ଅଛି । ନନ୍ଦା ସୂତ୍ର ହାମି ଲାଞ୍ଚରେ ବଉଳ, ପରକାଶ ହେଉଅଛିରେ । ୧୫ । ଧନ ବୋଲି ଯାହା କହୁ ପିଣ୍ଡ ପ୍ରାଣ ସିନା ଧାଇଁ ଯାଉଛି ଆଗକୁରେ ବଉଳ, ଦେଖି ହେଉଅଛି ବଣାରେ । ୧୬ । ଦ୍ୱାରକା ଦାଣ୍ଡି ଯେହ୍ନ କର୍ଣ୍ଣ ବୋଲି ଜାଣ । ଶ୍ରବଣ ଚନ୍ଦ୍ର ତା ଘରେରେ ବଉଳ, ଶବ୍ଦ କରୁଛି ବାରଣରେ । ୧୭ । ଥୋଇଛି ରତନ ଯେହ୍ନ ହେତୁ ଚେତା ଜାଣ । ଥାଉଁ ଥାଉଁ ପିଣ୍ଡେ ପ୍ରାଣରେ ବଉଳ । ପାଦେ ଲଗାଅ ଭଜନ ରେ । ୧୮ । ସପ୍ତଗୁଣ ଯାହା କହୁ ସତ ରଜତମ ସ୍ତ୍ରିଣ ସଙ୍ଗତରେ ପଡ଼ିଲେ ବଉଳ, ସରିଯାଉଛି ଜୀବନରେ ॥ ଅନନ୍ତ ରୂପଟି ଯେହ୍ନ ଆଦ୍ୟ ଶକ୍ତି କହୁ । ଅନୁକ୍ଷଣ ଯୁଗାଉଛିରେ ବଉଳ, ଗର୍ଭ ଗତରେ ପୁରାଇରେ । ୧୯ । ଛାଉରଙ୍ଗ ଯାହା କହୁ ଲୋଭ ମୋହ ଜାଣ । ଡଳି ଯାଉଅଛି ପିଣ୍ଡରେ

Digitized by srujanika@gmail.com

ବଉଳ, ମୀବ ବୋଇ ଅଜାରଣରେ ॥ ଉକାଇତ ଯାହା କ୍ଷୁଧା ତୃଷାଦି ଅଟଇ । ଡୋଳେ ଦେଖି ସୁଖ ଅନ୍ତରରେ ବଉଳ, ଶ୍ରାମ ଅରକ୍ଷିତ କହ୍ବରେ । ୨୨ ।

(୦) ଠାକୁର ଅଟନ୍ତି ଯେତ୍ତୁ ଗୁରୁ ପାଦବନ୍ଦ । ଠାବ କର ଚର୍ଚ୍ଚି ପିଅରେ ବଉଳ, ଝରୁ ଅଛୁ ମକରନ୍ଦରେ । ୨୩ । ଟେକନ୍ତି ଶୂନ୍ୟେ ବାନା ଭକତ ସମନ୍ତେ । ଟମକ ଦଆଉଛନ୍ତରେ ବଉଳ, ବନପୁର ପରଯନ୍ତେ ରେ । ୨୪ । ଡସ୍ମାମ ମଦ୍ଧରେ ଯେତ୍ତୁ ନନ୍ଦାସୁତ ନାହିଁ । ନିରନ୍ତରେ ନାମ ଧ୍ୱନିରେ ବଜଳ, ଲୀଳା ଲଗିଅଛୁ ତହିଁରେ । ୨୫ । ଝଡ଼ ପଡ଼ୁଛନ୍ତି କେହିଁ ନୁହନ୍ତି ସମାନ । ଝଟକୁଛୁ ତହିଁ ରୂପରେ ବଉଳ, ଘନେ ବଜୁଳି ଯେସନରେ । ୨୬ । ଜୟଦେବ କହ ଯେତ୍ତୁ ଜାଉଁଳ ନାସିକା । ଜଗି ବସିଛୁ ଦୁଆର ରେ ବଉଳ, ଘେନ ବହନ ମାଳିକା ରେ ॥ ଛଡ଼ଖଣ୍ଡ ଯାହା କହ୍ବ ମାତା ଛଡ଼ ରତ୍ନ । ପିତା ରତ୍ନ ଏକ ମିଶିରେ ବଉଳ, ହରିବଂଶ ଉତପତ୍ତିରେ ॥ ଚମକୁଛୁ ନିତ୍ୟସ୍ଥଳ ଚରଣର ଘାତେ । ଶ୍ୱେତ ପୁଷ୍ପ ଚମ୍ପା କଡ଼ିରେ ବଜଳ, ବରଷୁଛୁ ଅଦଭୁତେ ରେ । ୨୯ । ଉପଇନ୍ଦ୍ର ଯାହା କହ୍ବ ଇଦଯୋଗ ଜାଣ । ଉତପତ୍ତି ଜନ ପଙ୍ଗରେ ବଉଳ, କରୁଅଛୁ ବିହରଣରେ ॥ ଘଡ଼ଘଡ଼ ଶବ୍ଦ ଘାତେ ନିତ୍ୟ ସ୍ଥଳ ପୁତ, ଘନ ଘନ ବାଜୁ ଅଛୁରେ ବଉଳ, ଶଙ୍ଖ ଶିଙ୍ଗା ବେଣୁ ଭୁଷାରେ ॥ ଗୁରୁ ବସିଛନ୍ତି ଗ୍ୟାନ ଭଣ୍ଡାରକୁ ଧରି । ଗତମୁକ୍ତ ନିରନ୍ତରେ ରେ ବଉଳ, ତାଙ୍କୁ ସେବାଛନ୍ତି କରିରେ ॥ ଖେଳ କରୁଛନ୍ତି ସ୍ୱାମୀ କ୍ଷୀନ୍ଧ ନାଳ ପରେ, ଖଞ୍ଜଣୀ ଗିନ ବାଜୁଛୁରେ ବଉଳ, ପାରୁସରେ ନିରନ୍ତରେ ॥ କୃଷ୍ଣ ଦାସ କହ ଯେତ୍ତୁ କମଳ ହୋଇଲା, କର୍ତ୍ତା ପୁରୁଷଙ୍କୁ ଧାଡ୍ଧିରେ ବଉଳ, ଶ୍ରାମ ଅକ୍ଷିତ କହ୍ବଲରେ । ୩୫ ।

--୦--

Digitized by srujanika@gmail.com

( ୨୬ )

(କ) କୁମ୍ଭି ମଠ କରି ଭେକ । କରୁଛନ୍ତି ଖେଳ ଗୁରୁ ଅଲେଖ । ସୁମନରେ । କଣ୍ଠବେର ଫେଡ଼ କୋଲପ । ୧ । ଖଳ କୂଟେ ନୁହ ଭେଳ । କ୍ଷୀରସିନ୍ଧୁ ଆଜ୍ଞା ଯତନେ ପାଳ । ସୁମନରେ । ଖଟ ତାଙ୍କ ପାଦ ତଳ । ୨ । ଗଗନ ଲିଙ୍ଗ ଉପର । ଗୋଲ୍ ହାଟ ଅଛି ତହିଁ ଉପର । ସୁମନରେ । ଗନ୍ଧ ଗନ୍ଧ ନିରନ୍ତର । ୩ । ଘଟରେ କର ବିବେକ । ଘଟରେ ଯେସନ ବିଜୁଳି ରୂପ । ସୁମନରେ । ଘୋଟି ଅଛନ୍ତି ଅଲେଖ । ୪ । ଓଲଟ ବୃକ୍ଷ ଉପର । ଉଡ଼ି ହୋଏ ହଂସ ଏକ ପାଦରେ । ସୁମନରେ । ଅନୁଭବ ସୂକ୍ଷ୍ମ ଧର । ୫ । ଚଞ୍ଚଳ ଚିତ୍ତ ନିବାର । ଶିଆଁ ଚଇତନ ଅମନେ ଭର । ସୁମନରେ । ଗୁରୁଚରଣ ସୁମର ॥ ଛନ୍ଦ କପଟକୁ ତେଜ । ସ୍ୱଚ୍ଛନ୍ଦେ ଗୁରୁଙ୍କ ଚରଣେ ଭଜ । ସୁମନରେ । ଛାଡ଼ ବେଦ ପଟର ଖୋଜ । ୬ । ଜ୍ୟୋତିର୍ମୟ ବ୍ରହ୍ମରୂପ । ଯତନେ କବାଟ ଫିଟାଇ ଦେଖ । ସୁମନରେ । ବିଶ୍ୱ ଅଛି ଜକ ଜକ । ୮ । ଝାଡ଼ି ଗଗନକୁ ଡେଇଁ । ଝାସ ଦେଇ ପଶ ତ୍ରିବେଣୀ ନଈ । ସୁମନରେ । ଝଲକ ଉଠୁଛି ତହିଁ ଦେଖା ॥ ନବଦ୍ୱାର ପୁରେ ପଶ । ନୁହଇ ସ୍ତ୍ରୀ ଶିଶୁ ନୁହେଁ ପୁରୁଷ । ସୁମନରେ । ନିରନ୍ତରେ ଅଛି ପାଶ । ୧୦ । ଟେକ ତ୍ରୁ ଉଜାଣି ଧର । ଟାଣିପଣ ଛାଡ଼ି ଆଶ୍ରୟ କର । ସୁମନରେ । ଟଳି ନ ଯିବ ଶରୀର ॥ ଠାବ କରି ସୁଧା ରସ । ଠକେ ଶ୍ରମ ଭୋଳି କରୁଛି ଗ୍ରାସ । ସୁମନରେ । ଠାକୁରଙ୍କୁ କରି ଆଶ । ୧୨ ।

(ଡ) ଡୋଳାରି ଗୋଚରେ ଦେଖ । ଡେଇଁ ଅଛି ହଂସ ଅମନ ଶିଖ । ସୁମନରେ । ଉଗ୍ରନାହ ଦକ ଦକ । ୧୩ । ଢାଙ୍କି ମାୟା ଜାଲ ଫାନ୍ଦ । ଢାଙ୍କୁଣି ଭିତରେ ଅରୂପା ନନ୍ଦ । ସୁମନରେ । ଢାଳ ବିଷ ମକରନ୍ଦ ॥ ଅଣାକାର ବ୍ରହ୍ମରୂପ । ଅବନା ମଣ୍ଡଳେ ଅଜପା ଜପ । ସୁମନରେ । ଉଜ୍ଜ୍ୱଳ ଦିଶୁଛି ମୁଖ ॥ ତରିବାକୁ କର

Digitized by srujanika@gmail.com

ବୁଦ୍ଧି । ତାକୁ କାହିଁ ଦୁଆରେ ମନ ସମାଧି । ସୁମନରେ । ଚର୍ଚ୍ଚିଛନ୍ତି ବ୍ରହ୍ମ ସିଦ୍ଧି ॥ ଥଳରେ ମରୁଛୁ ବୁଡ଼ି । ଥାଉଁ ନାବ ହେଉଛନ୍ତି ଜବାଡ଼ି । ସୁମନମର । ସ୍ଥିତ ବସ୍ତି ଫନ୍ଦା ଗୁଡ଼ି ॥ ତ୍ରିକୁଟିରେ କର ବିବେକ । ଦସ୍ୟାନଧି ନାମ ହୋଇଛୁ ଭେକ । ସୁମନରେ । ଦେହ ଯାକ ଜକ ଜକ ॥ ଧର ନିର୍ବିକାର ଭାବ । ଧୂନ ମନ୍ଦରକୁ କର ଭୁ ଠାବ । ସୁମନରେ । ଧ୍ୟାନ ଯୋଗେ ସିଦ୍ଧ ହେବ ॥ ନିସ୍ତାମେ ଗୁରୁଙ୍କୁ ଖଟ । ନିଷ୍ଠା ପୁରୁଷ ସେ ରହିଛୁ ବଟ । ସୁମନରେ । ନିତ ନାମବ୍ରହ୍ମ ରଟ ॥ ପଚିଶ ପ୍ରକୃତି ତେଜ । ପରମ କଟାଶ ଯତନ ସାଜ । ସୁମନରେ । ପକା କାଲଚକ୍ର ଭାଙ୍ଗି ॥ ଫିଟିଛୁ ଶୂନ୍ୟକୁ ବାଟ । ଫଣିମଣି ଶିଖେ ପାଇବୁ ଭେଟ । ସୁମନରେ । ଫିଟିଯିବ ତୋ ସଙ୍କଟ ॥ ବଳିଣ ବେଢ଼ା ଉପର । ବିଜେ କରିଛନ୍ତି ବଟ ପୃଷ୍ଠର । ସୁମନରେ । ବଂଶୀ ଧ୍ୱନି ଦୁଏ ଧୀର ॥ ଭବ ତାପ ଯିବ ନାଶ । ଭବଗ୍ରାହୀ ପାଦେ ଶରଣ ପଶ । ସୁମନରେ । ଭଣେ ଶ୍ରୀମସେନ ଦାସ । ୨୪ ।

(ମ) ମନକୁ ଅମନେ ରଖ । ମହାନିତ୍ୟ ଖେଳ ଶୂନ୍ୟରେ ଦେଖ । ସୁମନରେ । ମହିମାଙ୍କ ନିଜ ରୂପ । ୨୫ । ଯତନେ ନାମକୁ ଧର । ଜୀବକୁ ପରମ ପଦରେ ଭର । ସୁମନରେ । ଯୁଗେ ଯୁଗେ ଅଜାମର । ୨୬ । ରଖି ପ୍ରଭୁପାଦେ ମନ । ରଜ ଦିବସରେ ଲଗାଅ ଧ୍ୟାନ । ସୁମନରେ । ରହିଥାଉ ପିଣ୍ଡେ ପ୍ରାଣ । ୨୭ । ଲୀଳା ଲଗିଅଛୁ ଦେଖ । ଲମ୍ବିଛି ଡୋଳାକୁ ଅମନ ଶିଖ । ସୁମନରେ । ଲଭିବ ପରମ ସୁଖ । ୨୮ । ବେଣୁ କର୍ଣ୍ଣ ଶୂନ୍ୟେ ଭେର । ବଂଶୀ ଧ୍ୱନି ଶୁଭୁ ଅଛି ମଧୁର । ସୁମନରେ । ବାଜୁଛି ଦିବ୍ୟ ସୁସ୍ୱର । ୨୯ । ସହସ୍ର ଫଣା ଉପର । ଶୋଇଛନ୍ତି ସ୍ୱାମୀ ଶୂନ୍ୟ ଶିଖର । ସୁମନରେ । ଶୂନ୍ୟେ ଅବନା ମନ୍ଦର । ୩୦ । ସଦାନନ୍ଦ ବ୍ରହ୍ମରୂପ । ଶବଦ ଶରୀରେ କରୁଛି ଗୋପ୍ୟ । ସୁମନରେ । ସୂକ୍ଷ୍ମରେ

Digitized by srujanika@gmail.com

ଚେତାଇ ରଖ ॥ ସହସାନନ୍ଦ ସ୍ୱରୂପ । ଶୂନ୍ୟରେ ନିଶୁଣି ଲଗାଇ ଦେଖ । ସୁମନରେ । ସଞ୍ଚରିବ ତେବେ ସନ୍ତାପ । ୩୧ । ହ୍ରଦ କାଳନ୍ଦ ମଧ୍ୟରେ । ହଂସ ଖେଳୁ ଅଛୁ ବଡ଼ ଚତୁରେ । ସୁମନରେ । ହଂସ ପାଦ ଧର ଥରେ । ୩୩ । କ୍ଷୀରସିନ୍ଧୁ ପରେ ବାସ । କ୍ଷମେ ଭଣେ ଶ୍ୟାମ ଭକତ ଦାସ । ସୁଜନରେ । କ୍ଷମା କର ମୋର ଦୋଷ । ୩୪ ।

—o—

( ୨୮ )

(କ୍ଷ) କ୍ଷୀରସିନ୍ଧୁ କାଶୀ ସେହ୍ୱ । ଶିନନାଳେ ଜଗିଅଛନ୍ତି ରହ୍ୱ । ସୁମନରେ । କ୍ଷମା ମହ୍ୱମାଙ୍କୁ ଧ୍ୟାଇ ॥ ହର ଶିରେ ପଡ଼େ ଝର । ଝର ସେ ଝରକୁ ପିଇ ସତ୍ୱର । ସୁମନରେ । ହୋଇଛନ୍ତି ଅଜାମର । ୨ । ଶରଦ ଉଷୁମ ନାହିଁ । ସଦା ସମ୍ପୂର୍ଣ୍ଣ ସେ ଅରୂପ ଦେଖି । ସୁମନରେ । ଶୂନ୍ୟପୁରେ ଛନ୍ତି ରହ୍ୱ । ୩ । ସକାର ମକାର ବେନ । ଅକାର ସହିତେ ଉକାର ଆଣି । ସୁମନରେ । ସର୍ଜିଲେ ଏହ୍ୱ ମେଦିନୀ ॥ ସପ୍ତଦଳ ଅଛୁ ଫୁଟି । ସପଦଳେ ଗୁରୁ ଆସନ ଗୋଟି । ସୁମନରେ । ସେହ୍ୱ ଅଯୋଡ଼ା ଭୂମିଟି ।୫। ବଙ୍କୁନାଳ ଭେଦ ଗଲେ । ବସିବା ପାଇଁ ଅବନା ମଣ୍ଡଳେ । ସୁମନରେ । ବ୍ରହ୍ମଙ୍କୁ ପରଚେ କଲେ ॥ ଲବଣ-ନଦୀଙ୍କି ଅନା । ଲଲଟଚନ୍ଦେ କାଢ଼ିଁର ପାଟଣା । ସୁମନରେ । ଲାଗିଛୁ ନାମ ଭଜନ । ୭ । ରତ୍ନପୁର ସିଂହାସନ । ରଙ୍ଗେ ବ୍ରହ୍ମା ବିଷ୍ଣୁ ସଙ୍ଗେ ରୁଦ୍ରେଣ । ସୁମନରେ । ରସିଛନ୍ତି ଭକ୍ତଗଣ ॥ ଜଗନ୍ନାଥ ଦାସ ସେହ୍ୱ । ଜିହ୍ୱା ମୂଳେ ଜ୍ଞାନ ଦାନ୍ତ ବତାଇ । ସୁମନରେ । ଜୀବଙ୍କୁ ତାରିବା ପାଇଁ ।୯। ମରଣ ପଥକୁ ଡରି । ମୂଢ଼ ଶ୍ୟାମ ଭୋଇ କରେ ଗୁହାରି । ସୁମନରେ । ମହ୍ୱମାଙ୍କୁ ଆଶ୍ରେ କରି । ୧୯ ।

(ଭ) ଭକ୍ତିରେ ଲଗାଅ ଧ୍ୟାନ । ଭବଦ୍ୱାରେ ଜଗି ବସିଛୁ ଯମ । ସୁମନରେ । ଭ୍ରାନ୍ତ ଯାଉ ଭଜ ବ୍ରହ୍ମ । ୧୦ । ବର୍ଣ୍ଣ ରଜ ସପ୍ତ ରଙ୍ଗ ।

Digitized by srujanika@gmail.com

ପିତା ମାତା ପଦେ ଯତ୍ନ ଗଢ଼ନ୍ତି । ସୁମନରେ । ବ୍ରହ୍ମରେ ଲଗାଇ ପ୍ରୀତି । ମିଳିଛି ତ୍ରିବେଣୀ ଧାର । ଏଥି ଥିଲେ କର୍ମ ବାସନା ତୋର । ସୁମନରେ । ମୁକ୍ତାବନ୍ଧେ ସ୍ନାନ କର ॥ ପରମକୁ ଜାଣି ଧର । ପଚିଶ ପ୍ରକୃତି ହୃଦୁ ନିବାର । ସୁମନରେ । ପରମ ହଂସ ଉଗର । ନାମକୁ ନିଶାଣି କର । ନିତ୍ୟ ସ୍ଥଳରେ ବିହାର ଅପାର । ସୁମନରେ । ନାଚନ୍ତି ବ୍ରହ୍ମା ଶଙ୍କର ॥ ଧ୍ରୁବ ମାରକଣ୍ଡ ଆଦି । ଧ୍ରୁବ ମଣ୍ଡଳକୁ ଥିଲେ ସେ ସାଧି । ସୁମନରେ । ଧାମ ନିତ୍ୟ ଶୂନ୍ୟ ନଦୀ ॥ ଦୁର୍ଲ୍ଲଭ ଜନ୍ମ ତୋ ସିଦ୍ଧି । ଧନ ଥାଉଁ ଆଜ୍ଞା ପାଇଲେ ସାଧି । ସୁମନରେ । ଦୟା କରିବେ ଅନାଦି ॥ ଥିଲୁ ନାମବ୍ରହ୍ମେ ରସି । ଥପୁ ନ ପାଇଲୁ ମଧ୍ୟରେ ଖସି । ସୁମନରେ । ଥପୁକର ଘୋଷି ଘୋଷି ॥ ତ୍ରିଗୁଣାର ତେଜ୍ୟା ହେଲେ । ତ୍ରିବେଣୀ ଘାଟରେ ସ୍ନାହାନ କଲେ । ସୁମନରେ । ତରିବ ପାଦ କମଳେ ॥ ଅଛାର ଉଜ୍ଜ୍ୱଳ ନାହିଁ । ଅନନ୍ତ ମହିମା ଅଛନ୍ତି ରହି । ସୁମନରେ । ଅନନ୍ତ ଜ୍ୟୋତି ରୂପ ହୋଇ । ୨୦ । ଢାଙ୍କୁଣି ଫିଟାଇ ଧର । ଢଳ ନପଡ଼ ଭ୍ରମ ମାୟା ମୋହର । ସୁମନରେ । ଢୋକ ମକରନ୍ଦ ଝର ॥ ଡଙ୍କର ନୃହ ସୁଜନ । ଡଗର ଅଟଇ ମହିମା ନାମ । ସୁମନରେ । ଡାକ କରିଛି ଭୋଳ ଗ୍ରାମ ।

(ଠ) ଠୁଳ ଶୂନ୍ୟ ଯାହା କହି । ଠିକଣା ପୁରୁଷ ସେହି ଅଟଇ । ସୁମନରେ । ଠାବ କର ତାଙ୍କୁ ଯାଇ ॥ ଟାଣ କରୁଅଛୁ କେତେ । ଟିଆ କଣ୍ଠ କର ମାଗିବୁ ହସ୍ତେ । ସୁମନରେ । ଟେକ ନେଇଯିବ ତୋତେ ॥ ନିର୍ବିକାର ବ୍ରହ୍ମ ରୂପ । ନୟନ ଗୋଚରେ ରହିଛି ଦେଖ । ସୁମନରେ । ନିରନ୍ତରେ କର ଜପ ॥ ଝରୁଅଛି ସୁଧା ରସ । ଝରମୁଣ୍ଡେ ବସି ଲଗାଅ ଆଶ । ସୁମନରେ । ଝଡ଼ଯାଉ ପାପ ଦୋଷ ॥ ଜୀବନ ଯାହାକୁ କହି । ଜଳେ ଯେସନ ନଳିନ ଖେଳଇ । ସୁମନରେ । ଜୀବ ସଙ୍ଗେ ନାହିଁ ଦେହି ॥ ଛନ୍ଦ ନିର୍ମାଣ କରିଲୁ । ଛଡ଼ଚକ୍ରେ ତୋର ପିଣ୍ଡ ସ୍ଥାପିଲୁ । ସୁମନରେ । ଛଡ଼ବେଦ

Digitized by srujanika@gmail.com

ବୋଲାଇଲା ॥ ଚର୍ମ ଦେହକୁ ଭୁ ଅନା । ଚନ୍ଦ୍ର ସୂର୍ଯ୍ୟ ବେନି ନୟନ ପିନା । ସୁମନରେ । ଝଲ୍ମିଲେ ଅନ୍ଧାର ବିନା ॥ ଓଁକାର ଯେଉଁ ଅକ୍ଷର । ଉଦେ ହେଲେ ବ୍ରହ୍ମା ବିଷ୍ଣୁ ଶଙ୍କର । ସୁମନରେ । ଉଇଁଛି ଦେଖ ଶରୀର ॥ ଘୋଟି ମାୟା ମୋହ ଗୋଟି । ଘାଣ୍ଟି ପକାଉଛି ଚର୍ମ ଦେହଟି । ସୁମନରେ । ଘଟସୂତ୍ର ହୁଅ କାଟି ॥ ଗରସ୍ତୁ ଭାବରେ ଯେବେ । ଗୁରୁଙ୍କୁ ପରତେ କରିବୁ ତେବେ । ସୁମନରେ । ଗରିବଙ୍କୁ ଧନ ଦେବେ ॥ ଷିତରେ କର ଓଜନା । ଷମା ମହିମାକୁ ଘଟରେ ଅନା । ସୁମନରେ । ଖଣ୍ଡିବେ ତୋ ଦୁର୍ବାସନା । ୩୩ । କହେ ଭୀମ ଭୋଇ ମୂଢ଼ । କରତା ଧୃ ରୁଷ ଫସାରେ ବଡ଼ । ସୁମନରେ । କାଳଦଣ୍ଡ ସ୍ୱାମୀ ଫେଡ଼ ॥

—o—

( ୨୯ )

(କ) କଦଳୀ ବୃକ୍ଷ ଲକ୍ଷେ ତିୟାର ହୋଇବ କାମିନୀ ଖଟିବେ ଲକ୍ଷେ । ଚୂତବୃକ୍ଷ ଦଧି ମାଛ ହେବ ଲକ୍ଷେ କେତେ ମୁଁ କହିବ ମୁଖେ ଯେ । କରତାଙ୍କ ଶ୍ରୀଗୁମ୍ଫରେ । ଅର୍ଘ୍ୟ ହୁଆଯିବ ନିରନ୍ତରେ ଯେ ॥ ଖଣ୍ଡ ଖଣ୍ଡ ହୋଇ ଖଳାର ଭିତରେ ଖଟିଥିବେ ଅଗଣିତା । ଖଦ୍ୟ ଭ୍ରମର ଲକ୍ଷେକ ପକାଇବେ ତେତିଶ କୋଟି ଦେବତା ଯେ । ଷିତି ମଣ୍ଡଳରେ ଯେତେ । ଖେଳେ ପଶିବେ ଆସି ସମସ୍ତେ ଯେ । ୨ । ଗଗ କୁମ୍ଭମାନ ଲକ୍ଷ ଗୋଟା ହେବ ଲକ୍ଷେ ସିଦ୍ଧଋଷି ଥିବେ । ଗୃହ ତୀର୍ଥ ଜଳ ଆଣିଣ ସକଳ, ସପ୍ତାମୃତେ ନଉଡ଼ିବେ ଯେ । ଅଭିଷେକ ଧୂମଙ୍ଗଳ । ଫାଟ ବାନ୍ଧିବେ ମହାମଣ୍ଡଳ ଯେ । ୩ । ଘଡ଼ି ଘଣ୍ଟା ପିଠା ଘଣ୍ଟି ଘାଗୁଡ଼ି ଯେ ହଳକ୍ଷ ପର୍ଯ୍ୟନ୍ତ ହେବ । ମହାନାଟ୍ୟ ଖେଳ ହେବ ମେଦିନୀରେ ଚନ୍ଦନ ବରଷୁ ଥିବ ଯେ । ଘନ ଘନ ଘୁ ଘୁ ନାଦ । ବାଜୁଥିବ ଦୁନ୍ଦୁଭି ଶବଦ ଯେ ॥ ଆସୁ ଅଳଙ୍କାର ବାଜେଣି ନୂପୁର ଗଡ଼ା ହେବ ତିନିଲକ୍ଷ । ପ୍ରଭୁଙ୍କ ଶ୍ରୀଆଜ୍ଞା

Digitized by srujanika@gmail.com

ଯେତେବେଳେ ହେବ ବନ୍ଧୁଆଣି ଦେବେ ଲୋକ ଯେ । ପିନ୍ଧାଇବେ ଭକ୍ତବୃନ୍ଦ । ଶୋଭା ସୁନ୍ଦର ମନ ଆନନ୍ଦ ଯେ । ୫ । ଚଉଳ ଭୂମର ଦୁଇଲକ୍ଷ ହେବ ଉଲୁଥିବେ ଲକ୍ଷେ ରାଜ । ଅନୁଭବ ଲୋକ ଯେ ଅଛ ସଂସାରରେ ଏହି ପ୍ରତି ବାକ୍ୟ ବୁଝ ଯେ । ଚଉଷଠ ପରି ପ୍ରସ୍ଥା । ଉହ୍ନି ନ ପରି ଅଲେଖ ମାୟା ଯେ ॥ ଛୟଛନୀ ଏ ଯେ ଆବଢ଼ିଣୀ ଚଉଷ ସ୍ବରଲକ୍ଷ ପରିଯନ୍ତ । ସବେ ଏକାବେଳେ ଶୂନ୍ୟକୁ ଟେକିବେ ସ୍ଥୂଳ ହୋଇଯିବ ମର୍ତ୍ତ୍ୟ ଯେ । ଖେଳ ଦେଖୁଥିବ ପୃଥ୍ୱୀ । ମହାନର୍ତ୍ତ୍ୟ ଖେଳେ ସବେ ମାତ୍ତି ଯେ ॥ ଯୋଡ଼ ଯୋଡ଼ ହୋଇ କର ଛନ୍ଦା ଛନ୍ଦ ଲକ୍ଷେ ଅର୍ଘ୍ୟ ସ୍ଥାଳି ଧରି । ସବେ ଏକାବେଳେ ହୁଲହୁଳି ଦେବେ ସବେ ସହସ୍ର କୁମାରୀ ଯେ । ସ୍ତ୍ରୀ ସ୍ତ୍ରୀ ପୁରୁଷ ଏକାନ୍ତ । ସବେ ମଣୁଥିବେ ସମାଚାର ॥ ସ୍ବର୍ଣ୍ଣ ଖମ୍ବାମାନ ଲକ୍ଷେ ପରିଯନ୍ତେ ସୁବର୍ଣ୍ଣେ ତିଆରି ହେବ ରାଜ ଦରବାରରେ ଅନ୍ଧାରର ଜ୍ୱଳ କହୁ ବାରଣ ନୋହିବ ଯେ । ଦିଶୁଥିବ ଯକ ଯକ । ସ୍ୱର୍ଣ୍ଣ ଚମକ ପଡ଼ିବେ ଲୋକ ହେ । ୯ । ନିଶାଣ ଠମକ ବୁଙ୍ଗା ଶିଙ୍ଗା ଭେରୀ ନବଲକ୍ଷ ବାଜୁଥିବ । ଦୁଲୁ ଦୁଲୁ ହୋଇ ନବଖଣ୍ଡ ମଧ୍ୟ ଶବ୍ଦପୁର ଚମକିବ ଯେ । ମେଘ ଗରଜନ ଜାଣି । ଯେହ୍ନେ ସିନ୍ଧୁଲହଡ଼ିର ପାଣି ଯେ ।୧୦। ଠିଆ ହେଲ ଯନ୍ତ୍ର ଠିକେ ଠିକେ ଆସି ହୋଇଲଣି ଅନୁକୂଳ । ଉଚ୍ଚ ନୀଚ ଲୋକଙ୍କୁ ବାରଣ ନ ଯିବେ ବାଜନ ପାଠକ ବଳ ଯେ । ବିଚିତ୍ର ଖେଳ ଦେଖିବ । ଯେତୁ ପିଣ୍ଡେ ପ୍ରାଣ ରଖିଥିବ ଯେ ॥ ଠାକୁର ବିଜୟ କରିଥିବେ ନିଜେ ଶିକଣ ହାତ ଉପରେ । ଲକ୍ଷେ ଷାରମଣି ପଠୁଆର ଥିବେ ତଳ ବେଢ଼ା ପାବଚ୍ଛରେ ଯେ । ଭଣେ ଖାମଅରକ୍ଷିତ । ଏହି ବଚନ ନୁହେ ଅସତ୍ୟ ଯେ ।୧୨।

(ଝ) ହେଙ୍ଗା ଉଚ୍ଚ ଦରବାର । ସୁବର୍ଣ୍ଣ ଇଟା ପଥର । ଲକ୍ଷେକ ଗାଢ଼ ଗୁ ରୁଦା-ଗୁ ରୁଦା ହେବ ତିଆରି ଯେ ।୧୩। ଢାଙ୍କୁଣି କବାଟ ଲାଗି । ଲକ୍ଷେ ଦ୍ୱାରପାଳ ଯଗି । ଚଉକି ପହରା ଦେବେ ଯେ ଦେବେ ଚଢ଼ାଇ ସାଙ୍ଗୀ ଯେ ।୧୪। ଅହିଶ ଲକ୍ଷ ଲୋକ ।

Digitized by srujanika@gmail.com

କାର୍ଯ୍ୟରେ ଲଗିବେ ଦେଖ । ଉଆଁସ ଚଉଁଗମାନ ଯେ ମାନ ହେବ ଵ ଲକ୍ଷ ଯେ । ୧୫ । ନିମ୍ନରକୁ ତିନ ଲକ୍ଷ । ପ୍ରଭୁ ଗହଣିଆ ଲୋକ । ତଳପାଶରେ ଖଟିବେ ସେ ଥିବେ ହୋଇ ପୁଲକ ଯେ । ୧୬ । ସ୍ଥିତି ପାଇବେ ସମସ୍ତେ । ବାଞ୍ଛା କରିଥିବେ ଯେତେ । ଥାଉ ସବେ ସଜ ହୋଇ ସେ ହୋଇ ମଙ୍ଗଳ କୃତ୍ୟ ଯେ ॥ ଦୁଃଖ ଫିଟିବ ଏଥର । ତରଳି ଯିବ ପଥର । ଦସ୍ୟୁ ହେବ ଯମଶତ୍ରେ ସେ ଶତ୍ରୁ ନୁହ କାହାର ଯେ ॥ ଧର୍ମ ପଛେ ନନ୍ଦା ହେଉ । ଧରଣୀ ମଣ୍ଡଳ ରହୁ । ଶୂନ୍ୟ ଧରଣୀ ଆକାଶ ଆକାଶ ଭ୍ରମି ନ ଯାଉ ଯେ ॥ ନବଲକ୍ଷ ତାରାଗଣ । ଧରି ଥିବେ ଦ୍ରୁଲାମାନ । ଗଛ ପାପମାନ ଲଭେ ସେ ଲକ୍ଷେ ଝାଡ଼ ଜାଳଣ ଯେ ॥ ପାଟ ଛନ୍ଦି ଯେ ଅନେକ । ବନ୍ଧୁ ଆଣି ଦେବେ ଲୋକ । ଲକ୍ଷରେ ହେବ ହିସାବ ହିସାବ କରିଣ ଲକ୍ଷ ଯେ ॥ ଫୁଲଗଛ ଯେ ଅନେକ । ପୋତିବେ ମଣ୍ଡଳ ଯାକ । ମୁଠି ଝୁଣ୍ଟକ ଢଳିବ, ଢଳିବ ଏକୁ ଆରେକ ଯେ । ୨୨ । ବ୍ରାହ୍ମଣ ହୋଇବେ ଲକ୍ଷେ । ବେଦ ଉଚ୍ଚାରିବେ ମୁଖେ । ଲକ୍ଷେ ପଣ୍ଡିତ ମଣ୍ଡଳ ମଣ୍ଡଳ ପଢ଼ିବେ ସୁଖେ ଯେ । ୨୩ । ଭ୍ରମି ଯାଉଥିଲ ମନ୍ତ୍ରୀ । ଗୁରୁ ରଖିଲେ ବଞ୍ଚାଇ । ଗ୍ରାମ ଅରକ୍ଷିତ କନ୍ଧ ସେ କନ୍ଧ ଗୁରୁଙ୍କୁ ଧାଇଁ ଯେ ॥

(ମ) ମାଣିକ୍ୟ ଜାଗର ମାଣିକ୍ୟର ଛୁଆ ତିନିଲକ୍ଷ ଗଢ଼ା ହେବ । ଆଲମ୍ବ ବଲମ୍ବ ଦୁଇଲକ୍ଷ ହେବ ପ୍ରଭୁ ଗୁମୁରେ ଲାଗିବ ଯେ । ଜଗତ କରତା ବଜେ କରିଥିବେ ତିନିଶ ହାତ ଉପରେ । ସାକ୍ଷୀ ରୂପେ ଆଉ ସବୁ ଦେଖୁ ଥିବେ ନବରତ୍ନ ମନ୍ଦିରରେ ଯେ । ୨୬ । ରାହାସ ହୋଇବ ମହା ଖେଳ ହେବ ସାତ ଦିନ ସାତ ରାତି । ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଖେଳକୁ ଆସିବେ ଧରିଣ ମାନବ ମୂର୍ତ୍ତି ଯେ । ୨୭ । ଲକ୍ଷ ଲକ୍ଷ ହେବ ସକଳ ସମ୍ଭବ ହଜାର କେ ପଲ୍ଲୁରୁଣ୍ଟି । କରତାଙ୍କ ଖେଳ ବ୍ରହ୍ମାଣ୍ଡେ ଉଠିବ ଏତେ ପରିଯନ୍ତେ ଅଛୁ ଯେ । ୨୮ । ବେଦ-ମାନ ଲକ୍ଷେ ତିଆରି ହୋଇବ ଅଭିଷେକର ସଞ୍ଚାର । ଝରା ପାଟଫୁଲ

Digitized by srujanika@gmail.com

ଗର୍ଣ୍ଣି ଆଣା ବତା ଗ୍ରଏଣି ବେଳନ ମଣ୍ଡର ଯେ ॥ ଆରଙ୍ଗି କେନ୍ଦେଲ ଶିତାର ତାବଲ୍ଲ ଏନ୍ନ ବନ୍ନ ଲକ୍ଷ ହେବ । ମିଙ୍ଗା କାହାଳ ମହୁରି ବାଦ୍ୟମାନ ନବଲକ୍ଷ ବାଜୁଥିବ ଯେ ।୩୦। ଶଙ୍ଖ ଭେରି ତୁରି କାଠି ଝାଞ୍ଜ ତାଳ ଲକ୍ଷେ ପଞ୍ଚପନ୍ତେ ହେବ । ଗିନ ଖଞ୍ଜଣି ପଖାଉଜ ମର୍ଦ୍ଦଳ ନବଲକ୍ଷ ବାଜୁଥିବ ଯେ ॥ ସୁବର୍ଣ୍ଣ ଝୁଣ୍ଟିଆ ସୁବର୍ଣ୍ଣର ଝର ଲକ୍ଷେ ଖଣ୍ଡରେ ନିର୍ମାଣ । ସୁବର୍ଣ୍ଣ କଳସ ଲକ୍ଷେ ଗୋଟା ହେବ ବସି-ଥିବ ମନ୍ଦରେଣ ଯେ । ହୀରା ମାଳା ମୋତି ମାଣିକ୍ୟ ବୈଦୁର୍ଯ୍ୟ ବିଦ୍ୟୁତ୍ ଝଟକ ଶୋଭିତ । ଲକ୍ଷେ ସିଦ୍ଧ ଚଉପାଶେ ଖଟିଥିବେ ମଧ୍ୟ ବିଜୟ ଅନନ୍ତ ଯେ । ୩୩ । ଖେଳ ଉଠାଇବେ ଅଷ୍ଟ ସ୍ତ୍ରୀ ନିଷ୍କାମ ଲେଖାରେ ଲକ୍ଷେ ସଙ୍ଗୀତ । କେବେ ସେ ଶ୍ରୀମହାନଟ୍ୟ ପରିପୂର୍ଣ୍ଣ ଭଣେ ଗ୍ରାମ ଅରକ୍ଷିତ ଯେ । ୩୪ ।



( ୩୦ )

(କ୍ଷ) ଖବ ଖବ ହୋଇ ଉକ୍ତ । ସ୍ବର ଦଗରୁ ବନ୍ଧୁତ । ଆସିବେ ଗ୍ରାମୁକୁ ଗୋ । କ୍ଷୀରସିନ୍ଧୁ ଜଳ ଆଣି । ପଖାଳିବେ ପାଦ ବେନି । ଲଭିବେ ପ୍ରଭୁଙ୍କୁ ଗୋ । ୧ । ହାରି ଗୁହାରି ବୁଝିବେ । ଦୋଷ ପାତକ ଖଣ୍ଡିବେ । ବ୍ରହ୍ମ ଅନଳରେ ଗୋ । ସ୍ବରଧର୍ମ ଆଦ-ଳରି । ସର୍ବେ ନର ଦେହ ଧରି । ବସିବେ ସଭାରେ ଗୋ ।୨। ସତ୍ୟ କହିବେ ସମସ୍ତେ । ଦୋଷ କରିଥିବେ ଯେତେ । ନ କରି ଗୁପତ ଗୋ । ମିଥ୍ୟା କହିଲେ ମୁଖରେ । ଲଜ୍ୟା ପାଇବେ ସଭାରେ । ବଜ୍ର ତୁଲେ ପାତ ଗୋ । ୩ । ସିଦ୍ଧାନ୍ତ ପୁରୁଷମାନେ । ବସିଥିବେ ସଭା ସ୍ଥାନେ । ଧର୍ମ ପାଞ୍ଜି ଘେନି ଗୋ । ସ୍ବର୍ଗ ଭୁବନର ସଭା । ମର୍ତ୍ତ୍ୟ ମଣ୍ଡଳରେ ହେବା । ଆସୁଛି ମେଦିନୀ ଗୋ । ୪ । ଶ୍ରୀମତୀ ଶ୍ରୀମହା-ରାଣୀ । ଲକ୍ଷେ ଘର ଧୁନା ଘେନି । ଆସିବ ଗ୍ରାମୁକୁ ଗୋ । ସମସ୍ତ ପଣ୍ଡ ପାଇବେ । ଜପାଧେ ଟିକିଏ ନ ଥିବେ । ଅର୍ଣ୍ଣବ ସଭୁଙ୍କୁ ଗୋ । ୫ ।

Digitized by srujanika@gmail.com

ବ୍ରହ୍ମା ରୁଦ୍ରାଦି ଇନ୍ଦ୍ରାଦି । ବରୁଣ କୁବେର ନିଧି । ନର ଦେହ ଧରି ଗୋ । ଜଳ ଅଗ୍ନି ପବନାଦି । ନଇରୁତ ସମୀରାଦି । ସଭା ମଧ୍ୟ ପୂରି ଗୋ ॥ ଲଗିବ ଅନନ୍ତ ସଭା । ପାପ ପୁଣ୍ୟ ବୁଝା ହେବା । ଯେ ଥିବ ସେକାଳେ ଗୋ । ଅପରତେ କରୁଅଛ । ସତ କୁ ମିଥ୍ୟା ମଣୁଛ । ଶୁଣିଥା ସକଳେ ଗୋ । ୮ । ରମ ଉତ୍ତର ଦୁଆରେ । ଶ୍ରୀ କୃଷ୍ଣଚନ୍ଦ୍ର ପୂର୍ବରେ । ହୋଇବେ ଦୁଆର ଗୋ ॥ ଦକ୍ଷିଣରେ ଜଗନ୍ନାଥ । ପଶ୍ଚିମ ଦ୍ୱାରେ ଅନନ୍ତ । ହେବେ ପଞ୍ଚଦ୍ୱାର ଗୋ । ୮ । ଯନ୍ତ ସନ୍ତ ଦୁଇଲକ୍ଷ । ଆବର ଭକ୍ତ ଅନେକ । ସଭାମଣ୍ଡପରେ ଗୋ ॥ ଧର୍ମକୁ ସ୍ମରି କହିବେ । ନ କହିଲେ ଦ୍ରୋହୀ ହେବେ । ସେଡକ ବେଳରେ ଗୋ । ୯ । ମନୁଷମାଙ୍କୁ କଳିଯୁଗେ । ଆଶ୍ରିତ କଲେ ବଞ୍ଚିବେ । ଭିନବାର ସତ୍ୟ ଗୋ ॥ ଧ୍ୟାଇ ଅଭୟ ଚରଣ । ଚିତ୍ତ ଦେଇ ଅନୁକ୍ଷଣ । ଶ୍ରୀମ ଅରକ୍ଷିତ ଗୋ । ୧୦ ।

(ଭ) ଭାଇ ବନ୍ଧୁମାନ ଗୁଡ଼ । ମହାନଦୀ ପ୍ରାୟ ଆସିବେ ମାଡ଼ି ଗୋ । ବ୍ରହ୍ମାଣ୍ଡେ ପଡ଼ିବ ହୁରି, ସୁଜନେ ଗୋ ॥ ବାଉନ ପାଟକ ଜାତି, ଛତିଶ ପାଟକ ଯେତେ ଅଛନ୍ତି ଗୋ । ସର୍ବେ ହେବେ ସମକ୍ଷିତି ସୁଜନେ ଗୋ ॥ ଫିଟିଲିଣି ଆସି କଥା । କହି ଦେଉଛୁ ଆଗତ ବାରତା ଗୋ । ସର୍ବେ ହୋଇଥାଅ ଚେତା, ସୁଜନେ ଗୋ ॥ ପଶ୍ଚିମ ଦିଗୁ ଭକତ । ଖଣ୍ଡ ଖଣ୍ଡ ହୋଇ ପଦ୍ମ ମର୍ଦ୍ଦିଳେ ଗୋ । ଆସିବେ ସେ ଅପ୍ରମିତ, ସୁଜନେ ଗୋ ।୧୪। ନାଗାନ୍ତ ଯୋଗାନ୍ତ ଋଷି । ବେଦାନ୍ତ ସିଦ୍ଧାନ୍ତ ଯେତେ ତପସି ଗୋ । ଭେଟ ହେବେ ସର୍ବେ ଆସି, ସୁଜନେ ଗୋ ॥ ଧରିବ ନାହିଁ ବ୍ରହ୍ମାଣ୍ଡ । ପୁରି ରହିବ ଯମ୍ଭୋଖାପ ଖଣ୍ଡ ଗୋ ଏକାଠାରେ ହେବେ ରୁଣ୍ଡ, ସୁଜନେ ଗୋ । ଦକ୍ଷିଣ ଦିଗ ଭକତ । ଲେଖାରେ ହେବ ଖଣ୍ଡ ପଞ୍ଚଶତ ଗୋ । ନ ମିଳିବ ଆଦିଅନ୍ତ, ସୁଜନେ ଗୋ । ୧୭ । ଆଠ ମାଡ଼ ବସିହେବେ । ପୃଥ୍ୱୀ ଷୋଳକଣ ଉପରେ ଲମ୍ବେ ଗୋ । ଏକା ମନୁଷମାଙ୍କ ଭାବେ, ସୁଜନେ ଗୋ ॥

Digitized by srujanika@gmail.com

ତାର ନେବେ ଭକତଙ୍କୁ । ଉଦେ ହୋଇଛନ୍ତି କଳିଯୁଗକୁ ଗୋ । ସତ୍ୟଯୁଗ କରିବାକୁ, ସୃଜନେ ଗୋ । ୧୯ । ଅଣାକାର ପ୍ରଭୁ ବିଜେ । ଖେଳ ଉଠାଇବେ ଯୋଗମାୟା ସୂତ୍ରେ ଗୋ । ମହାନାଟ୍ୟ ସେହୁ ଠାବେ; ସୃଜନେ ଗୋ । ୨୦ । ଡୋକାଇଲାଣି ଆସି ବେଳ । ଆରମ୍ଭିବେ ମହା ନାଟ୍ୟର ଖେଳ ଗୋ । ସମୁଦ୍ର ପରି ଚହଲ, ସୃଜନେ ଗୋ । ୨୧ । ଡୋଳାରେ ଦେଖିବ ନଷ୍ଟେ । କହେ ଖ୍ରିମ ଭିକ୍ଷା ପାମର ଜଣେ ଗୋ । ଯେଉଁ କଥା ହେବ ମଞ୍ଚେ, ସୃଜନେ ଗୋ । ୨୨ ।

(୦) ଠୁଳ ହୋଇବେ ବ୍ରହ୍ମାଣ୍ଡେ ଯେତେକ ଭକତ । ଦାସ ଦାସୀ ଘେନି ପ୍ରଭୁ ବିଜେ ମହାନାଟ୍ୟ ।୨୩। ତାଙ୍କ ରହୁଥାଅ ସର୍ବେ ଚିଆ ଯେ କରିଣ । କଳିଯୁଗେ ଗୁରୁସ୍ୱାମୀ ବିଜେ ଏ ମର୍ତ୍ତ୍ୟକୁ । ୨୪ । ନାମ ମାତ୍ର ଖେଳ ହେବ ଏ ମର୍ତ୍ତ୍ୟ ମଣ୍ଡଳେ । ସେହୁ ଜନମ ହେଲେଣି ଏ ନର ଅଙ୍ଗରେ ॥ ଝାବଡ଼ା ବଦନ ଯେତେ ଝଡ଼ିବ ସକଳ । ସାର ବ୍ରହ୍ମ ମଞ୍ଜି ଯେହୁ ରହିବ ସେ ଫଳ । ୨୬ । ଯମ ରାଜା ଶ୍ରୀଗୁରୁ ଆଜ୍ଞାରେ ଖଟିଥିବ । ଯୁବାକାଳ ବୟସରେ ମରଣ ଘଟିବ । ୨୭ । ଛପନା କୋଟିକ ଘେନି ପ୍ରଭୁ ସଙ୍ଗେ ଥିବେ । ଅଲେଖ ମହିମା ସେହୁ ଭଜନ କରିବେ । ୨୮ । ସୁରଯୁଗ ଭକ୍ତ କଳିଯୁଗରେ ଜନମ । ଜାଣି କରୁଥିବେ ଏକା ମହିମାଙ୍କ ନାମ ।୨୯। ଉତ୍ତର ଦିଗରୁ ଭକ୍ତ ହାରେ ଆସି ମିଳି । ଉଠାଉଥିବେ ସେ କଥା ବାରଖଣ୍ଡ ସ୍ଥଳି । ୩୦ । ଘର ତେଜ୍ୟା କରି ପୂର୍ବ ବାସନାକୁ ଘେନି । ନଯୋଗେ ଖଟିବେ ଆସି ଦକ୍ଷିଣ ପଶ୍ଚିମ ॥ ଗଡ଼ କାନ୍ଥେ ଭକ୍ତ ସାତ ପରସ୍ତ ବେଢ଼ିବେ । ଏକ୍ଳେଶ କୋଶ ଲମ୍ବ ବଜାର ବସାଇବେ ।୩୨। କ୍ଷିତି ମଧ୍ୟେ ସତ୍ୟ ଧର୍ମ ପ୍ରକାଶ ହୋଇବ । ପ୍ରଭୁ ମହିମା ଦେଖିବ ଯେଉଁମାନେ ଥିବ ॥ କର୍ତ୍ତା ପୁରୁଷଙ୍କୁ ଧାଇ ଖ୍ରିମ ଅରକ୍ଷିତ । ଗୁପ୍ତ ଲୀଳା ବ୍ରହ୍ମାଣ୍ଡରେ ହୋଇବ ବିଖ୍ୟାତ । ୩୪ ।

—*—

Digitized by srujanika@gmail.com

( ୩୧ )

(କ) କର୍ମକୁ ନ କଲେ କାମନା ସିଦ୍ଧ ହୁଅଇ ନାହିଁ । ଝିପ୍ସା-ସ୍ଥାନ ହୋଇ ଗଲେରେ ବଉଳ, ଏହୁ ନବଖଣ୍ଡ ମଧ୍ୟ ।୧। କ୍ଷମା କରି-ବାକୁ କେହୁ ନାହିଁ ନା ସଂସାରେ । ଖରପ ବାଟେ ଚାଲିଲେ ରେ ବଉଳ, ସବେଁ ଅମାନ୍ତ ଆଗ୍ରହରେ ।୨। ଗୁରୁ ବୋଲି ଜ୍ଞାନକୁ ଯେ ନ ପାରିଲେ ଚିହ୍ନି ଗୀତା ଶାସ୍ତ୍ର ପଢ଼ୁଛନ୍ତିରେ ବଉଳ, ସବୁ ଗୀତ ପ୍ରାପ୍ତେ ମଣି ॥ ଘରେ ଘରେ ପଶି ମର ଋଷି ଯନ୍ତ୍ର ହରିଲେ । ଘର କରି ମାଳା ଝିଅରେ ବଉଳ, ବଉଳ ଲୋକ ବୋଲାଇଲେ ।୪। ଡମବ ହୋଇ ମାଗିଲେ ପର ଧନ ପଣେ । ଆରମ୍ଭ ଦେଖାଉଛନ୍ତି ରେ ବଉଳ, କଳିଯୁଗ ପ୍ରାଣୀମାନେ ॥ ଚାଲି ନ ପାରିଲେ କେହୁ ବେଦାନ୍ତ ମାର୍ଗରେ ଚେତ ଛକନ୍ତି ନୋହିଲେରେ ବଉଳ, ନାମ ଅଲେଖ ଧର୍ମରେ । ୬ । ଛପାଇ ଦେଲେଣି ଭାବ ସତ୍ୟାଦ୍ଧ ଧର୍ମକୁ । ଛତା ଗୁଳ କରୁଛନ୍ତିରେ ବଉଳ, ଅଣଗୁଣ ପବନକୁ ॥ ଜାଣୁ ଜାଣୁ ଆଗ ପଛ ନ ଜାଣି ପାରିଲେ । ଯୋଗାନ୍ତ ମାର୍ଗ ନ ଚାଲି ରେ ବଉଳ, ମନେ ବଡ଼ିମା ବହିଲେ । ୮ । ଝଗଡ଼ା କରୁଅଛନ୍ତି ସତ୍ୟାଦ୍ଧ ଧର୍ମରେ । ଝାଡ଼ି ବଣେ ପଶିଗଲେ ରେ ବଉଳ, ତାଙ୍କ ଇଚ୍ଛାର ସୁଖରେ ॥ ନୀଚ ଲୋକମାନେ ହୋଇ ଉଚ୍ଚକର୍ମ କଲେ । ଉଚ୍ଚ ଲୋକମାନେ ହୋଇ ରେ ବଉଳ, ନୀଚ କର୍ମ ଆଚରିଲେ । ୧୦ । ଟାଣେ ଉରବ କଲେଣି ମହିମା ନାମକୁ । ଟୋକା ଟୋଇଲା କଲେଣି ରେ ବଉଳ, ବ୍ରହ୍ମ ଯୋଗୀନ୍ଦ୍ରମାନଙ୍କୁ ॥ ଠାକୁର ବୋଲି ଗୁରୁଙ୍କୁ ନ ଚିହ୍ନିଲେ କେହୁ ଠିକେ କହେ ଗ୍ରାମ ଜନ୍ଦରେ ବଉଳ, ଭିନପୁରରେ ଡାକ ଦେଇ ।୧୨।

(ଡ) ଡୋଲେ ଦେଖି ଲୋକ ବାନା ନ ପାରିଲେ ଚିହ୍ନି । ଡକାଇତ ଚୋରର ଏହୁରେ ବଉଳ, ଧରି ମାର ବୋଇଲେଣି ।୧୩। ଢାଉଟାଙ୍କ ରୂପ ଦେଖି ତମାଲରେ ମାତି । ତମ ପସରରେ ପଡ଼ିରେ ବଉଳ, ଗୁଡ଼ିଲେଣି ଧର୍ମ ମାତି ।୧୪। ଅନ୍ଧାକାର ଧାନ୍ଧା ବୋଲି ଜାଣି

Digitized by srujanika@gmail.com

ନ ପାରିଲେ । ଅଶ୍ୱଥମାନଙ୍କୁ ଦେଖିରେ ବଉଳ, ଦୁଃଖ କଷଣ ବଢ଼ିଲେ ॥ ୮ଶବା ଚିଥକୁ କେହି ଧରି ନ ପାରିଲେ । ନିଦ୍ରା ଗୁଣେ ସ୍ତ୍ରୀ ସଙ୍ଗରେ ବଉଳ, ବିଷ ଦିବସ ମାତିଲେ ।୧୬। ଥାନ ଛଥି ଭାଙ୍ଗି ସବୁ ଅନ୍ୟାୟ କଲେଣି । ଥାନ ଥିବା ଲୋକମାନେ ରେ ବଉଳ, ମେତ ଅଥାନ ହେଲେଣି ।୧୭। ଦୟା ଶାନ୍ତ ଶୀଳ କ୍ଷମା ନାହିଁ ନା କାହାରି । ଦେଇଥିବା ପଦାର୍ଥକୁ ରେ ବଉଳ, କେଉଁଠି ନେଲେଣି ଫେରି ॥ ଧର୍ମ ପଥ ଛାଡ଼ି ଦେଇ ଅଧର୍ମକୁ ଗଲେ । ଧାରଣାକୁ ଛାଡ଼ି ଦେଇ ରେ ବଉଳ, ଶଠ କର୍ମରେ ଭୁଲିଲେ ॥ ନିନ୍ଦାକରି ସାରିଲେଣି ମହିମା ନାମକୁ । ନାମେ ଅପରାଧୀ ହେଲେ ରେ ବଉଳ, ବୁଡ଼ାଇଲେଣି ଚେତାକୁ ।୨୦। ପୁଣ୍ୟ ପଥ ଛାଡ଼ି ଦେଇ ପାପ କର୍ମ କଲେ । ପବିତ୍ର ନୋହିଲା ଦେହରେ ବଉଳ, ଅଶୁଦ୍ଧତା ବୋଲାଇଲେ ॥ ଫେଡ଼ି କହୁଅଛୁ ଆମ୍ଭେ ଗୁପତ ନ କରି । ପ୍ରିସାଦିଆ ହୋଇଗଲେ ରେ ବଉଳ, ପରଧନ ହରିକରି । ୨୨ । ବେଦ ଶାସ୍ତ୍ର ପଢ଼ା ଲୋକ ବାତୁଳ ହେଲେଣି । ଉଚିତ କର୍ମ ନ ଭୁଲିରେ ବଉଳ, ଗଧ ଘୁଷୁରି ହେଲେଣି । ୨୩ । ଗ୍ରାମ ଅରକ୍ଷିତ ହେବେ ମନେ ଭାଳି ଭାଳି । ଭବ ସାଗରକୁ ଦେଖିରେ ବଉଳ, ଭୟ ମୋତେ ମାଡ଼ିଲାଣି । ୨୪ ।

(ଙ) ମହତ କୁଳ ବୁଡ଼ାଇ ମାତିଲେଣି ସର୍ବେ । ମାୟା ମୋହ ଘୋଟିଲାଣିରେ ବଉଳ, ଜଣ ଜଣ କରି ଭାବେ । ୨୫ । ଜାତି ଗୋତ୍ର କୁଳ ଧର୍ମ ନାହିଁ ନା କାହାରି । ନାମରେ ଯୋଗ୍ୟ ନୋହିଲେ ରେ ବଉଳ, ଡେଇଁ ଗଲେଣି ବାହାରି ॥ ଋଷି ବଚନ ମାନକୁ ପିଙ୍ଗି ଦେଇ ସବୁ । ରଙ୍ଗ ପ୍ରତିମାକୁ ଦେଖିରେ ବଉଳ, ବୋଲୁଛନ୍ତି ଏହି ପ୍ରଭୁ । ଲମ୍ପଟିଆ ହୋଇଲେଣି ସମସ୍ତେ ସଂସାରେ । ଲୋଭ ମୋହ ଘୋଟିଲାଣିରେ ବଉଳ, ହୀନ ହେଲେଣି କର୍ମରେ ॥ ଏଣୁ ପ୍ରାୟେ ମଣି-ଲେଣି ଶ୍ରୀଗୁରୁ ବଚନ । ବୁଦ୍ଧି ଅବିବେକରେ ବଉଳ, ହୋଇଲେଣି ହୀନମାନ । ୨୯ । ଶୋଇ ପଡ଼ୁଛନ୍ତି ଚେତା ନାହିଁ ନା କାହାରି ।

Digitized by srujanika@gmail.com

ସରାପ ମଦରା ପାନେ ରେ ବଉଳ, ନିଦ୍ରା ଘୋଟିଲାଣି ଘୋର ॥ ସନ୍ଥ ବଚନମାନଙ୍କୁ ନିନ୍ଦିଲେ ସକଳ । ସମୁଦ୍ର ପରାଏ ମିଥ୍ୟାରେ ବଉଳ, ଘୋଟିଲାଣି ବେଳୁ ବେଳ ॥ ସୁରାପାନ ମାତ୍ର ଆଦି ହରଣ ବିଶେଷ । ସବୁ କରି ପାରିଲେଣିରେ ବଉଳ, ଅର୍ଜିଲେଣି ପାପ ଦୋଷ । ୩୬ । ବ୍ରିତ କର୍ମ ଗୁଣ୍ଡ ଦେଇ କଲେ ହାଣ୍ଡି ବୃତ୍ତି । ହରାଇ ପୂର୍ବ ସୁକୃତରେ ବଉଳ, ହୋଇଲେଣି ଅଧୋଗତି । ୩୭ । କ୍ଷମାନିଧି ସାଗର ପ୍ରଭୁ ବିଜେ କରିଛନ୍ତି । କ୍ଷମେ ଭଣେ ଶ୍ରୀମ ସେନ ରେ ବଉଳ, ସର୍ବ ଜୀବନର ପତି । ୩୮ ।

—୦—

( ୩୨ )

(କ୍ଷ) କ୍ଷିତି ମଧ୍ୟେ ପାପ ଭରା ହୋଇଲାଣି ଯେତେ । ଖଣ୍ଡନ ହେବ କି ରୂପରେ ବଉଳ, ହେବୁ ନାହିଁ କାର ଚିତ୍ତେ ।୧। ହାସ୍ୟ କଲ କରିଲେଣି ସତ୍ୟାଦି ଧର୍ମକୁ । ହିଂସାବାଦେ ଧନ ନେଲେ ରେ ବଉଳ, କଳିଯୁଗେ ଦେଖୁ ଦେଖୁ ॥ ଶାନ୍ତଶୀଳ ଦୟା କ୍ଷମା ନାହିଁନା କାହାରି । ସଦଜ୍ଞାନ ହିଡ଼ ଗଲେ ରେ ବଉଳ, ସର୍ବେ ହେଲେଣି ଦୋଷୀ ॥ ସତୀ ସ୍ତ୍ରୀମାନେ ସବୁ ଦୋଷୀ ହେଲେଣି । ସଙ୍ଗମ ପର ପୁରୁଷରେ ବଉଳ, ଧର୍ମକୂଳ ବୁଡ଼ିଲାଣି ।୪। ଶିଷ୍ଟ ଭ୍ରଷ୍ଟ ହୋଇଲାଣି ନବଖଣ୍ଡ ମହୀ । ସରି ଗଲାଣି ବ୍ରହ୍ମାଣ୍ଡରେ ବଉଳ, ଯାଣିବାକୁ ନାହିଁ କେହି ॥ ବ୍ରାହ୍ମଣ ବୈଷ୍ଣବ ବେଦ ବାକ୍ୟ ନ ମାନିଲେ । ବିହିତ କର୍ମ ଗୁଣ୍ଡବାରୁ ରେ ବଉଳ, ମହାପାପୀ ବୋଲାଇଲେ । ୬ । ଲାଗିଲାଣି ପାପ ଦୋଷ ନବଖଣ୍ଡ ମହୀ । ଲକ୍ଷ୍ମୀ ପଡ଼ିଲାଣି ମଥାରେ ବଉଳ, ଡାକିଲାଣି କାଳ ଅହି ॥ ଉଜ୍ଜବିଣ୍ଟ ହୋଇ ସ୍ତ୍ରୀ ସ୍ୱ ବେଭାର ନ କଲେ । ନଗରସ୍ଥ ସେବା ନକରି ରେ ବଉଳ, ତେଣୁ ଦୁଷ୍ଟାଚାରୀ ହେଲେ । ଯୁବତୀ ରତନ ହୋଇ ନୋହିଲେ ସୁଶୀଳ । ଗେରସ୍ତଙ୍କୁ ଗୁହିଁକରି ରେ ବଉଳ, ନ ବଞ୍ଚିଲେ ଧନ କାଳ । ୯ । ମାତା ପ୍ରାପ୍ତ ପୁରୁଷଙ୍କୁ

Digitized by srujanika@gmail.com

ଆଦର ନ କଲେ । କହେ ଗ୍ରାମ ଅରକ୍ଷିତ ରେ ବଢ଼ିଲ, ପଣ୍ଡା ଅପରାଧୀ ହେଲେ । ୧୦ ।

(ଭ) ଭବ ଭକତ ନ କରି ହୋଇଲେ ଅଜ୍ଞାନୀ । ଭବ କୂପେ ପଡ଼ି କରି ରେ ବଢ଼ିଲ, ସାତ ଧୂ ରୁକ୍ଷ ଗଲେଣି । ୧୧ । ବାଉନ ପାଠକ ଜାତି ଅନ୍ୟାୟର କଲେ । ବ୍ରହ୍ମ ହତ୍ୟା ଗୁରୁ ହତ୍ୟା ରେ ବଢ଼ିଲ, ପାପମାନ ଅରଜିଲେ । ୧୨ । ମୂଳ ପଣ କରି ଭ୍ରମ କଥାକୁ ଶିଖିଲେ । ଫେଡ଼ ଅଙ୍ଗରୁ ବସନ ରେ ବଢ଼ିଲ, ବଳେ ମହାଭାଙ୍କୁ ଦେଲେ ॥ ପଣ୍ଡିତ ସିଦ୍ଧାନ୍ତ ପୋଥି କେହି ନ ପଢ଼ିଲେ । ପାପ ପଙ୍କେ ବୁଡ଼ ବୁଡ଼ ରେ ବଢ଼ିଲ, ଆତପାତ ନ ଜାଣିଲେ । ୧୪ । ନବ ଯୁବା ସ୍ତ୍ରୀମାନେ କାମେ ଜର ଜର । ଘର ଗେରସ୍ତଙ୍କୁ ଛାଡ଼ିରେ ବଢ଼ିଲ, ଲୋଡ଼ିଲେଣି ନୂଆ ବର । ୧୫ । ଧରଣୀରେ ପାପ ଦୋଷ ଘୋଟିଲାଣି ଯେଣୁ । ଧର୍ମକୁଳ ଉଭା ଗଲାରେ ବଢ଼ିଲ, କଳି ଉଦେ ହେଲା ତେଣୁ । ଦରଶନ କେହି ନାହିଁ କଲେ ଗୁରୁ ପାଦେ । ଦଗ୍ଧ ହେଉଛନ୍ତି ରେ ବଢ଼ିଲ, ଦୁର୍ବିପାକ ଚଳିଲେ ବ ।୧୭। ସ୍ତନ ଯଉବନ ପର ପୁରୁଷକୁ ଦେଲେ । ଘର ଗେରସ୍ତକୁ ଛାଡ଼ି ରେ ବଢ଼ିଲ, ଦୋସ୍ତରୁଣୀ ପଣ କଲେ । ୧୮ । ସ୍ତ୍ରୀ ହତ୍ୟା ବାଳ ହତ୍ୟା କରି ହେଲେ ଦୋଷୀ । ଜନ୍ମପୁର ବୁଡି ଗଲା ରେ ବଢ଼ିଲ, ମାୟା ସାଗରରେ ଖସି ॥ ଅଣ ଅକ୍ଷର ଅଲେଖ ନାମ ନ ଜାଣିଲେ । ଅଣ ସୁଖ ପାଇଲେଣି ରେ ବଢ଼ିଲ, ଗୁରୁ ମହିମା ବୋଇଲେ । ୨୦ । ଡେଲା ଫିଙ୍ଗି ଦେଲେ ସବେ ଅନ୍ଧ ଅଙ୍ଗକୁ । ଭୋକିଲାଣି କାଳକୂଟ ରେ ବଢ଼ିଲ, ଏବେ ଆସି ଦେଖୁ ଦେଖୁ । ୨୧ । ଭଙ୍ଗର ବୋଲାଣ ଉକାଇତ ପଣ କଲେ । ତାଙ୍କ କହେ ଗ୍ରାମସେନ ରେ ବଢ଼ିଲ, ନାମ ଯାଚିଲେ ନ ନେଲେ । ୨୨ ।

(ଠ) ଠିକ ଲୋକମାନେ ଠକ ବୁଦ୍ଧି ଆଚରିଲେ । ସଭା ମଧ୍ୟେ ମିଛ କହିରେ ବଢ଼ିଲ, ଧର୍ମ ଅପରାଧ ହେଲେ । ୨୩ । ଟୋକା

Digitized by srujanika@gmail.com

ଟୋଇଲ ଖରପା ସଙ୍ଗତେ ମାତିଲେ । ବଗ ବେହଲେ ଖରଯାକୁ ରେ ବଉଳ, ଅଣ ଆଦରଣ କଲେ । ୨୪ । ନଣି ଦିବସରେ ବେଶ୍ୟା ସଙ୍ଗତରେ ମାତି । ନର ଦେହେ ଜନ୍ମ ପାଇ ରେ ବଉଳ, ନ ଜାଣିଲେ ଜ୍ଞାନ ଗତି । ୨୫ । ଝାବଡ଼ା ହୋଇ ଚନ୍ଦ୍ର ଇନ୍ଦ୍ରିୟ ଇନ୍ଦ୍ରେ । ବାଞ୍ଛା କରି ରହିଛନ୍ତି ରେ ବଉଳ, ଅବଧୂତ ଅଣାକାର । ୨୬ । ଜୋଟା ମାଡ଼ି ଜଗନ୍ନାଥ ଦେଉଳେ ପଶିଲେ । ଦେବାଳୟ ସ୍ଥାନେ ପଶିରେ ବଉଳ, ପାନପିକ ପକାଇରେ ॥ ଗୁଣ୍ଡିଗଲେଣି ଦେବତା ନାହିଁ ନା ପଥରେ । ଛେଳି ବୋଦା ରଜ ରଜରେ ବଉଳ, ହାଣୁ ଅଛନ୍ତି ବୃଥାରେ । ୨୮ । ଶିଦାନନ୍ଦ ଚରଣରେ ନୋହିବେ ଭକତି । ଗୈର ଖଣ୍ଡ ବ୍ରହ୍ମାଣ୍ଡରେ ରେ ବଉଳ, ହୋଇଲେଣି ଶିବ ଦ୍ରୋହୀ । ୨୯ । ଅନୁକ୍ଷଣେ ସ୍ତ୍ରୀ ସଙ୍ଗେ ହୋଇଲେଣି ବାଇ । ଆୟୁଷ ଭୁଞ୍ଜି ଯାଉଛି ରେ ବଉଳ, ନାହିଁ ଜାଣିବାକୁ କେହି । ୩୦ । ଘୋଡ଼ା ଗାଈ ଗଧ ଛେଳି ପର ଏକ ହୋଇ । ପ୍ରବନ୍ଧନ ରଚି କଲେ ରେ ବଉଳ, କେତେ ଖଟିବ ତୋ ଦେହି । ୩୧ । ଗାରମା ପଣରେ ଗରବତା ବହିଲେଣି । ବାନାକୁ ନ ଚିହ୍ନି କରି ରେ ବଉଳ, ଦୋଷ କରି ସାରିଲେଣି । ୩୨ । ଖଚୁଆ ମିଛୁଆ ସବୁ ମେଳ ହୋଇଲେଣି । ଖଳକୁଟ ପାଞ୍ଚ କରି ରେ ବଉଳ, ଏକମେଳ ହୋଇଲେଣି । ୩୩ । କଉଳୁକ ମଣିଲେଣି ମହିମା ଧର୍ମକୁ । କହେ ଭୀମ ଅରକ୍ଷିତ ରେ ବଉଳ, ହୃଦେ ସୁମରି ଗୁରୁଙ୍କୁ । ୩୪ ।

—o—

( ୩୩ )

(କ) କଳଯୁଗେ କରତା ଅବଧୂତ ମୂର୍ତ୍ତି । କର୍ମକୁ ତେଜ ଦୃଢ଼ ଭଜ ସତ ପନ୍ଥ । ୧ । କ୍ଷିତି ମଣ୍ଡଳେ ନାମ ହୋଇଛି ପ୍ରକାଶ । କ୍ଷମାସାଗର ସ୍ୱାମୀ ଅନାଦି ପୁରୁଷ ।୨। ଗଜଗଞ୍ଜନ ବାନା ଉଦୟେ ସଂସାରେ । ଜ୍ଞାନ ବସ୍ତ୍ରାଛନ୍ତି ବୁଦ୍ଧ ଅବତାରେ । ୩ । ଯେଉଁ ପିଣ୍ଡକୁ

Digitized by srujanika@gmail.com

ଘଟେ ଘଟେ ଛନ୍ତି ପୂରି । ଘୋର କଳିଯୁଗରେ ନର ଦେହ ଧରି । ୪ । ଅନନ୍ତ ପୁରୁଷ ସେ ଅନ୍ତର୍ଯାମୀ ନାମ । ଅନୁସରି ଭଜିଲେ ନ ଦଣ୍ଡିବ ଯମ । ୫ । ଚେତଣ ଉଠି ତୁହି ଦେଖ ଦେଖି ବେନ ଡୋଳେ । ଶଙ୍ଖ ଚାଳିଲେ ମୋକ୍ଷ ହେବ ଏତେ ଦେବ ବୋଲେ ॥ ଗୁରୁଗଣ ଧର୍ମକୁ ଟେକି ରକ୍ଷା କଲେ । ଷଣ୍ଡ ଦେହ ଉପରୁ ଓହ୍ଲାଇ ଆସିଲେ । ୭ । ଯୋଗୀ ବେଶରେ ବାହ୍ୟ ଆଶ୍ରେରେ ଅତିଥ । ଜଗତ କରତା ସେ ଜାଣନ୍ତି ଆଗତ । ୮ । ଝାଡ଼ର ଭିତରେ ଜୀବ ଝଞ୍ଜକାରେ ପଡ଼ି । ଝଡ଼ ପଡ଼ିବ ପିଣ୍ଡ ହଂସା ଗଲେ ଉଡ଼ି । ୯ । ନସତ ନୋହି ନାମବ୍ରହ୍ମ ଆଶ୍ରେ କର ନୂଆ ହୋଇବ ନିଶ୍ଚେ ନବୀନ ଶରୀର । ୧୦ । ଟଳ ନ ଯିବ ଟାଣେ ଧରି ବସିଥିବୁ । ଟାକଥିଲେ ଟିଆକୁ ନିଶ୍ଚୟ ଭେଟିବୁ । ୧୧ । ଠେଲ ମିଛୁରେ ନ ଭସି ଠାବକୁ ବାଞ୍ଛିତ । ଠିକକୁ ଠାର କହେ ସ୍ୱାମ ଅଲକ୍ଷିତ । ୧୨ ।

(ଡ) ଡୋଳାରେ ଦେଖୁ ଦେଖୁ ଉର କାହାକୁ । ଡେଙ୍ଗୁରି ଶୁଭୁ ପଛେ ଭଜ ମହିମାକୁ । ୧୩ । ଡାକୁଣୀ ପିଟିଅଛୁ ଢାଳ ନେଇ ଯାଅ । ଢମକୁ ଗୁଡ଼ ଢାଳ ମକରନ୍ଦ ପିଅ ॥ ଅଣ ଅକ୍ଷର ଆଦ ହୃଦେ କରି ଲୟ । ଅବାଟେ ନ ଯିବୁ ନ ଥିବ ତୋର ଭୟ ॥ ତରି ଯିବାକୁ ତର ନାହିଁ ତୋର ଶରୀରେ । ତମିର ଘୋଟି ଆସିଲାଣି ଅପ୍ରମିତେ ।୧୬। ଥମ୍ଭିଛନ୍ତେ ଥରୁଛୁ ଚଉଦ ଭୁବନ । ଥପ୍ୟରେ ନାହିଁ କେହି ନରଦେବ ଗଣ ॥ ଦନକୁନ୍ଦନ ପଡ଼ୁଅଛି ଦୁରିଦନ୍ତ । ଦୁଲୁକୁଅଛି ଦଗ ଜମ୍ବୁଦ୍ୱୀପ ଖଣ୍ଡ ॥ ଧ୍ୟାନ ନ କରି ଧାରଣାକୁ ଭାଙ୍ଗୁଛନ୍ତି । ଧରଣୀ ଧର୍ମ ଲଙ୍ଘି ସବେ ଯାଉଛନ୍ତି ॥ ନାମ ନ ଯାଣି ନଷ୍ଟେ କନ୍ଦୁଛନ୍ତି ମିଛ । ନପାରି ନିନ୍ଦାକରି ଭକ୍ଷି ମଦ ମାଂସ ।୨୦। ପରମ ଗୁରୁଦେବ ପବିତ୍ର ପମରି । ପ୍ରାଇବ ପୁଣ୍ୟ କଲେ କରିଥା ଆଶରି ।୨୧। ଫୁଲପଣ ଫନ୍ଦାରେ କରୁଛ ଗରବ । ଫୁଲ ଫୁଟିଛି ଫଳ ନିଶ୍ଚୟ ଧରିବ । ୨୨ । ବାଉଳ ପ୍ରାପ୍ତ ହୋଇ ବୁଦ୍ଧି ନରୁଅଛୁ । ବଡ଼ମା ପଦେ ବାରିନଧିରେ ପଶୁଛୁ । ୨୩ ।

Digitized by srujanika@gmail.com

ଭରସା ଅଛି ଯେବେ ଜୀବକୁ ବସନ୍ତ । ଶ୍ରୀମ ଅର୍ପିତ କହେ ଦୂରୁ ଅପମର । ୨୪ ।

(ମ) ମନ ଭିତରେ ନିଜ ମହିମା ପ୍ରକାଶ । ମିଛ ମାୟାରେ ବନ୍ଧିଯାଉଛି ଦିବସ । ୨୫ । ଯଷ୍ଠ ରୂପରେ ଭଜେ ଜୀବନ ସ୍ୱରୂପେ । ଜନ୍ମୁଛି ପାପ ଜାଣି ନୋହୁଛି ପ୍ରତ୍ୟକ୍ଷେ । ୨୬ । ରତନ ଗୁଡ଼ ରାଗ ଅହଙ୍କାରେ ପଡ଼ି । ରଚଡ଼ି ହେଉ ରଜ ତାମସରେ ଜଡ଼ି । ୨୭ । ଲଘୁ ପାଇବୁ ନଷ୍ଟେ ଲୋଭକୁ ତେଜିଲେ । ଲାଲସ ନ କରିବୁ ଲିବରଙ୍କ ଭୁଲେ । ୨୮ । ବଣ ଭିତରେ ପଶି କଣା ତୁ ନୋହିବୁ । ବେଦ ପଢ଼ାଉଅଛି ହେଜି କରିଥିବୁ ॥ ସତ୍ରପାଉଛି ଶ୍ରୁତା ନାହିଁ ତୋର ଚିତ୍ତେ । ଶିଶୁ ସମ୍ପଦ ସାରି ଦେଉଅଛୁ ପଥେ । ୩୦ । ସତ୍ୟକୁ ଧରି କରି ମିଥ୍ୟାକୁ ଭଜନ । ଶୂନ୍ୟମାଗର ବାନା ଦରିଦ୍ର ଭଞ୍ଜନ । ୩୧ । ଶୋଧିତ ସିନ୍ଧୁ ତିନିପୁର ଅଛି ଯୋତି । ପାଙ୍ଗପାଥୀ କରିକୁ ଗଣ୍ଡି ଯିବ ଫିଟି । ୩୨ । ହେଉ ତୁ ଅଛୁ ଦାନ ଲଭିରେ କାରଣ । ହେଉଛୁରେ ଦୃଢ଼ କଲେ ନୋହିବ ଧରଣ । ୩୩ । ଖେଳ ନିମନ୍ତେ କ୍ଷମାସାଗର ଆନନ୍ଦ ଷିତିମଣ୍ଡଳେ ଥାଇ ଭଣେ ଶ୍ରୀମ କହ । ୩୪ ।

---o---

( ୩୪ )

(କ୍ଷ) ଖେଳ କରିବେ ସ୍ୱାମୀ ବ୍ରହ୍ମାଣ୍ଡ ଭିତରେ । ଖ୍ୟାତି ହେଲାଣି ବାନା ପାକ୍ଷା ତିନିପୁରେ ॥ ହଟପଟ ନାଶ ହୋଇଯିବ କଳିଯୁଗ । ଧୀବର ରତନମୟ ସବୁ ଠାବେ ହେବ । ୧ । ଶୁକ୍ଳ ବର୍ଣ୍ଣରେ ପୃଥିବୀ ହଣିବ ଉଜ୍ଜ୍ୱଳ । ଶୁଭ୍ରପ୍ରକାଶ ହୋଇବ ଯେସନେ ବିଜୁଳି ॥ ସତ୍ୟାଦ୍ଧିପୁ ରୁଷ ଯେତେକ ଯାଆନ୍ତି ମିଛକୁ । ପକାଇ ଦୃଷ୍ଟି ନରେ ଦେଖିବ ପଛକୁ । ସବୁ ଜୀବରେ ଦୟା ଅଟନ୍ତି କରନ୍ତା । ଶ୍ରୀଗୁରୁଦେବ ସ୍ୱାମୀ ପୃଥିବୀ ଧରନ୍ତା । ବାତୁଳା ହେଉଅଛି ମାୟା ମଦ ଖାଇ । ବଶୀଭୂତ ହୋଇ ବସନ କଟିରୁ ଓହ୍ଲାଇ ॥ ଲକ୍ଷ ଯୁଗ ଯେ ଗଲାଣି ଏହି ପରକାରେ ।

Digitized by srujanika@gmail.com

ଲଭିନାହାନ୍ତି କେହି ଏ ମୃତ୍ୟୁ ଶରୀରରେ । ୭ । ରୌରବ ନର୍କ କୁଣ୍ଡେ ପଡ଼ିଅଛ ସର୍ବେ । ରକ୍ଷା ନୋହିବ କେହି ଭାଗବତ ଗର୍ବେ । ୮ । ଜାଣି ସମ୍ଭାଳ ଧର ନ ପଶିବ ଭୂତ । ଜଗନ୍ନାଥ ହୋଇଅଛନ୍ତି ଉଦ୍ଧତ ।୯। ମନୁଷ୍ୟ ନୁହନ୍ତି ଯେ ସ୍ୱପ୍ନ ଘରଂକ୍ରନ୍ତି । ମନାଇ କହୁଅଛୁ ଅରକ୍ଷିତ ଗ୍ରାମ । ୧୦ ।

(ଭ) ବସି ଯାଉଅଛୁ ନାମ ଧର ଅନୁମାନେ । ଭାବ କଲେ ବସିବ ବୈକୁଣ୍ଠ ଭୁବନେ ॥ ବାବନଧି ଭିତରେ ଯେ ମରୁଅଛୁ ବୁଡ଼ି । ବୁଦ୍ଧି ଥିଲେ ପଳାଅ ଏବେ କର୍ମ ଗୁଡ଼ି ॥ ଗେଡ଼ି କହୁଅଛୁଁ ଆମ୍ଭେ ନ କର ଅପ୍ରତେ । ଫୁଲପଶିଆ ନୁହ ଚତୁର କର ଶତ୍ରେ ॥ ପାଇଥିଲ ରତନ ଦେଉଅଛ ଗୁଡ଼ି । ପଣତେ ବାନ୍ଧିରଖ ଗଣ୍ଠି ଥାଉ ପଡ଼ି ॥ ନସାନ ବପୁ ଯେ ତୁମ୍ଭେ ଉଛନ୍ନ ହେଉଛ । ନାବଗୁଡ଼ି ଜଳରେ ପକାଇ ଦେଉଛ ଧରନ୍ତର ନାବ ବନ୍ଦୀ ହୋଇଛୁ ଶରୀରରେ । ଦଗଣ୍ଡି ହୋଇଣ ମର ଯାଉଛ ମିନ୍ଥରେ ॥ ଦୁଃଖକୁ ସୁଖ କରି ଯେ ବଞ୍ଚୁଅଛୁ ଧନ । ଦେଖା ନ ପାଇବୁ ତୁ ହଜଗଲେ ଜ୍ଞାନ ॥ ଥୋଇ ଥିଲ ରତନକୁ ଦେଉଅଛୁ ଗୁଡ଼ି । ସୁଦ୍ଧେ ପଡ଼ ମରୁଛୁ ଅକାରଣେ ବୁଡ଼ି ॥ ତପନ ଅନଳେ କୁହି ବୁଡ଼ି ମରୁଅଛୁ । ଡାକ ନ ପାରିବା ହେତୁ ଚେତା ବୁଡାଉଛୁ ॥ ଅଣ ଅକ୍ଷରରେ ଶତ୍ରୁ ଧର ଦୃଢ଼ ବନ୍ଧ । ଅଣାକାରକୁ ଭଜ ଏକପାଦ ଛନ୍ଦେ ॥ ଡାକୁଣୀ ଫିଟିଅଛୁ ହେଖ ଏତେବେଳେ । ଡାକିଲେ ନ ମିଳିବ ଆଉ ଜନପୁରେ ॥ ଡର ଡର ହେଉଅଛ ମରଣେ ଯାହାକୁ । କହେ ଗ୍ରାମ ଅର୍ଷିତ ଦେଖ ତୁ ତାହାକୁ ॥

(○) ଠିଆ ହୋଇଅଛୁ ମାଣେ ନ ଚିହ୍ନି ପାରୁଛୁ । ○ ଠାଇ ହେଉଅଛୁ ବୃଥାରେ ମରୁଛୁ ॥ ନେଇ ରଖିଅଛୁ ଆପେ ପିଣ୍ଡକୁ ତୋହର ଟାଣେ କରୁଛୁ ବଶ ଜହର ଆହାର ॥ ଝାଡ଼ା ନ ଦେବୁ ଆଉ ସଭ- ଗରେ ପଛେ । ନାମ ହବୁଛୁ ବୋଲି କହୁଅଛୁ ମିଛେ ॥ ଝଞ୍ଜିକା ଭିତରେ ତୁ ପଡ଼ୁଅଛୁ ଜଡ଼ି । ଝିମିଟି ବାନ୍ଧ ନେବେ ତକ୍ଷୁ ଯିବ

Digitized by srujanika@gmail.com

ଘୁଡି ॥ ଜାଣୁଅଛୁ ମନରେ ମରିଯିବ ବୋଲି । ଜୀବନକୁ ପିଣ୍ଡରେ ନ ପାରୁଛୁ ପାଳି । ଗ୍ରାଇ ଚଳନ୍ତି ସ୍ୱର୍ଣ୍ଣ କରିଛୁ ଆବୋରି । ଛବ ଦେଖାଇ ତୋତେ ନେବେ ବାନ୍ଧିକରି ॥ ଞ୍ଚଦାଣୀ କାମଅଛୁ ଯେବଣ ଜମରେ । ଚେତନା ଥାଉଁ ଥାଉଁ ଧର୍ମ୍ମ ଦେବେ ତୋତେ ॥ ଆୟୁଷ ଥାଉଁ ଥାଉଁ ଭଜ ମନ୍ତ୍ରମାକୁ । ଅନ୍ତର୍ଗତ ଚଉତରେ ଆବୋରି ନାମକୁ ॥ ଘୋଟି ଆସୁଛି ଦେଖ ମାୟା ଅନ୍ଧକାର । ଘୋର କଳିଯୁଗରେ ନାହିଁ ଅନ୍ତ ପାର ॥ ଗଡନ୍ତି ବାଞ୍ଛା କର ପାଇବୁ ନିଶ୍ଚୟ । ଜ୍ଞାନ ଦଶିଲେ ମୋକ୍ଷ ହେବ ତୋର କାୟ ॥ ଝଟୁଆ ବୁଦ୍ଧିମାନ ଗୁଡ଼ ତୋର ଶରୀ । ଖତମ ନେଲେ ଦୋଷ ହେବୁ ନାହିଁ ମୋତେ । କରତା ଅନ୍ତେ ସେ ସବୁରି ଠାକୁର । ଭଣେ ଶ୍ରାମ ଅର୍ପିତ ଶ୍ରୀମା ରୁ ପଦ୍ମର । ୩୪ ।

—୦—

( ୩୫ )

(କ) କର୍ମ ଆଦରି ଥାଅ ସବେ, କଳଙ୍କି ରୂପ ପ୍ରଭୁ ହେବେ ॥ ଖିତିରେ ରହି ଧର୍ମ ଧରି, କ୍ଷମା କରିବେ ମହାକାରି । ୨ । ଗୁରୁ ଗୋପ୍ୟାନ ହୋଇଛନ୍ତି, ଗାରମା ପଣ ଧୁଷ୍ଟୁଛନ୍ତି । ୩ । ଘେନ ସଙ୍ଗତେ ଜ୍ଞାନ ଧର୍ମ, ଘଟ ସମାଧି ହେଲେ ବ୍ରହ୍ମ । ୪ । ଅବନା ମଣ୍ଡଳରେ ଯାଇଁ, ଅଜ୍ଞାତ ରୂପଛନ୍ତି ରହି ॥ ଗୁରୁ ଚରଣ ବ୍ରହ୍ମାଣ୍ଡକୁ, ଚେତାଇ ଦେଲେ ଭଜ ତାଙ୍କୁ ॥ ଗୁଡ଼ ନ ଯାଅ ଧରିଆଅ, ଛ, ବେଦ ପରେ ମନ ଥୁଅ ।୭। ଜାଣୁ ତ ଅଛ ଯୁଗ କଳି, ଜନ୍ମିଛୁ ହୋଇ ମହାବଳୀ । । ୮ । ଝାଡ଼ ପର୍ବତ ଗ୍ରାମ ବନ, ଝିମିଣ୍ଟେ ଲାଗୁନାହିଁ ମନ ॥ ନିଷ୍କାମ ଭକ୍ତେ ଯେହ୍ନ ଥିବ, ନାରଦୂଣଙ୍କୁ ସେ ଦେଖିବ ॥ ଟିଆକ ଟାଳି ଥିଲେ ରହି, ଟିକ୍ରି ଛେଉଣ୍ଡା ପ୍ରାପ୍ତେ ହୋଇ ॥ ଠାକୁର ଉଦେ ହେବେ ମହୀ, ଠିକେ କହଇ ଶ୍ରାମ ହୋଇ ॥

(ଡ) ଡୋର କୌପୁନୀ ନ ଓହ୍ଲାଅ, ଡାକ କହୁଛି ପିନ୍ଧି ଥାଅ ॥ ଢେଙ୍କୁ କରି ମହାନ୍ତପ୍ୟ, ଢଳ ନମଡ଼ ମାୟା ମୋହ ॥

Digitized by srujanika@gmail.com

ଅଣ ଅକ୍ଷର କର ଲକ୍ଷ୍ୟ, ଅନାଦି କରିବେ ବିଜୟ । ୧୫ । ଛାନି ବରଷ ଅଛି କଣ୍ଠ, ନାହିଁ ସେ ବଦଳିବେ ଘଟ । ୧୬ । ସ୍ଥାପି ଅଛନ୍ତି ଆଗତକୁ, ସୃଷ୍ଟି ସେ ଦେବେ ନିକଟକୁ । ୧୭ । ଦଇବ ଭିଆଣ ଏ କଥା, ଦେବଙ୍କୁ ନ ବୁଝାଅ ଚେତା ॥ ଧରିଥା ଧରମ ପଥକୁ, ଧାଉଁଣ ଏକା ଅକ୍ଷରକୁ ॥ ନିଷ୍କଳଙ୍କ ପ୍ରଭୁ ଉଦେ ହେବେ, ନିର୍ବାଣ ରୂପ ପ୍ରକାଶିବେ । ୨୦ । ପୃଥ୍ୱୀରେ ପାପ ହେଲା ଯହୁଁ, ପ୍ରଳୟ ହେଲେ ବ୍ରହ୍ମ ତହୁଁ ॥ ବେଦରେ ସତ୍ୟାଦି ଧର୍ମକୁ, ପୂର୍ଣ୍ଣ ନୋହିଲା କାମନାକୁ । ଆର କଳଙ୍କି ରୂପ ହେବେ, ବୁଦ୍ଧ ସମାଧି ଉଠାଇବେ ॥ ଭକତେ ପାଇବେ କଷଣ, ଭାବ ନ ହେବ ଧ୍ୟାନ ଜ୍ଞାନ । ୨୪ ।

(ଗ) ମହିମା ଉଠିବେ ସାକ୍ଷାତେ, ମାନିବେ ତ୍ରିପୁର ଜଗତେ । ଜଗତ ଜନ ପିତା ସେହି, ଯୁବାଙ୍କୁ ଯୋଗୀ ବେଶ ହୋଇ । ୨୬ । ରସା ମେଦିନୀ ପାପ ଭାର, ରକ୍ଷା ନୋହିଲା ଧର୍ମ ଧାର ॥ ଲାଗିଲା ସତ୍ୟରେ କଳଙ୍କ, ଯୋଗ୍ୟ ହୋଇଲେ ବୁଦ୍ଧ ରୂପ ॥ ବଦଳ ହେଲେ ନିଜ ପିଣ୍ଡ, ଏବାବାଳ ଉଠିବ ବ୍ରହ୍ମାଣ୍ଡ ॥ ମାରି ସକଳ ବିଧିମାନ ଶୂନ୍ୟକୁ ଭଜ ସ୍ୱାମୀ ଜାଣ ॥ ଶଙ୍କିତା ଭଗତ ଯେ ହେବ, ପ୍ରଭୁଙ୍କୁ ଦର୍ଶନ କରିବ ॥ ଶୂନ୍ୟ ହୋଇଛି ଏ ବ୍ରହ୍ମାଣ୍ଡ, ସତ୍ୟକୁ ପଡ଼ିଅଛି ଦଣ୍ଡ ॥ ଧ୍ୟାନ ଅବସ୍ଥା ଛକେ ପାଇ, ହାଡ଼ି ଚଣ୍ଡାଳ ପ୍ରାପ୍ତେ ହୋଇ ॥ କ୍ଷମା ମହିମା ପାଦ ବନ୍ଦ, ଜନ୍ମ ଭକ୍ତିଲା ଗ୍ରାମ କନ୍ଦ । ୩୪ ।

—o—

( ୩୭ )

(କ) ଖରାପ ହୋଇଗଲେ ପିଣ୍ଡ, ଖତମ ହୋଇବ ବ୍ରହ୍ମାଣ୍ଡ । ହରି ଯେ ନୂଆଣ ରଚନା, ହରଷେ କରିବେ ସ୍ଥାପନା ॥ ଶୁଭ କରିବେ ଶନ୍ୟ ଦେଖି, ଶଙ୍ଖ ଚକ୍ରାଦି ଗଦା ବନ୍ଧି । ସମ୍ଭାଳି ଧରିବେ ସେ କ୍ଷିତି, ଶିରୁ ଉଶ୍ୱାମି ବସୁମତୀ ॥ ସୁର ସିଦ୍ଧଙ୍କୁ ଦେବେ ଠାବ, ସତ୍ୟାଦି ବସାଇବେ ଯୁଗ ॥ ବଦୀତ ହୋଇଲେ ସଂସାର, ବୁଝିବେ

Digitized by srujanika@gmail.com

ବ୍ରହ୍ମାଣ୍ଡ ଠାକୁର ॥ ଲାବଣ୍ୟ ରୂପ ମୁହିଁ ହେବେ, ଲୁଚି ଗୁପ୍ତରେ କରାଇବେ । ରବ ଚଳଚଳ ଯେତେକ କଥା, ରହିବ ଯୁଗେ ଯୁଗେ ଗାଥା ॥ ଯୁଗ କରୁଛୁ ନଟକ୍ରଟ, ଜୀବନେ ପଡ଼ୁଛୁ ଶଙ୍କଟ ॥ ମହିମା ହୋଇବେ ଉଦୟେ, ଭୀମ ଅର୍ଷିତ ଯେଉଁ କହେ ! ୧୦ ।

(ଭ) ଭୟରେ ନ ପଳାଅ ଗୁଣ୍ଡ, ଭଜ, ସାତ୍ତ୍ୱିକ କର୍ମେ ଯଣ୍ଡ ॥ ବୈକୁଣ୍ଠ ଭୁବନେ ବସିବ, ବ୍ରହ୍ମ ଅଙ୍ଗରେ ଲୀନ ହେବ ॥ ଫଣିମଣି ଶିଖରେ ହଡ, ମୁକା ମଣ୍ଡଳରେ ବଜାର ॥ ପୂର୍ଣ୍ଣାନନ୍ଦଟି ସେହୁ ଅଟେ, ପରତେ ହୁଅ ଆସ ଘଟେ ॥ ନନ୍ଦ ଅବଧୂତ ନାମ ତାର ନିଷ୍କାମ ନିର୍ଗୁଣେ ବିହାର ॥ ଧର୍ମ ସେ ଅଟଇ ସାକ୍ଷାତେ, ଧର ନିର୍ଗୁଣ ଯୋଗ ପଥେ ॥ ଦଶ୍ବାକୁ ପୁରୁଷ ଅଟନ୍ତି, ଦର୍ଶନେ ଦୃଶ୍ୟ ହେଉଥାନ୍ତି । ଥଳକୁ ଥର ଭକ୍ତ ପାଶେ, ତବ ବନ୍ଧନ ଭାବ ବଶେ ॥ ତିନ ବ୍ରହ୍ମାଣ୍ଡ ସୁଖ ଗୁଣ୍ଡ, ନିତ୍ୟ ସାତ୍ତ୍ୱିକ କର୍ମେ ଜଡ଼ ॥ ଆଦିଟି ଜଗନ୍ନାଥ କହି, ଅନାଦି ଅରୂପ ଅଟଇ ॥ ତମରେ ବୁଡ଼ିଛନ୍ତି ପ୍ରାଣୀ, କାଳ ଚକ୍ରକୁ ସତ୍ୟ ମଣି ॥ ଉଭ ନ ମର କରି ଶୋକ, ଊକ କହଇ ଭୀମ ମୂର୍ଖ ।୨୨।

(ଠ) ଠିକଣା ହେଲେ ସତ୍ୟଯୁଗ, ଠାବ ପାଇବେ ସର୍ବ ଜୀବ ॥ ଟଳ ପଡ଼ୁଛି ଏ ବ୍ରହ୍ମାଣ୍ଡ, ଟିକାଳେ ପଡ଼ୁଅଛି ଦଣ୍ଡ ॥ ନିନ୍ଦା ହୋଇଲେ କଳିଯୁଗ, ନାମ ନିଜବ ସେ ଉହିବ ॥ ଝଡ଼ ପଡ଼ିବେ ନର ବୃନ୍ଦ, ଝାର୍ମିବ ନାଳମାପ୍ରା ଦ୍ୱନ୍ଦ ॥ ଜଗତେ ବିପରୀତ କଥା, ଯୁଗରେ ନ ରହିବ ଚେତା ॥ ଗୁନଅ ହୋଇଯିବେ ଗୁଣ୍ଡ, ଛନକା ମାୟା ମୋହେ ପଣ୍ଡ ॥ ଚେତାନ୍ତି ନ ରହିବ ପିଣ୍ଡେ, ଚମକ ପଡ଼ିବ ବ୍ରହ୍ମାଣ୍ଡେ ଓଁକାର ବହିଥିବା ଲୋକ, ଅନ୍ଧପରିପ୍ରେ ହେବେ ମୁକ୍ତ ॥ ଘୋଟିବ ତିନ ବ୍ରହ୍ମାଣ୍ଡରେ, ଘାଣ୍ଟିବ ମନ୍ତ୍ରର ହୃଦରେ ॥ ଙ୍କାନବଳରେ ଯେହୁ ଥିବେ ସର୍ବଦା ଗାରିମା ବହିବେ ॥ ଖରପ ହେବ ମନବୁଦ୍ଧି, ଖେଳିବ ଘଟରେ କୁବୁଦ୍ଧି ॥ କ୍ରିୟା କର୍ମରେ ହେବେ ହତ, କହଇ ଭୀମ ଅରକ୍ଷିତ ।୩୪।

—o—

Digitized by srujanika@gmail.com

( ୩୭ )

(କ) କାମନ୍ୟ ସେବକ ଭକତ, କର୍ମେ ଦୋଳଇବେ ଆତ ଯାତ ॥ ଖେଳକୁ ଯାର ଥିବା ବାଞ୍ଛା, କ୍ଷିତି ମଣ୍ଡଳେ ଭାବ ରଖା ॥ ଜ୍ଞାନ ମାର୍ଗରେ ଯେତ୍କ ଥିବ, ଗୁରୁ ପଦ୍ମରେ ଲୀନ ହେବ ॥ ଘରକୁ ଥିବ ଯାର ମନ, ଘରଣୀ ବଢ଼ାଇବେ ଦାନ ॥ ଅଣ୍ଡଥି ବେଢେଣ ଯେତ୍କ ଥିବ । ଉତ୍ତମ ପଥ ସେ ଲଭିବ ॥ ଚରଣେ ଚକ ଯାର ମନ । ଭ୍ରମର ଡାକ ହେବେ ଗନ୍ତ । ଛତ୍ର ବେଢ଼ରେ ଯେତ୍କ ଥିବେ, ଛତ୍ରୀ ଶିରରେ ଉଡ଼ାଇବେ ॥ ଯୋଗୀନ୍ଦ୍ର ବେଶ ଯା ହୃଦରେ, ନାଇଁବ ଯୁଗ ଯୁଗାନ୍ତରେ ॥ ଖାଣ୍ଡ ପବନେ ଯେତ୍କ ଥିବେ, ଝଟତି ଶୀଘ୍ରରୁ ବୁଝିବେ ॥ ନାମ ବ୍ରହ୍ମରେ ଯାର ଚିତ୍ତ, ନାମ ବ୍ରହ୍ମରେ ହେବେ ଯୁକ୍ତ । ଚିଆକୁ ଝାଳଥିଲେ ରଷ୍ଟ, ଝଳ ଯେ ନ ମଣ୍ଡିବ ମଷ୍ଟି ॥ ଠାକୁର ଉଦେ ହେବେ ମଷ୍ଟ, ଠିକେ କହଇ ଶ୍ୟାମ ଭୋଇ । ୧୨ ।

(ଡ) ଦଣ୍ଡ କଷଣେ ଯେତ୍କଥିବେ, ଡେଙ୍ଗା କଟାଳରେ ବସିବେ ॥ ଡାଳ ସମ୍ଭାଳ ଯେତ୍କ ଥିବେ, ଡାଳେ ଦାନା ଚଳେ ରହିବେ ॥ ଅଣ ଅକ୍ଷର ଯେ ଭଜିବେ, ଅନନ୍ତ ଗର୍ଭରେ ରହିବେ ॥ ତପ ସାଧନେ ଯେତ୍କ ଥିବେ, ତତ୍ତ୍ୱ ଜ୍ଞାନରେ ଲୀନ ହେବେ । ଥପ୍ପରେ ଥିବ ଯାର ମନ । ସ୍ଥିତି ମେ ଦେବେ ଭଗବାନ ॥ ଦୁଃଖ କଷଣେ ଯେତ୍କ ଥିବ, ନବ କ୍ଷିତିରେ ରାଜା ହେବ ॥ ନାମ ବ୍ରହ୍ମରେ ଯେତ୍କଥିବ । ନୂତନ ରଚନା ଦେଖିବ ॥ ପୂର୍ଣ୍ଣ ବ୍ରହ୍ମରେ ଯେତ୍କ ଥିବେ, ବୈକୁଣ୍ଠପୁରେ ବିହରିବେ । ୨୧ । ଫନ୍ଦାକୁ ଯେତ୍କ ଝାଳ ଥିବ । ଫଳ ବହି ଦେବେ ଗୁରୁଦେବ । ୨୨ । ବ୍ରହ୍ମା ସାଧନେ ଯେତ୍କ ଥିବ । ବ୍ରାହ୍ମଣ ସତ୍ୟଯୁଗେ ହେବ । ୨୩ । ଭାଷା ପ୍ରବନ୍ଧେ ଏହି ତତ୍ତ୍ୱ । ଭଣଇ ଶ୍ୟାମ ଅରକ୍ଷିତ । ୨୪ ।

Digitized by srujanika@gmail.com

(ମ) ମନ୍ଦମା ଯେତୁ ଭଜଥିବ । ମହା ମଣ୍ଡଳେ ସେ ରହିବ ।୨୫। ଜାଣି ସେ ବଜବ ପ୍ରଭୁଙ୍କୁ । ଯଣଠି ଯାଇବ ପଛକୁ । ୨୬ । ରାମ ନାମକୁ ଯେ ଭଜିବ । ରାଜ ନୃପତି ସେ ହୋଇବ । ୨୭ । କୃଷ୍ଣ ଆସ୍ଥରେ ଯେ ଥିବ । ଲାବଣ୍ୟ ମୂରତି ଦେଖିବ । ୨୮ । ବୁଦ୍ଧ ପ୍ରବୁଦ୍ଧ ଅବତାର । ବାନ୍ଧିଲେ ସତ୍ୟ ଧର୍ମ ସାର । ୨୯ । ସାଭୁଜ୍ୟ ଧର୍ମେ ଯେହୁ ଥିବ । ସାର ବ୍ରହ୍ମରେ ଲୀନ ହେବ । ୩୦ । ସତ୍ୟ ଧର୍ମକୁ ଯେ ପାଳିବ । ସିଦ୍ଧାନ୍ତ ପାଦକୁ ପାଇବ ॥ ଶୂନ୍ୟ ବ୍ରହ୍ମକୁ ଯେ ଭଜିବ । ସକଳ ମାୟାରୁ ତରିବ ॥ ହରିହରଙ୍କୁ ତ୍ୟାଗ କରି । ହରି ବୋଲରେ ବ୍ରହ୍ମ ସ୍ମରି । ୩୩ । କ୍ଷମା ମନ୍ଦମା ପାଦ ଧ୍ୟାଇ, କ୍ଷମେ ଭଣଇ ଗ୍ରାମ ହୋଇ । ୩୪ ।

—୦—

( ୩୮ )

(ଜ) କଳିଯୁଗରେ ମୋତେ କରିଛ ଜାତ । କ ବୁଦ୍ଧି ମୁଁ କରିବି କହ ନଅନ୍ତ ହେ । ୧ । ଖଳକୁଟ ଉପୁଜ ହେ ଗୁରୁବ୍ରହ୍ମ । ଖଣ୍ଡ ଖଣ୍ଡ ହେଲାଣି ଏକାନ୍ତ ଧର୍ମ ହେ । ୨ । ଗୁରୁ ଗୋସାଇଁ ଯେଣୁ ଅନ୍ତର ହେଲ । ଜ୍ଞାନ ହେଜ ମନକୁ ଯେ ନିଷ୍ଟୁ କାଳ ହେ । ୩ । ଘରେ ଦାହାରେ ସବୁଆଡେ଼ ଅନର୍ଥ । ଘଟରେ ରହୁନାହିଁ ଚେତା ଆସ୍ଥିତ ହେ ॥ ଅଲେଖ ମନ୍ଦମାକୁ ଭଜ ବୋଇଲ । ଅନାସ୍ଥା କରି ଗୁଡ଼ ପଳାଇ ଗଲ ହେ । ୫ । ଚରାଚର ପୁରୁଷ କିସ ନ ଜାଣ । ସ୍ଥାନେ ଧର୍ମ ହେଲାଣି ରଣ ଭଣ ହେ ॥ ଛପିବାରେ ଯେ ଉଡ଼ୁ ଥିଲ ହେ ପ୍ରଭୁ । ଛୁଇ ତଳ ମୋ ଏବେ ଭାଙ୍ଗିଲ ସବୁ ହେ । ୭ । ଜାଲି ପରିଏ ବେଢ଼ି ଯାବନ୍ତ ଶିତ । ଜାଗ୍ରତେ ଘୋଟୁଅଛୁ ଯୁଗ ପ୍ରକୃତ ହେ । ୮ । ଝାମ ମାରୁଛୁ ଥୟ ନୋହୁଛୁ ମନ । ଝର ଝର ଅଶ୍ରୁ ବହେ ନୟନ ହେ । ୯ । ନିଷ୍କାମ ଧର୍ମ ଗୋଟା ହେଲାଣି ନିନ୍ଦା । ନିଜ ସତ୍ୟ ଧର୍ମରେ ପଡ଼ୁଛୁ ଧନ୍ଦା ହେ । ୧୦ । ଟାଣ ମୋ ନାହିଁ ରଖା

Digitized by srujanika@gmail.com

ନୂହଇ କହୁ । ଏଣୁ କଥା ପ୍ରଭୁଙ୍କ ପଛେ ରହୁଛୁ ହେ । ୧୧ । ଠାକୁର ବଜେ ଅନ୍ତେ ଏ ଚଉ ବାନା । ଠିକେ କହେ ଗ୍ରାମ ଯେ ଲଗୁଛୁ ବଣା ଯେ । ୧୨ ।

(ଡ) ଡୋଳେ ଦେଖନ୍ତେ ଲାଗି ଗଲଣି ଫାସ । ଡାକ ଶୁଣି ଗାବର କୁରଚେ ଆସ ହେ । ୧୩ । ଡାଉରଙ୍କ ଦେଖିଣ ପଳାଇ ଗଲ । ଡାକୁଣି ବଆ ହୋଇ କାହିଁ ରହିଲ ହେ । ୧୪ । ଅନ୍ତର ହେଲ ସନ୍ତ ଅନାଦ ଗୁରୁ । ଅନୁକ୍ଷଣରେ ଗୁଣି ବନ ନ ସରୁ ହେ । ୧୫ । ତ୍ରିନପୁର ଯାକ ଯେ ଶୂନ୍ୟ ହେଉଛୁ । ଚେତୁ ଏ କଳଯୁଗ ଘୋଟି ଆସୁଛୁ ହେ । ୧୬ । ସ୍ଥାନ ସ୍ଥିତ ଭାଙ୍ଗିଲ ହେଲ ଅଶୁଭ । ଥପ୍ପ ନଡ଼ଏ ମନ ଥିଲ କ ଯୋଗ ହେ ॥ ଦୟାବନ୍ତ ପୁରୁଷ ଅନାଦ ମୂଳ । ଦେଖା ହୋଇଣ ଏବେ ଗୋପ୍ୟ ହୋଇଲ ହେ ॥ ଧର୍ମରାଜା କରଣ ରହିଲ କାହିଁ । ଧରଣୀ ମଧ୍ୟେ ବାନା ଅଛ ଉଡ଼ାଇ ହେ । ୧୯ । ନର ଦେହରେ ଖେଳୁଥିଲ ସଂସାରେ । ବୁଦ୍ଧ ରୂପ ତେଜିଲ କେବଣ ଠାରେ ହେ ॥ ପଦ୍ମେ ବସାଇ କହୁ କହିଲ ନାହିଁ । ପୃଥ୍ୱୀ ପ୍ରଳୟ ହେଲ ଡାକୁଛୁ ମୁହିଁ ହେ । ୨୧ । ଫଟା କରମ ମୋର ନୋହେ ସଲଖ । ଫୁଲ ପଣିଆ ଚଞ୍ଚ ବୁଦ୍ଧି ଅଳପ ହେ । ୨୨ । ବାଧି ଗଲଣି ମୋର ପିଣ୍ଡ ପ୍ରାଣକୁ । ବ୍ରହ୍ମ ପ୍ରକାଶ ହେବ କେତେବେଳକୁ ହେ ॥ ଭୂତ ଭବିଷ୍ୟ ଶୁଣି ମନରେ ଭ୍ରମ । ଗ୍ରାମ ଅର୍ପିତ କରେ ମାରୁଛୁ ଝାମ ହେ ॥

(ମ) ମହିମାକୁ ଭଜ ମୁଁ ନାମ ବହିଲ । ମନ୍ଦ ବୁଦ୍ଧିରେ ପଡ଼ ଅପ୍ରାଧ କଲ ହେ । ୨୫ । ଯାବତ ଖଳ କୁଟ ଉଆଣ ହୋଇ । ଜାଗିଲ ଧର୍ମ ଗୋଠା ଯାଉଛୁ ବୋହି ହେ । ୨୬ । ରହିନାହିଁ ଧରମ ହେଲ ଅନ୍ୟାୟ । ଉଭରବରେ ପୋଡ଼ୁଅଛୁ ହୃଦୟ ହେ । ୨୭ । ନାଗର ପଣ ବୁଦ୍ଧି ହେଲ ମୋ ଯନ୍ତ୍ର । ଲଘୁ ଦଶା ମୋହର ନ ସରେ ଚନ୍ତ୍ର ହେ । ୨୮ । ବେଳୁ ବେଳ ହେଲଣି ଅଦଭୁତ କଥା

Digitized by srujanika@gmail.com

ବୁଝି ହଜିଲା ଯନ୍ତ୍ରୁଁ ପଢ଼ିଲା ପୋଥା ହେ । ୨୯ । ଶ୍ରଦ୍ଧାରେ କରିଥିଲ ଭକତ ଦାସ । ସରଳ ବୁଦ୍ଧି ବପୁ କରିବା କିସ ହେ ॥ ସୁଖ ନାହିଁନା ମୋର ହବା ରଜନୀ । ଶୁଖି ଯାଉଛି ହିଆ ଗୁଣକୁ ଗୁଣି ହେ ॥ ଶୂନ୍ୟ ପୁରୁଷ ଯେଣୁ ଅନ୍ତର ହେଲା । ସବୁ ହନକୁ ଭାଳ ହୋଇଲ ସଲ ହେ ॥ ହେଲା ମୋ ହୋଇବାରୁ ସରଳ ସବୁ । ହାତେ ନ ମାରି ଭାତେ ମାରିଲ ପ୍ରଭୁ ହେ ॥ କ୍ଷମା ସାଗର ଥିଲେ କ୍ଷୀର ମଧ୍ୟରେ । ଭଣେ ଶ୍ୟାମ ଅର୍ପିତ ଗୁରୁ ପଦ୍ମରେ ହେ ।୩୪।

—୦

( ୩୫ )

(କ୍ଷ) କ୍ଷୀନ ରୂପରେ ଧର୍ମ ସ୍ଥାପିଛ ଯେବେ । ଖାଲି ହେଲାଣି ପୃଥ୍ୱୀ ସମ୍ଭାଳ ଏବେ ହେ । ୧ । ହେଲା ଏତିକ ରହିଯାଉ ଅସିଲ । ହିତେ ପିଣ୍ଡ ବ୍ରହ୍ମାଣ୍ଡ କର ଶୀତଳ ହେ । ୨ । ଶୂନ୍ୟ ପୁରୁଷ ସ୍ୱାମୀ ଅନାଇଁ ଦେଖ । ସମସ୍ତ ଜୀବଜନ୍ତୁ ସମ୍ଭାଳି ରଖ ହେ । ୩ । ସଚରାଚର ହୋଇଲେଣି ଉଚ୍ଛନ୍ନ । ସୁସ୍ଥ କର ବ୍ରହ୍ମାଣ୍ଡ ଧନନ୍ତ ଯେନ ହେ । ୪ । ସାରିବାକୁ ବସିଛ ମନୁଷ୍ୟ ବୀଜ । ଶ୍ରୀ ଗୁରୁଦେବ ସ୍ୱାମୀ ବଚନ ବୁଝ ହେ । ୫ । ବହିଲାଣି ତପତ ଏ ତିନପୁର । ବାଉନଧି ପବଏ ରଖ ଅବୋର ହେ । ୬ । ଲାଗିଲା ସତ୍ୟଯୁଗ ଘଟିଲା ଆସି । ଲବାଅ ଅଗ୍ନି ଶୂନ୍ୟ ସ୍ୱରୂପ ବାସୀ ହେ । ୭ । ରାଜ୍ୟ ଭାସିଲା ଦେଶ ହେଲାଣି ଶୂନ୍ୟ । ରହ୍ମ ରହୁ ସସାର ନ କର ଆନ ହେ । ୮ । ଜଳଗଲାଣି ନବଖଣ୍ଡ ମେଦିନୀ । ଜଳ ପବନ ସିଞ୍ଚ ହେ ଅନ୍ତର୍ଯ୍ୟାମୀ ହେ । ୯ । ମଣ୍ଡି ମଣ୍ଡଳ ହୋଇ ଗଲାଣି ହତ । ମହିମା ଭକ୍ତ କହେ ଶ୍ୟାମ ଅରକ୍ଷିତ ହେ । ୧୦ ।

(ଭ) ଭାଙ୍ଗିଲେଣି କରି ନର ମାନବ କୂଳ । ଭାସି ଗଲେଣି ଦେଖ ଅନାଦି ମୂଳ ହେ । ୧୧ । ବ୍ରହ୍ମାଣ୍ଡ ଉଠିଲାଣି ହଦନ ଶ୍ରେଣୀ । ବ୍ରହ୍ମ ପୁରୁଷ ହଅ ଟୋପାଏ ପାଣି ହେ । ୧୨ । ଫଳା ଭାଙ୍ଗିଲା ଫଳ

Digitized by srujanika@gmail.com

ହେଲଣି ଓଣା । ଫେଡ଼ କଷଣ ବାରେ କର କରୁଣା ହେ । ପଢ଼ିଲଣି ବପଲ୍ଲି ସାକ୍ଷୀ ଯୋଗରୁ । ବାରେ ଉଦ୍ଧାର କର ଅଲେଖ ଗୁରୁ ହେ ॥ ନାମ ହେଲଣି ଜମ୍ବୁ ଦ୍ୱୀପ ଭୁବନ । ନର ନାଗଙ୍କୁ ପ୍ରଭୁ କର କାରଣ ହେ ॥ ଧର୍ତ୍ତା ଆକାଶରେ ବାନ୍ଧିଦା ମାର । ଧର୍ମବନ୍ତ ପୁରୁଷ ବସ୍ତର କର ହେ ॥ ଧବନ ହୋଇଲଣି ମେଦମା ରସା । ଦୟାକର ଅନନ୍ତ ହେଉ ବରଷା ହେ ॥ ଥର ଗଲଣି ପିଣ୍ଡ ବ୍ରହ୍ମାଣ୍ଡ ଆଦ । ଥୟ କର କରତା ରଖ ସମ୍ବାଦ ହେ ॥ ତପତ ଉଠିଲଣି ତନ ତୈଲୋକ୍ୟ । ଶାନ୍ତ କର ଅଭୁର ହେଲେଣି ଲୋକ ହେ ॥ ଆନନ୍ଦ ବଣିଲଣି ଏ ଚଉଦଗ । ଅନାଦ ଗୁରୁ କର ଜଳସଂଯୋଗ । ୨୦ । ଡକଲଣି ସଂସାରେ ଅକାଳ ଭୂତ । ଜଳ ଯାଉଛି ମଧ୍ୟ କର ଶତେତ ହେ ॥ ଢଗିର କର ଭାଗ ଓଡ୍ରାଅ ଥରେ । ଡରେ ଗ୍ରାମ ଅରକ୍ଷିତ ଗୁରୁ ଗ୍ରାମୁରେ ହେ । ୨୨ ।

(ଠ) ଠଜର ନାହିଁ ଯୋଚିଲ ଗ୍ରହଁ ଗ୍ରହଁ । ଠାବେ ରଖି ବ୍ରହ୍ମାଣ୍ଡ ହେ ମହାବାହୁ ହେ ॥ ଟଳ ଟଳ ହେଲଣି ତନ ଜଗତ । ଟେକ ରଖ ବ୍ରହ୍ମାଣ୍ଡ ହେ ଅବଧୂତ ହେ । ୨୪ । ଝର୍ଗତ ହୋଇଲଣି ନର ହେ ପଣ ନର ଦେବଙ୍କୁ ରକ୍ଷାକର ଆପଣ ହେ । ୨୫ । ଝଡ଼ଯିବ ଧକଲେ ନ ରହେ କଛି । ଝଟତ କ୍ଷମା ଦୟା କଲେ ହେଉଛି ହେ । ୨୬ । ଯୁଗ ଘଟିଲ ଆବୋରିଲଣି କାଳ । ଜାଗ୍ରତ କର ସ୍ୱାମୀ ବ୍ରହ୍ମାଣ୍ଡ ପାଳ ହେ । ୨୭ । ଗ୍ରହଅା ହୋଇଲେଣି ଦେଭୁ ବୁଡ଼ାଇ । ଛପାଇ ପାଦ ତଳେ ରଖ ଘୋଡ଼ାଇ ହେ । ୨ । ଚମକ ପଡ଼ିଲଣି ତନ ବ୍ରହ୍ମାଣ୍ଡ । ଚକ୍ର ଘୋଡ଼ାଇ ରଖ ଏ ନବଖଣ୍ଡ ହେ । ୨୯ । ଅନଳ ଉଠିଲଣି ପୋଡ଼ିବେ ସର୍ବେ । ଅନନ୍ତ ଗର୍ଭେ ଭଖ ରହିବେ ତେବେ ହେ ॥ ଘାତ ପଡ଼ିଗଲଣି ଏ ଚଉଦଗ । ଘଟ ବ୍ରହ୍ମାଣ୍ଡ ରଖ କଟାଇ ଦୋଷ ହେ ॥ ଗଡ଼ ଗଲେଣି ତନ ଭୁବନ ଯାକ । ଗୁରୁ ଗୋସାଇଁ ସ୍ୱାମୀ କର ବବେକ ହେ । ୩୨ । ଖଳ ବଳ ହେଲେଣି ଚଉଦ ପୁର

Digitized by srujanika@gmail.com

କ୍ଷମା ସାଗର ପ୍ରଭୁ ବିସ୍ତର କର ହେ । ୩୩ । କହେ ପୁରନ୍ଦ ବୋଲି ପ୍ରଭୁଙ୍କୁ କହି । କହେ ଶ୍ୟାମ ଅର୍ପିତ ଶରଣ ଯାଇ ହେ । ୩୪ ।

—o—

( ୪୦ )

କରୁଣା ସାଗର ହରି କମ୍ବୁ ଚକ୍ରପାଣି, କର ଧରି ରାଧିକାକୁ କହେ ଚକ୍ରପାଣି, କଦମ୍ବ ମୂଳରେ ବସି, ନାଗର, କଲ ବଂଶୀ ଧ୍ୱନି ରସ ଯା ଗ୍ଭଲି ଯାରେ ।୧। କରତି ହେଉଛୁ ଗୁପ୍ତ କାମନା କାନ୍ତରେ କଲବଲେ ବନ ବଞ୍ଚୁ ଅଛୁ ମୁଁ ରାତିରେ, କରୁଣା ନୋହୁଛୁ କମ୍ପା, ନାଗର, ଚୋ ହୃଦ ଭିତରେ, ରସ ଯା ଗ୍ଭଲି ଯାରେ । ୨ । ଖଗ-ବେଳେ ଖରତରେ ଚଲି ମାରି ପାଇଁ; ଖଳଖଳ ଶ୍ରମ ଝାଳ ଯାଉଅଛୁ ବହି, ଖଗପତି ନାଥ ହୋଇ, ନାଗର, ଖଣ୍ଡିଲ ତ ନାହିଁ, ରସ ଯା ଗ୍ଭଲି ଯାରେ ॥ କ୍ଷୀନ ହୋଇ ଖଟିଲଇଁ ତୁମ୍ଭର ଚରଣ, ଖୋଜୁଥିଲ ପେଷି କେତେ ଦେଉଛ କଷଣ, ଖଣ୍ଡ ପଣେ ଖଣ୍ଡା ମୁକେ, ନାଗର, ଲୁଚିଛ ଆପଣ, ରସ ଯା ଗ୍ଭଲି ଯାରେ ॥ ଗରବ ଗଞ୍ଜି ମାରୁଛ ଗୁରୁ ପ୍ରାପ୍ତ ହୋଇ, ଗାଢ଼ ପୀରତି ଦେଖିଲେ ଗାରିମା ଭାଙ୍ଗଇ, ଗାରିମା ପଣେ ଜଗତ, ନାଗର, କେ ପାରିବ ରହି, ରସ ଯା ଗ୍ଭଲି ଯାରେ ॥ ଗଡ଼ି ଯାଉଅଛୁ ପ୍ରାଣ ହକଲଣି ମୋର, ଗୋଡ଼ ନ ଚଳଇ ଗୋରି ରୂପ ଦେଖି ତୋର, ଗରଳ ବିଷ ଘାରିଲା, ନାଗର, ଝାଡ଼ି କୋଳେ ଧର, ରସ ଯା ଗ୍ଭଲି ଯାରେ । ୬ । ଘୋଟିଲା ମଦନ ବାଧା ଘଟ ହେଲା ଗୁଡ଼ି, ଘୂରାଇ ପଡ଼ିଲେ ଥରେ ଭୂମିଗତେ ପଡ଼ି, ଘନ ଘନ

---

ଏ ଚଉତିଶାଟିରେ କେବଳ ରାଧା କୃଷ୍ଣଙ୍କ ଯୁଗଳ ପ୍ରେମର ଭାବ ବର୍ଣ୍ଣନା ହୋଇଛୁ । ଏହା ମହିମା ଧର୍ମ ଜଣାଣ ଭଜନର ଅନ୍ତର୍ଗତ ନୁହେଁ ।

Digitized by srujanika@gmail.com

ହୋଇ ମାରେ, ନାଗର, କାମ ଜଳେ ବୁଡ଼, ରସ ଯା ଭୁଲି ଯାରେ । ୭ । ଘୋଟି ଘନ ମେଘ ଘୋର ବରଷା କରୁଛି, ଘଡ଼ଘଡ଼ ହୋଇ ବଜ୍ରି ମାଡ଼ ଆସୁଅଛି, ଘାଟିଆ ହୋଇ ମାଗିଲେ, ନାଗର ଘାଣ୍ଟି ମିଳୁଅଛି, ରସ ଯା ଭୁଲି ଯାରେ ॥ ଅନୁସରି ଥିଲି ତୋତେ ପୀରତି ନିମନ୍ତେ, ଅଙ୍ଗ ଝାଳ ବୁହାଇ ଅନ୍ତର କଲୁ ମୋତେ, ଆଶାରେ ଅନାଇଁ ଥିଲି, ନାଗର, ତୋ କଣ୍ଠ ପର୍ଯ୍ୟନ୍ତେ, ରସ ଯା ଭୁଲି ଯାରେ ॥ ଅନୁମାନ କରିଥିଲେ ଯମୁନାର କୂଳେ, ଅଙ୍ଗେ କଳା ମେଘ ଶାଢ଼ୀ ବେଢ଼ାଇବା ବେଳେ, ଆଗତ ହୋଇଲା ଦେଖି, ନାଗରି, ମୋର ବେନ କୋଳେ, ରସ ଯା ଭୁଲି ଯାରେ । ୧୦ । ଭୁଲି ଚରଣ ଭୂମିର ଚନ୍ଦ୍ରମା ପରିଏ, ଲୋଲଜଙ୍ଘା ଉପରେ ରୁଣୁଝୁଣୁ ଶୋଭା ପାଏ, ଭୁଲିଯିବା ଛଟକରେ, ନାଗର, ସ୍ତ୍ରୀ ମନ ମୋହେ, ରସ ଯା ଭୁଲି ଯାରେ । ୧୧ । ଚମତ୍କାର ହୋଇଲି ମୁଁ ବାଙ୍କ ଚାଲି ଚାହିଁ, ଚମକି ପଡ଼ିଲି ଶଆ ଚୈତନ୍ୟ ବୁଡ଼ାଇ, ଚତୁରୀ ହୋଇ ରାଧିକା ନାଗରୀ ଦେହେ ଜ୍ଞାନ ନାହିଁ, ରସ ଯା ଭୁଲିଯାରେ ॥ ଛଇଳ ରାଧିକା ବୋଲି ଛଡ଼ ରଙ୍ଗେ ବାଇ, ଛବ କରି ଦର୍ପି ଗୁଣା ଦେଇଛୁ ଦଳାଇ, ଘୁର ପୀରତି ନିମନ୍ତେ, ନାଗରୀ, ତନୁ କ୍ଷୀନ ହୋଇ, ରସ ଯା ଭୁଲି ଯରେ । ୧୩ । ଛନ୍ନ ଛନ୍ନ ହେଉଅଛି ବାକୁ ଧର ଘୁତି, ଘୁଟି ନେଉ ଅଛୁ ମନ ମଣିଶ ପ୍ରକୃତି, ଛଇଳ କେତେ କରୁଛ, ନାଗରୀ ଅବଳା ଯୁବତୀ, ରସ ଯା ଭୁଲି ଯାରେ । ୧୪ । ଯତନେ ରତ୍ନ ପଲଙ୍କ ଥିଲି ମୁଁ ସଜାଇ, ଜାଈ, ଯୁଈ, ଚମ୍ପା, ମଲ୍ଲୀ ପୁଷ୍ପ ଗୁନ୍ଥି ଥାଇ, ଜାଗ୍ରତେ ବସିଣ ଥିଲି, ନାଗର, ନପାରିଲି ଯାଇ, ରସ ଯା ଭୁଲି ଯାରେ । ୧୫ । ଜାନୁ ଯୌବନ ମୁଁ ରାଜିଥିଲି ଯତ୍ନ କରି, ଏ ଯୁବା ବୟସ ମୋର ମୂଳି ସଙ୍ଗେ ସରି, ଯୌବନ ଦେହକୁ ମୋର, ନାଗର, କେତେ ଥିବ ଧରି ରସ ଯା ଭୁଲି ଯାରେ ।୧୬। ଝଟ ଝଟ ଆସନ୍ତେ ମୁଁ ପଡ଼ିଗଲି ଝୁଣ୍ଟି ଝର ଝର ହୋଇ ରୁଧିର ଯାଉଅଛି ଫୁଟି, ଝୁଞ୍ଜିକା ଝଗଡ଼େ ପଡ଼

Digitized by srujanika@gmail.com

ନାଗର, ଗଲି ମୁଁ ଲେଉଟି, ରସ ଯା ଚାଲି ଯାଉରେ ।୧୭। ଝାଇଁ ବାଟି ଲେପ ଦେଲେ ପ୍ରାୟ ଯିବ ଅଙ୍ଗ, କଦମ୍ବ ମୂଳରେ କରିଅଛୁ ମନ୍ଥ ଯାଗ, ଝାଡ଼କୁ ଗଲେ ଦେଖିବୁ, ନାଗରୀ, ମନ୍ଥ ଭଙ୍ଗୀ ଢଙ୍ଗ, ରସ ଯା ଚାଲି ଯାଉରେ ।୧୮। ନୟନ ହୋଇଲ ନିରନ୍ତରେ ପଥ ଚାହିଁ, ନିତ ପ୍ରଭୁ ମାରୁଅଛ ପୀରତି ଲଗାଇ, ନଖେ ଦାଗ ଦେଉଅଛ, ନାଗର ସୁ ରୁଷ ବୋଲାଇ, ରସ ଯା ଚାଲି ଯାଉରେ ।୧୯। ନୟନ ହୋଇଲି ନିଶି ନିଦ୍ରାକୁ ହରାଇ, ନାହିଁ ବୋଇଲେ ନିଷ୍ଠୁରେ ହାରିବ କହ୍ନାଇ ନିଷ୍ଠି ଲେ ବନ ସାରୁଛ, ନାଗର, ଗୋପୀ ଘରେ ରହି, ରସ ଯା ଚାଲି ଯାଉରେ ।୨୦। ଟାଣୁଅଛି ପଞ୍ଚ ଶର ଅନଙ୍ଗ ପଢ଼ୁଛି, ଟଳ ଟଳ ପିଣ୍ଡ ମୋର ଟଳ ପଡ଼ୁଅଛି, ଟୀଆକୁ ଟାକିବା ଯାଏ, ନାଗରୀ, ଜୀବ ଯାଉଅଛି, ରସ ଯା ଚାଲି ଯାଉରେ ।୨୧। ଟେଣ୍ଡ୍ରୁଆଳ ଟେଣ୍ଡ୍ରୁ ଅଛୁ କୁଅ ପାଣି ଦେଖି, ଟିକେ ମାତ୍ର ସମ୍ଭାଳ ନୋହୁଛି ଆଗୋ ସଖି, ଟେଳା ପରିଏକ କରି, ନାଗରୀ, ଦେଉଛୁ ଉପେକ୍ଷି, ରସ ଯା ଚାଲି ଯାଉରେ ।୨୨। ଠାକୁର ବିଜୟ ବୋଲି ଆଜର ନିଶିରେ, ଠିକେ ଅଙ୍ଗ ସଜାଡ଼ିଛି ଚୂଆ ଚନ୍ଦନରେ, ଠକ ଦେଇ ନ ଆସିଲ, ନାଗର, ପାଶୋରି ମନରେ, ରସ ଯା ଚାଲି ଯାଉରେ ।୨୩। ଠିକେ ଠାରି ଜଣ୍ଠଥିଲ ଯେଉଁ ନବ ରଙ୍ଗେ, ଠକ କ୍ୱରେ ଶୋଇଥିଲ କେଉଁ ନାହିଁ ସଙ୍ଗେ, ଠଉରି ନୋହୁଛି ଅଙ୍ଗେ, ନାଗର, ସୁଟିଗଲି ଅଙ୍ଗେ ରସ ଯା ଚାଲିଯାଉରେ ।୨୪। ଡରି ନ ଆସିଲି ମୁହିଁ ଅନ୍ଧାର ରାତିକି ଡଗର ଲୋକକୁ ଦେଖି ବିଚାରିଲି ମୁଁ କି, ଡାକ ଡକାଇ ଆଣିଛ, ନାଗରୀ, ମୋ ମନ ପ୍ରୀତିକି, ରସ ଯା ଚାଲି ଯାଉରେ ।୨୫।

ଡାଳ ତଳେ ଡୋରି ହୋଇ ବସିଥାଅ ଧନ, ନାହିଁ ଦେଉଅଛୁ ଜାଣ ଶୀତଳ ପବନ । ଡହଳ ବିକଳ କମ୍ପ ନାଗର, ଢାଅ ପ୍ରୀତି ଦାନ, ରସ ଯା ଚାଲି ଯାଉରେ ।୨୬। ଢମ ଢମାଳିଆ ଭୁମ୍ବ ଛନ୍ଦ ପଣ ଦେଖି, ଢାଳୁଣୀ ଭିତରୁ ରସ ବହି ଯାଉଅଛି, ଢାଳେ ମୂର୍ଚ୍ଛା ନ

Digitized by srujanika@gmail.com

ଯାଇଛୁ, ନାଗର, ବୋଲେ ଗୃହ ମୂର୍ଖ, ରସ ଯା ଭୁଲି ଯାରେ ॥ ତାଙ୍କୁଣୀ ଭିତରୁ ବଢ଼ୁଅଛୁ ପ୍ରେମ ରସ । ତାଳେ ହେଁ ମୋହର ଦେଖ ନ ପୂରଇ ଆଶ । ଚୋଟକେ ଚୋଖ ଦେଇ କହେ', ନାଗର, ଗୁଣ ପ୍ରୀତି ଆଶ, ରସ ଯା ଭୁଲି ଯାରେ ॥ ଅନୁକ୍ଷଣେ ଝୁରି ଝୁରି ମରୁଅଛୁ ଏବେ, ଅନାସ୍ତ କରି ମୋତେ ନ ରଖିବୁ ଯେବେ, ଅଣ-ହେଳା କଲେ ଜଣେ, ନାଗର ଭାସିଲ ସୋ ହତେ ରସ ଯା ଭୁଲି ଯାରେ ॥ ଅନ୍ତର ନ କର ମୋତେ ଅନାଇଁ ତୁ ଦେଖ ଆଣି ତୋ ମୁଖ ମୋ ମୁଖ ଏକା ଠାରେ ଯୋଖ. ଅନୁସର ଅଛୁ ଆଜ. ନାଗର, କାମ ବାଧା ଦୁଃଖ ରସ ଯା ଭୁଲି ଯାରେ ॥ ତରଳ ଯାଉଛୁ ଦେହ ମଦନ ଆରତେ ତିନ ଭୁବନରେ ଠାବ ମିଳୁନାହିଁ ମୋତେ ସ୍ତ୍ରୀଙ୍କର ରସବନ୍ତ ହୋଇ ନାଗର. ସମ୍ଭାଳିବ କେତେ. ରସ ଯା ଭୁଲି ଯାରେ ॥ ତଆର ହୋଇଛୁ ତନୁ ଦିଗୁଣକୁ ଯେନ ତ୍ରିଭୁବନ ମୋହୁ ଅଛୁ ସ୍ତ୍ରୀଙ୍କ ମୋହନୀ ତେଣୁ କବି ଓ ପଣ୍ଡିତ ନାଗର. ନ ପାରିଲେ ବର୍ଣ୍ଣି. ରସ ଯା ଭୁଲି ଯାରେ ॥ ଥରହର ହେଉଅଛୁ ଥୟ କର ଅଙ୍ଗ, ଥରେ ତୋର ବେନି ଯାନୁ ଯଜ୍ଞବନ ଅଙ୍ଗ. ତଥି ପରେ ବସିକରି ନାଗର. ପ୍ରୀତି କ୍ରୀଡ଼ା ରଙ୍ଗ, ରସ ଯା ଭୁଲି ଯାରେ ।୩୮। ଥାନ ମାଡ଼ି କରି ବସିଥିବ ତୋହଠାରେ ଥୋଇ ଥିବ ବେନି ହସ୍ତ ମନ ଆନନ୍ଦରେ. ଥରକୁ ଥର ଚୁମ୍ବିବ ନାଗର. ଚୁମ୍ବିବ ତୋ ମୁଖରେ ରସ ଯା ଭୁଲି ଯାରେ ।୩୪। ଦଶଆରେ ଭାସିଗଲି ପ୍ରାୟେ ଲାଗୁଅଛୁ । ଦାରୁଣ ପ୍ରକୃତି ବାଧା ଦେହେ ଦଣ୍ଡୁଅଛୁ. ଦର ଦର ହୋଇ ରସ ନାଗର ବନ୍ଧ ପଡ଼ୁଅଛୁ ରସ ଯା ଭୁଲି ଯାରେ ।୩୫। ଦାନ ଦେଲ ସୁବା ଅଙ୍ଗ ଦୟା ମୋତେ ହେଉ ଦୁଃଖ ପାଉଅଛୁ ମୁଁ ଯେ ଦୀନବନ୍ଧୁ ଥାଉଁ ଦାଉ ଦନ୍ଧ ସ୍ତ୍ରୀ ଜନ ନାଗର, ଧିକ ଜୀବ ଯାଉ, ରସ ଯା ଭୁଲି ଯାରେ ।୩୬। ଧଇର୍ଯ୍ୟ ପଣରେ ଧରିଥାଅ ଆଉ ଥରେ । ଧରଣୀ ବାସୁକୀ ଯେଉଁ ବନ୍ଧ ଥାଇ

Digitized by srujanika@gmail.com

ଷିରେ, ଧର ଧୀରେ ଚୁମ୍ବ ଦେଇ, ନାଗରୀ, ଧର ଭିଡ଼ କୋଳେ, ରସ ଯା ଝୁଲ ଯାରେ । ୨୬ । ଧାସ୍ତି ଯେବେ ଅଛୁ ସଖି ମୋତେ ଅନୁସର, ଧୀରେ ଦୃଢ଼େ ଧର ତୋତେ ଥିବ ମୁଁ ଆବୋର, ଧକା ଫୁଟୁଅଛୁ ଦେହୁ, ନାଗରୀ, ବଢ଼ୁ ଶ୍ରମ ବାର, ରସ ଯା ଝୁଲ ଯାରେ । ନବ ଘନ ରୂପଗୋଟି ନବୀନ ମୂରତି, ନୟନେ ଦେଖି ସହିବ କେବଣ ଯୁବତୀ, ପ୍ରୀତି ଦେବାକୁ ମୋ ମନ, ନାଗର, ଷୋଳ ଘଡ଼ି ରାତି, ରସ ଯା ଝୁଲ ଯାରେ । ୩୯ । ନବ ଗୁଣେ ରସବନ୍ତ ହୋଇଅଛୁ ମୁହିଁ, ନୂତନ କାଳରୁ ମୋର ପତି ସଙ୍ଗ ନାହିଁ, ନୟମ କରି କହୁଛୁ, ନାଗର, ଦେହକୁ ଅନାଇ ରସ ଯା ଝୁଲ ଯାରେ ॥ ପତି ପଦେ ଲୋଟୁଅଛୁ ଜୀବନକୁ ରଖ, ସର୍ବାଙ୍ଗରୁ ପ୍ରେମ ଝାଳ ବହେ ଜକ ଜକ, ପାଟ ପଣତରେ ମୋର, ନାଗରୀ, ପୋଛୁ ଦିଅ ମୁଖ, ରସ ଯା ଝୁଲ ଯାରେ ॥ ପୀରତି ଫଳ ଭିତରେ ସୁଧା ଅଛୁ ଦେଖ, ପରାଣ ଗୁଡ଼ ଯାଉଛୁ ପ୍ରୀତି ଦେଇ ରଖ, ପ୍ରତ୍ୟକ୍ଷେ କାମ ଲହରୀ, ନାଗରୀ, ନାବ ଆଣି ଯୋଖ, ରସ ଯା ଝୁଲ ଯାରେ ।୪୨। ଫୁଲଫୁଟି ଫଳ ପାଣିଅଛୁ ସୁରଙ୍ଗରେ, ଫାଡ଼ ଚାଖି ଦେଖ ଥରେ ବାସନା ଭିତରେ, ଫାଉଲ କେତେ କହୁଚ, ନାଗର, ଚାଖି ଦେଖ ଥରେ, ରସ ଯା ଝୁଲ ଯାରେ । ୪୩ । ଫରୁଆ ଭିତରେ କେତେ ରଖିଛୁ ଅମୀୟ, ଫିଟି ଯାଇଅଛୁ ଗ୍ରନ୍ଥି ଚମକୁଛୁ ଦେହ, ଫୁଲ ଫୁଟି ବାସୁଅଛୁ, ନାଗର, ତୋଳ ତୋଷ ହୁଅ, ରସ ଯା ଝୁଲ ଯାରେ । ୪୪ । ବୃନ୍ଦାବନେ ବୁଲି ବୁଲି ମରୁଅଛୁ ମୁହିଁ, ଭାବନା ଲାଗିଛୁ ମୋତେ ଛଡ଼ାଅ ଗୋ ସହି, ବେନି ଜାନୁ ପଲ୍ୟଙ୍କରେ, ନାଗରୀ, ମଉଷଧି ଦେଇ, ରସ ଯା ଝୁଲ ଯାରେ ।୪୫। ବର୍ଣ୍ଣମାଳା ଦେଇ ମୋତେ ବରଣ କରୁ କର ବେନି ଭୁଜ ବଢ଼ାଇଣ ଆଲିଙ୍ଗନ କର, ଆନନ୍ଦ ହୋଇଣ ବସ, ନାଗରୀ, ପଲଙ୍କ ଉପର, ରସ ଯା ଝୁଲ ଯାରେ । ୪୬ । ଭାଷାକୁ ଅନାଇ ଥିଲି ବେନି କର ଯୋଡ଼ି, ଭରସା ପାଇ ଛଡ଼ିଲି ଲାଜ ଭୟ

Digitized by srujanika@gmail.com

ଗ୍ଲାନ୍ତ, ଭାବନା ଥିବାରୁ ମିନା, ନାଗର, ଧଇଲଲକ ଭେଦ, ରସ ଯା ଗ୍ଲଳ ଯାରେ । ୪୭ । ଭସିଗଲେ ରାଧା କୃଷ୍ଣ ଆନନ୍ଦ ସାଗରେ, ଭକ୍ତି ସମର୍ପିଲେ ଭାବଗ୍ରାହୀଙ୍କ ଚୁମ୍ବରେ, ଭାବେ ଗଦ ଗଦ ହୋଇ, ନାଗର, ଭାସି ନରଳରେ, ରସ ଯା ଗ୍ଲଳ ଯାରେ । ୪୮ । ମନରେ ମନ ମିଶାଇ ମରଣେ ନବାଇ, ମାତିଗଲେ ମତ୍ତ ଗନ୍ଧେ ପଡ଼ିଗଲେ ସେଥି ମୋହନ ବଂଶୀ ଥିବାରୁ, ନାଗର, କଲ ଛଟା ଗ୍ଲାଇ, ରସ ଯା ଗ୍ଲଳ ଯାରେ ॥ ମନେ ତ ଧରିବ ଆହେ ସାଧୁ ସୁଜ୍ଞଜନ, ମନ୍ତ୍ର ମହୌଷଧି ଜାଣନ୍ତି କାମୀ ଲୋକମାନେ, ମନ ଭୁଲିଗଲେ କହୋ, ନାଗର, ନୁହଇ ସେ ଭଲ, ରସ ଯା ଗ୍ଲଳ ଯାରେ । ୫୦ । ଯୁବା ଦେହ ଧରିଛନ୍ତି ରାଧିକା ଯୁବତୀ, ଜାଣି ଯୋଗେ ଭେଟା ଭେଟି ହେଲେ ପତି ପତ୍ନୀ, ଜନମ ଯୌବନ ତାଙ୍କ, ନାଗରୀ, ପୀରତିରେ ମାତି, ରସ ଯା ଗ୍ଲଳ ଯାରେ ॥ ଜାଣନ୍ତି ବବଧ ପ୍ରୀତି ଜଗତ ଜୀବନ, ଯତନେ ମିଶାଇ ଦୁଗ୍ଧ ମଧୁର ସମାନ, ଜାତି ସୁଲକ୍ଷଣୀ ରାଧା, ନାଗରୀ, ଚତୁରୀ ସିଆଣ, ରସ ଯା ଗ୍ଲଳ ଯାରେ । ୫୨ । ରଖିଥିଲ ଆପେ ରାଧା, ଅରଜିଲ ଧନ, ରମଣରେ ଦେଇ କରାଇଲେ ପ୍ରେମ ଦାନ, ରଙ୍ଗଫରୁଆ ଦେଖିବେ, ନାଗର, ଅମୂଲ୍ୟ ରତନ, ରସ ଯା ଗ୍ଲଳ ଯାରେ । ୫୩ । ରସବନ୍ତି ହୋଇଅଛି ବୃଷ ଭାନୁ ଝିଅ, ନାଗରୀଙ୍କ ସଙ୍ଗେ ମାତିଛନ୍ତି ନନ୍ଦ ପୁଅ, ଋଷିମାନଙ୍କୁ ଭୁଲାଇ, ନାଗର, ରତି କାମ ଦୁଅ, ରସ ଯା ଗ୍ଲଳ ଯାରେ ।୫୪। ଲାବଣ୍ୟ କରି ବଚନ କହେ ଧୀର ବାଣୀ, ନବ ଯଉବନ ବେଣେ ପିଆଇ ଏ ପାଣି; ଲୋଭ କରି ରହିଛନ୍ତି, ନାଗର ଦିବସ ରଜନୀ, ରସ ଯା ଗ୍ଲଳ ଯାରେ ॥ ଲୋଭ କରି ବସାଇଲେ ଲାବଣ୍ୟ ପସରା, ଲୋଭ ଯୋଗେ କୃଷ୍ଣଚନ୍ଦ୍ର ପଡ଼ିଗଲେ ଧରା, ଲାଜସେ ମୁର୍ଚ୍ଛି ନ ପାରି ନାଗର, ନ ଯାଏ ପାସୋରା, ରସ ଯା ଗ୍ଲଳ ଯାରେ ।୫୬। ବହୁଛି ବସନ୍ତ ବୃନ୍ଦାବନ ଲତା ଭାଗେ, ବସି କ୍ରୀଡ଼ା କରୁଛନ୍ତି ନାଗରୀଙ୍କ ସଙ୍ଗେ, ବାରି ନୁହେଁ ବେନି ଅଙ୍ଗ, ନାଗରୀ,

Digitized by srujanika@gmail.com

ଏକାନ୍ତ ସଂଯୋଗେ, ରସ ଯା ଗୁଲ ଯାରେ । ୫୭ । ବରଷୁଛୁ ପ୍ରେମ ଧାର ଯୁଗଳ ମଧ୍ୟରେ, ବନ୍ଧୁଅଛୁ ବାରିଧି ବାର ଯୋଜନରେ, ବେଦ ପଡ଼ ଶ୍ରୀଅଙ୍ଗକୁ, ନାଗରୀ, ବନ୍ଧୁ ତ ନ ପାରେ, ରସ ଯା ଗୁଲ ଯାରେ । ୬୮ । ଶ୍ରଦ୍ଧାରେ ଶ୍ରବଣେ ଶ୍ରୁଣି କୋଷ ହେବେ ପ୍ରାଣୀ, ସର ସର ବନ୍ଧୁଅଛୁ ରଜ ରସ ପାଣି, ସାଉଁନି ରାଧାକୁ ଧରି, ନାଗର, ଛଡ଼ାଛଡ଼ି ବେନି, ରସ ଯା ଗୁଲ ଯାରେ ॥ ସୁରଙ୍ଗେ ସୁରଙ୍ଗେ ବେଢ଼ି ମନବାଞ୍ଛା ପୂର୍ଣ୍ଣେ, ଶିରେ କର ଯୋଡ଼ ବେନି କୋଟି ଦେବ-ଗଣେ, ଶୂନ୍ୟରେ ରହି ଦେଖନ୍ତି, ନାଗର, ପୁଷ୍ପକ ରମାନେ, ରସ ଯା ଗୁଲ ଯାରେ । ୭୦ । ଶୁଖିଲ ବସନ ଓଦ୍ଧଗଲୁ ପ୍ରେମ ଝାଳେ, ସୁଖ ସାଗରେ ବୁଡ଼ିଲେ ଏକାନ୍ତ ନିବେଳେ, ସଙ୍ଗ ହୋଇ ବସିଛନ୍ତି, ନାଗର, ଏକାନ୍ତ ନିରୋଳେ, ରସ ଯା ଗୁଲ ଯାରେ । ୭୧ । ସକଳ ବିଷୟମାନ ଦୂରକୁ ନିବାରି, ଶ୍ଳୋକ ଛନ୍ଦ ମରମରି, ଅର୍ଥ କରିକରି ସଲଖ ପଲଙ୍କେ ବସି, ନାଗରୀ ଯେତେହେଁ ଶୁକ ସାରୀ, ରସ ଯା ଗୁଲ ଯାରେ ॥ ସପନରେ ଭେଟିଲଇଁ ଆଜହି ନିଶିରେ, ଲକ୍ଷେ ଚମ୍ପା ଚଢ଼ାଇଲି ସଦାଶିବ ଠାରେ, ସୁଫଳେ ଭେଟ ପାଇଲି, ନାଗରେ, କଦମ୍ବ ମୂଳରେ, ରସ ଯା ଗୁଲ ଯାରେ ॥ ଶୋଇଛନ୍ତି ରାଧାକୃଷ୍ଣ ପଲଙ୍କ ଶଯ୍ୟାରେ, ବେନି ହସ୍ତ ଦେଇଛନ୍ତି ଉରର ଉପରେ ମୁଖେ ଦେଇଣ କହନ୍ତି ନାଗର, ହସନ୍ତି ସୁସ୍ୱରେ, ରସ ଯା ଗୁଲ ଯାରେ ॥ ହରିଙ୍କି ଯେତେବେଳରୁ ପାଇଲି ସୁନ୍ଦରୀ, ହର୍ଷେ ସମର୍ପିଲି ଜାନୁ ଯୌବନ ଚତୁରୀ, ହିଆରେ ହିଆ ଲଗାଇ, ନାଗରୀ, ଧରି ଭିଡ଼ିକରି ରସ ଯା ଗୁଲ ଯାରେ ।୭୭। ହାନି ଲଭକୁ ବେହାର କଥାକୁ ନିବାରି, ହୋଇଛୁ କି ନ ହୋଇଛୁ ଜାଣିରେ ସୁନ୍ଦରୀ, ହରଷ ରସରେ ହେଲି, ନାଗରୀ, ନାରୀ ସୁଖ ସାରି, ରସ ଯା ଗୁଲ ଯାରେ ॥ କ୍ଷଣେ ମାତ୍ର ଜାଣି ଲଭିଅଛୁ ଏ ସଂସାରେ, ରାଧାକୃଷ୍ଣ ମିଳନ ଯେ ହୋଇଲେ ସଧୀରେ, ଅଙ୍ଗକୁ ବେନି ଯୁଗଳେ, ନାଗର, ରଖ ଅନୁକୂଳେ, ରସ

Digitized by srujanika@gmail.com

ଯା ଗୁଲ ଯାରେ । ୭୭ । କ୍ଷମାନାଥ କନ୍ଦୁନନ୍ଦ ହରଷେ ଗୋବନ୍ଦ, ଖେଡ଼ ଘରେ ରସ କଲେ ଚଉଷଠି ବନ୍ଧ, କ୍ଷୀର ମାର ଗୀରନ୍ତରେ, ନାଗର, ଭଣେ ଶ୍ୟାମ ଜନ୍ଦ ରସ ଯା ଗୁଲ ଯାରେ । ୭୮ ।

—୦—

( ୪୧ )

(କ) କଳକ ଉଦସ୍ତ ବେଳ ହୋଇଲାଣି ନାଶ ଯିବ କଳି-କାଳ । କଳା ଧଳା ବେନ ଅଶ୍ୱରେ ଚଢ଼ିଣ କଲ୍କିଯିବେ କେତେ ଗୋଳ ଯେ । ହେଉଥିବ ରଣ ସଜ୍ଜା । ହଜାର ହଜାର ଖସିଯାଉ ଥିବେ ବାଜବ ଡିଣ୍ଡିମ ବାଜା ଯେ । ୧ । ଖଣ୍ଡା ବାର ହାତ ନେମାଳ ମଠରୁ ଆଦିମାତା ଦେବ ନେ.. । ଖଣ୍ଡ ଖଣ୍ଡ କରି ମ୍ଳେଚ୍ଛ ସଂହାରିବେ ଖଣ୍ଡା ଦାଢ଼କୁ ବୁଲାଇ ଯେ । ଖଚୂଆ ପଡ଼ିଲେ ଧରି । ଖରିବେଳେ କେତେ ତରି ଉଇଁଥିବେ ଦେଖିବେ ଏ ଦୃଷ୍ଟି ସାରି ଯେ । ୨ । ଗଣ୍ଡା ଗଣ୍ଡା ମେଣ୍ଢା ମୁଣ୍ଡ ଛିଡ଼ ଥିବ ଧଣ୍ଡାମାଳ ପରି ଚକ୍ରି । ଗୁପତରେ ପ୍ରଭୁ ଖେଳ କରୁଥିବେ ଭକ୍ତଙ୍କୁ ରଖିବା ପାଇଁ ଯେ । ଗର୍ଜ୍ଜନ ଘାତ ପଡ଼ିବ । ଗଙ୍ଗା ଯମୁନା ଯେ ଏକଠ ହୋଇଣ ଗୃଭଦରେ ବନ୍ଧିଯିବ ଯେ । ୩ । ଘଡ଼ଘଡ଼ ଚକ୍ରି ଡାକ ପଡ଼ିଯିବ ଘରେ ଘରେ ଯୋଗ୍ନୀ ଗୋଳ । ଘୁମାଇଁ ପଡ଼ିବେ ଯେତେ ନରବଂଶ ଘୋଟିବ ଘୋର ଅନ୍ଧାର ଯେ । ଘେନଥିବେ ଖଣ୍ଡା କାନ୍ଥ । ଘଡ଼ଘଡ଼ି ଶବ୍ଦେ ମୁଣ୍ଡ ଛିଡ଼ିଥିବ ସପ୍ତଦିନ ସପ୍ତରାତି ଯେ । ୪ । ଉଦସ୍ତ ବଟରେ ଉତ୍ତରୁ ଆସିବେ ପଞ୍ଚୁପାଣ୍ଡବ ନକୁଳ । ଅମାବାସ୍ୟା ନକ୍ଷିଟେ ଚନ୍ଦ୍ରଉଇଁଥିବ ପୃଥ୍ୱୀ ହଣିବ ଉଜ୍ଜ୍ୱଳ ଯେ । ଉମାପନ୍ତ ଥିବେ ଚକ୍ରି । ଉଚାରିବେ ସ୍ତୁତି ଭକ୍ତଙ୍କୁ ଘେନିଣ ଗାନ୍ଧ ମନ୍ଦିରରେ ରଖିବେ ଯେ । ୫ । ଚଣ୍ଡୀ ଚାମୁଣ୍ଡାଇ ଚମକାଇ ଦେଇ ରକତ ପିଇଣ ଯିବେ । ଚେହେର ଚେଣ୍ଟ ଖଣ୍ଡ ଖଚୂଆ ମିଞ୍ଚୁଆ ଯୋଗ୍ନୀ ମୁଖରେ ପଡ଼ିବେ ଯେ ଚମକିବ ଚଉଦିଗ । ଚଳୁରପଣ କାହାରି ନ ରହିବ ହେବ ଆଦିମାତା ଭାଗ ଯେ । ୬ । ଛୁଡ଼ି ଦମ୍ଭ କରିଯେତୁ ଥିବ ରହି

ଦେଖିବେ କଳଙ୍କି ଖେଳ । ରୂପ ଟେକି ଦେବେ ନିଜ ଗୁରୁଦେବ ଅନନ୍ତ ହେବେ ଭୂପାଳ ଯେ । ଗ୍ରନ୍ଥଆ ନନ୍ଦଅ କେନ୍ଦ୍ର । ଛନ୍ନ ଛନ୍ନ କଳିଯୁଗ ହୋଇଲାଣି ଗଲ୍ଲବେଳେ ଦେବ କନ୍ଧ ଯେ ॥ ଜଗା ଜଗି ବେଳ ଆସି-ଲାଣି ଧରି ଯୋଗିନୀ ହସ୍ତରେ ଖପର । ଜବାବ ମାଗିବା ବେଳେ ଆଦିମାତା ଥରସିବ ଚିନପୁର ଯେ । ଯୁଗ ଶେଷ ବେଳ ଏହୁ । ଜବାବ ନ ଦେଲେ କାନ୍ତାମାନେ ଯେ କବଳ କରିବେ ନେଇ ଯେ । ୮ । ଝଡ଼ ତୋଫାନ ଯେ ସପ୍ତଦିନ ହେବ ଝାମ୍ପି ଯେବେ ଯିବେ କାଳ । ଝାଡ଼ ବାଡ଼ ଭାଙ୍ଗି ସୈନ୍ୟ ରହିଥିବେ ରସ୍ମୁକ୍ତ ଦେଖିବା ବେଳ ଯେ । ଝାଉଁଳ ପଡ଼ିବ ନାହିଁ । ଝଞ୍ଜିକା ଭିତରୁ ଯେ ବଞ୍ଚି ରହିବ ବହିନ ହୋଇବ ସେହି ଯେ । ୯ । ନର ନାରୀ ଆଠପଦ୍ମ ରହିଥିବେ ନୂଆ ହୋଇବ ସର୍ଜନା । ନିତ୍ୟ ସ୍ଥଳ ଖେଳ ମର୍ତ୍ତ୍ୟରେ ହୋଇବ ଦେଖିବ ନୟନ ପିନା ଯେ । ନୂତନ ଧରିବ ଅଙ୍ଗ । ନାମ ଆଶ୍ରିତ ଯେତେ ଭକ୍ତ ଭ୍ରମର ନୋହିବେ ପୀରତି ଭଙ୍ଗ ଯେ । ୧୦ । ଟାକ ବସିଅଛୁ ଦାଉରେ ମଣ୍ଡଳେ ମୀନ ପ୍ରାପ୍ତେ ଟେକ ନେବ । ଟମକ ବାଦ୍ୟରେ ନବଖଣ୍ଡ ମଧ୍ୟ ଉଲ୍କା ପାତରେ କମ୍ପିବ ଯେ । ଟିକେ ମାତ୍ର ଦେଖ ରହୁ । ଟାଣ ପଣେ କାର ଗର୍ବ ନ ରହିବ ଅଚ୍ଛୁ ବଇଶୀ ବଢ଼ାଇ ଯେ ॥ ଠାବେ ଠାବେ ଗୋଳ କନ୍ଦଳ ଉଠିବ ଠୁଳଶୂନ୍ୟ ପରିଯନ୍ତେ । ଠିଆ ହୋଇ ମାତା ପରୀକ୍ଷା ମାଗିବେ ଭକ୍ତଙ୍କୁ ପୋଛୁ ପଣନ୍ତେ ଯେ । ଠିକେଣ ଶ୍ରୀଗୁରୁ ବାଣୀ । ଠକାଠକ କଥା ନୁହଇ ସୁଜନେ ଶ୍ରମ ଅରକ୍ଷିତ ଭଣି ଯେ । ୧୨ ।

(ଡ) ଡୁବିବ ବ୍ରହ୍ମାଣ୍ଡ ପୃଥ୍ୱୀ ନବଖଣ୍ଡ ଡାକ କହୁଛନ୍ତି ଶୁଣ । ଡକାଯୂଥମାନେ କର୍ମ ଆଦରିବେ କଳିର ଏତିକ ଗୁଣ ଯେ ॥ ଡାକେଣୀ ହୋଇବେ ବୁଢ଼ା । ଡାକ ହାକ କରି ମ୍ଳେଚ୍ଛ ସହାରିବେ ଗଡ଼ୁଥିବେ କେତେ ମଡ଼ା ଯେ ॥ ଡାକୁଣୀ ପିଟିବ ଅନନ୍ତ ଗାଦିରେ ଢଳୁଥିବେ ବ୍ରହ୍ମରୂପ । ଢୋଲ ଟମକ ନିଶାଣ ବାଜୁଥିବ ଦେଖିବେ

Digitized by srujanika@gmail.com

ସମସ୍ତ ଲୋକ ଯେ । ତାଙ୍କି ରଖିବେ ଶୀଘ୍ର ରୁ । ଢେଙ୍କାନାଳ ଠାରୁ ଭକ୍ତ ସଂଖ୍ୟା ହେବ ଲେଖା ହୋଇଛି ଆଦ୍ୟରୁ ଯେ ॥ ଅନନ୍ତ ଠାକୁର ବଳେ କରିଥିବେ ଅନ୍ତର୍ଯାମୀ ନାରାୟଣ । ଅମୃତ ବରଷା ସ୍ୱର୍ଗରୁ ହୋଇବ ଅନନ୍ତ ମଧ୍ୟ କ୍ଷେମେଣ ଯେ । ଆଦ୍ୟମାତା ଥିବେ ରହି । ଅଚେତା ଭକ୍ତଙ୍କୁ ଚେତା କରାଇବେ ଅମୃତ ଲୋଚନେ ଚାହିଁ ଯେ ॥ ତାରିବାକୁ ଗୁରୁ ଆସିଲେ ଶନ୍ୟର ଚରଣୀରେ ବସି ଯାଇଁ । ତରାଇ ହସ୍ତରେ କାଚ ରହିଅଛି ଶିରକୁ ଦେବ ଲଗାଇ ଯେ । ତାରିବା ପଥକୁ ଧରି ତରତର ବଳଯୁଗ ହୋଇଲାଣି ତତ୍ତ୍ୱ ମନରେ ବିଚାରି ଯେ । ଥର ଥର କରି କେତେ ବୁଝାଇବି ଥପୁରେ ବିଚାରି କରି । ଆଠ ପହୁଞ୍ଚିବେ ଦକ୍ଷିଣ ଦିଗରୁ ପିଇବେ କଞ୍ଚା ରୁଧିର ଯେ । ଥସ୍ଥିତି ନ ରହିବ । ସ୍ଥାନ ଗୁଡ଼ ଦେବତାଏ ପଳାଇବେ ମହା ଅନର୍ଥ ହୋଇବ ଯେ ॥ ଦୁର୍ଗା ସପ୍ତଭୁଜେ ଖପର ଧରିଣ. ଖର ନିଃଶ୍ୱାସ ଛାଡ଼ିବେ । ଦ୍ୱାପର ଯୁଗରୁ ଅନାହାରେ ଅଛି, ରକ୍ତ ପିଇ ଶାନ୍ତ ହେବେ ଯେ । ଦୟା ଧର୍ମ ତାର ନାହିଁ । ଦେଖିବ ଯେ ଦୃଢ଼ ଭକ୍ତ ରହିଅଛି, କୋଳେ ବସାଇବେ ନେଇ ଯେ । ୧୮ । ଧାରି ଧାରି ହୋଇ ଧରଣୀ ମଣ୍ଡଳେ, ରକ୍ତ ନଦୀ ବହିଯିବ । ଧମକାଇ ଦେଇ କଳଙ୍କ ଅସୁର, ଧର୍ମ ସଙ୍ଗେ ବାଦୀ ହେବ ଯେ । ଧନୀଏ ହୋଇବେ ଛୁଡ଼ା । ଧାନ ଟଙ୍କା କେତେ ଦୁର୍ଭିକ୍ଷେ ବାଣ୍ଟିବେ, ଚରିଯିବେ ହସ୍ତୀ ଘୋଡ଼ା ଯେ ॥ ନୂତନ ସର୍ଜନା ବ୍ରହ୍ମାଣ୍ଡ ହୋଇବ ନଚ୍ୟ କଳି ଖେଳ ଏହି । ନଜେ ରୁଦ୍ରଦେବ ଶାଢ଼ୀ ବାନ୍ଧି ଦେବେ, ଅନନ୍ତଙ୍କ ଶିରେ ନେଇ ଯେ । ନାରୀଏ ମଣ୍ଡନେ ଥିବେ । ନୂତନ ବସନ ଶ୍ରୀଫଳ ନେଇଣ, ଶ୍ରୀମୁଖରେ ବନ୍ଦାଇବେ ଯେ । ୨୦ । ପରିହରି ବୁଝିବା ବେଳେ ଆଦ୍ୟମାତା, ଭକ୍ତ ହେବେ ଛନ୍ନ ଛନ୍ନ । ପରୀକ୍ଷା ନ ହୋଇ ଯେତେ ସନ୍ତ ସନ୍ଥ, ପଡ଼ିଯିବେ ମୋହେ ଜାଣ ଯେ । ପରମ ଭକ୍ତଙ୍କ ମେଳେ । ପଣନ୍ତରେ ପୋଛି ନଜ ପୁତ୍ରପରି ନେଇ ବସାଇବେ କୋଳେ ଯେ ॥ ଫରହର ସାରିବାନା

Digitized by srujanika@gmail.com

ବୁଡ଼ି ଥିବ, ଫନ୍ଦା ବୃଦ୍ଧି ହେବ ନାଶ । ଫୁଲପଣେ ଜ୍ଞାନ କାର ନରହିବ, ଫାଟିବ ଦକ୍ଷିଣ ଦେଶ ଯେ । ଫିସାଦ ଉଠିବ ନାହିଁ । ଫରସୀମାନେ ନେଇ ଯୁଦ୍ଧ ଧାଡ଼ି ଦେବେ, ହାରିଣ ଯିବେ ପଳାଇ ଯେ ॥ ବଳୀ ଇନ୍ଦ୍ର ହେବ ସତ୍ୟ ଉପୁଯିବ. ବାଜୁଥିବ ଖେଣ୍ଣା ଭୁଷା । ବନ୍ଦାପନା ଅର୍ଘ୍ୟ-ସ୍ଥାନ ଦେବଙ୍କର ବନ୍ଦାଇବେ ଅପସରା ଯେ । ବାନା ଉଡ଼ିବ ନୂତନ । ସାର ଦେଶ ହେବେ ଅନନ୍ତ କୋଟି ସାଧୁ, ଚଉଷଠି ସିଦ୍ଧଗଣ ଯେ ॥ ଭାରତ ଖଣ୍ଡରେ ଭାରଦା ଉଠିଛି, ଭ୍ରମଖଣ୍ଡ ଭୂମି ଏହି । ଭୈରବୀ ଡାକରେ ଅଧେ ନାଶ ଯିବେ କହୁଛି ମୁହିଁ ବୁଝାଇ ଯେ । ଭାରତ ଯୁଦ୍ଧ ହୋଇବ । ଭଜ ଶ୍ରୀଗୁରୁଙ୍କୁ ଧ୍ୟାନେ ଶ୍ରୀମ ହୋଇ, ଆଜ୍ଞା ହେଲେ ପାପୀ ଯିବ ଯେ । ୨୪ ।

(ମ) ମଲ୍ଲ ମଲ୍ଲ ଡାକ ସାତଥର ହେବ ମରିବେ କର୍ମ ଆଦରି । ମାତାଙ୍ଗୀ ହୋଇଣ ନାଗୀଏ ନାଚିବେ ମୋହିନୀ ରୂପକୁ ଧରି ଯେ । ମହିମା ଆଶ୍ରୟ କର । ମହିମା ଯୁଦ୍ଧରେ ସତ୍ୱ ଆଦ୍ୟମାତା ଧରି ଥିଲାଟି ଖପର ଯେ । ୨୫ । ଜାରି ହେବ ତହିଁ ନବଖଣ୍ଡ ମଧ୍ୟ, ଯୁଗ ଶେଷ ବେଳ ଜାଣି । ଜଗନ୍ନାଥ ସ୍ୱାମୀ ସତ୍ୟ ଅଛି ସାରୁ ଧରା ହୋଇବେ ଯେ ପୁଣି ଯେ । ସମୁଦ୍ରେ ଥିବେ ରହି । ଜାନୁଆରୀ ମାସେ ଏ କଥା ହୋଇବ, କହିଲି ମୁହିଁ ବୁଝାଇ ଯେ । ୨୬ । ରଡ଼ିଘାତେ ଛନପୁର ଝଡ଼ି ଯିବ କାଳିକା ପ୍ରତାପ ହେବ । ରକ୍ତ ହେଙ୍ଗୁଳ ଆକାଶୁ ବରଷିବ, ନଦୀ ରକତ ହୋଇବ ଯେ । ସତ୍ତ ଗ୍ରାସିବ ବ୍ରହ୍ମାଣ୍ଡ । ଅବ ଚନ୍ଦ୍ର ଦୁହେଁ ଅଦୃଶ୍ୟ ହୋଇବେ ଶୃଗାଳ ଡାକ ପ୍ରଚଣ୍ଡ ଯେ । ୨୭ । ମାଳଗିରି ଠାରୁ ଋଷିକୁଲ୍ୟା ଯାଏ, ବଇ-ତରଣୀ ଆଦି କରି । ନାଗମାନେ ତହିଁ ହୁଳହୁଳି ଦେବେ, ପୂରିବ ଏ ବସୁନ୍ଧରା ଯେ । ଲବଣ ଅମୃତ ହେବ । ନକୁଳ ସାର କୁଳକୁ ବୁଲା-ଇଣ, ସୈନ୍ୟକୁ ଛନାଶୁ ଥିବ ଯେ । ୨୮ । ଧନଗା ସୁଠ ଯେ ବନ୍ଧ ଘେନଯିବ, ଭଣ୍ଡାର ହୋଇବ ଶୂନ୍ୟ । ବାଛି ବାଛି କରି ଭକ୍ତଙ୍କୁ

Digitized by srujanika@gmail.com

ରଖିବେ ଅନ୍ତର୍ଯ୍ୟାମୀ ଭଗବାନ ଯେ । ଗ୍ରନ୍ଥ ଅନଳେ ଜାଳିବେ । କାରଣ ବେଳକୁ ଭକ୍ତଙ୍କୁ ନେଇଣ, ଆଦ୍ୟମାତା ଚେତାଇବେ ଯେ ॥ ଶନିଶ୍ଚର ସଞ୍ଚାରଣ ମେ ନକ୍ଷତ୍ର, ଜନ୍ମେ ହେବେ ସେ କାଳର । ଶବର ହସ୍ତରେ ଶର ହୋଇଥିବେ, ସୈନ୍ୟ ବଧିବେ ଅପାର ଯେ । ଶର ପିଠରେ ଅର୍ଜୁନ । ଗୋଟିଏକ ମ୍ଳେଚ୍ଛ ଗ୍ରହଣ ନ ଦେବେ, କହୁଛି ସତ୍ୟ ବଚନ ଯେ । ୩୦ । ଷୋଳ ମଣ୍ଡଳୀ ଯେ ପରୀକ୍ଷା ହୋଇବ, ଶଙ୍କର ଚର୍ମରେ ଥିବେ । ସାନ ଲୋକମାନେ ପରୀକ୍ଷା ଦେଇଣ, ବିବେକ ସେ ବୋଲାଇବେ ଯେ । ସମ୍ବଲପୁରରେ ଠୂଳ । ସୁଧର୍ମ ସଭାରେ ସନକ, ଜନକ, ଚୌଦିନ ଅଙ୍କରେ ମେଳ ଯେ । ୩୧ । ଶନିବାର ଦିନ ସତ୍ୟ ଉପୁଜିବ, ସାନବଡ଼ ସବୁ ସର । ଅମୃତ ବରଷା ସ୍ୱର୍ଗରୁ ହୋଇବ, ଦିବସ ନୋହିବ ବାର ଯେ । ସୁରପତି ଇନ୍ଦ୍ର ଆସି, ଶୂନ୍ୟ ବିମାନରେ ଅର୍ଘ୍ୟ ବଢ଼ାଇବେ, ପ୍ରଭୁ ହେଉଥିବେ ଖୁସି ଯେ ॥ ହରଷ ହୋଇବେ ଭକତ ସକଳ, ହରିବେ ପ୍ରଜାଙ୍କ ଦୁଃଖ । ହରି-ବୋଲ ହୁଳହୁଳି ଶବଦରେ, ପୂରିବ ଏ ତିନିଲୋକ୍ୟ ଯେ । ହନୁମନ୍ତ ବ୍ରହ୍ମା ହେବେ । ହର ଗୌରୀ ଏକାମ୍ର କାନନରେ ବ୍ରହ୍ମବିଦ୍ୟା ଆରମ୍ଭିବେ ଯେ । ୩୩ । କ୍ଷମ ଯିବ ପାପ ଅନାଦି ଅଲେଖ, ଖିଆଲ, ନ ମଣ କେହି । କ୍ଷେମ ଗ୍ରାମ ହୋଇ ଶରଣ ମାଗୁଛି ପ୍ରଭୁ ଶ୍ରୀମୁଖରେ ଯାଇ ଯେ । ଖର୍ବପ ବୁଦ୍ଧି ମୋହର । ଖଣ୍ଡାର ଉପରେ ପଡ଼ି ଜଣାଉଛି ଧରି ଶ୍ରୀ ଗୁରୁ ପଦ୍ମର ହେ । ୩୪ ।

—୦—

## —ପ୍ରଥମ ଭାଗ ସମାପ୍ତ—

ମୁଦ୍ରାକର -ଆଦିତ୍ୟ ପ୍ରିଣ୍ଟର୍ସ, ଅଲିଶା ବଜାର, କଟକ-୨

Digitized by srujanika@gmail.com

# ଦ୍ୱିତୀୟ ଭାଗ

## ( ଭକ୍ତ ଜମ୍ବୁକୃଷ୍ଣଙ୍କର )

(କ) କରୁଣା ସାଗର ଅନାଦି ଈଶ୍ୱର କର କୃପା ବାରେ ଶୂନ୍ୟବାସୀ । କ୍ଷିତିମଣ୍ଡଳରେ ଭ୍ରମି ପରି ପ୍ରଭୁ ଆଜଣେ ମୁଁ ଯାଉଅଛି ଭାସି । ତୁ ରୁ ମହିମା ହେ । ଘୋଟିଅଛି ତ୍ରିଭୁବନ ମଧ୍ୟେ । ଅନାଥ ହୋଇଛି କେଉଁ ପଥେ ଯିବି ତ୍ରିଭୁବନେ ଠାବ ମିଳୁନାହିଁ ॥ ଚିନ୍ତାସାଗରରେ ଭେଳା ବୁଡ଼ି ଅଛି ବୁଝିଲେ ନ ଦିଶେ ବାଟ ମୋତେ । ସ୍ତୁତି ଫୁଲାଇ ଗର୍ଜନ କରୁଛନ୍ତି ଦୁଷ୍ଟଙ୍କ ଭାଷା ସହିବି କେତେ । ଯୋଗ ଯୋଗୀନ୍ଦ୍ର ହେ । ଝାଡ଼ି ଭିତରେ ପଡ଼ିଛି ଏକା ନିଜ ମହିମାକୁ ଆଶ୍ରୟ କରିଛି କେହି ନାହିଁ ମୋର ସଙ୍ଗ ସଖା । ୨ । ଟିଆ କଣ୍ଠ ଦେଇ ଯାଇଥିଲି ପ୍ରଭୁ ଟଳିବ ପରି ଅବନ ଭାର । ଠାକୁରଙ୍କ କଥା ନୁହଇ ଅନ୍ୟଥା ନ ମେଣ୍ଟେ କେବେ ପାଷାଣ ଗାର । ଡାକି କହୁଛି ହେ । ଠାକୁରଙ୍କେ ସଙ୍କେ ହେଲେ ବାଇ । ଅମେଳଣେ କୁଣେ ମେଳ ପାଞ୍ଚ ଛନ୍ତି କେ ସହିବ ନର ଦେହି ବହି । ୩ । ତାନ କରି ତାଳି ମାରି ଦେଉଛନ୍ତି ହାସ୍ୟ କରି କହୁଛନ୍ତି କଥା । ଥୟ ହୋଉନାହିଁ ପଞ୍ଚଭୂତ ଆତ୍ମା ଉପରେ ନୁଆଁଇ ବସିଛି ମଥା । ଦିନ ଦୟାଳୁ ହେ । ଧର୍ମ ଅପରାଧ ଅଟେ ଯଦି । ନିଜ ଗୁରୁଦେବ ଜାଣି ଦଣ୍ଡ ଦିଅ ନୋହିଲେ ଏ ଶିର ଦିଅ ଛେଦି ॥ ପିଣ୍ଡକୁ ଘେରି ପ୍ରଭୁ ଭୟ ମାଡ଼ି ଅଛି ଦେଖି ଅନ୍ୟାୟର ଦୁରୁଦଣ୍ଡ । ଫେଡ଼ି କହୁଅଛି ଶିରେ କରଯୋଡ଼ି ଅଭୟ ପାଦେ ସମର୍ପି ପିଣ୍ଡ । ବାନା ଉଡ଼ୁଛି ହେ । ଭାଗ କରିବ ପରି ଉଶ୍ୱାସ । ମହିମା ନାମକୁ ନିନ୍ଦା କରୁଛନ୍ତି ମଣୁଛନ୍ତି ଅଣ ଅବିଶ୍ୱାସ । ୪ । ଜାତିରୁ ଅଜାତି କରି ଦେଉଛନ୍ତି ଜଣାନାହିଁ ସତ୍ୟଯୁଗ ଧାରି । ରଜ ତମ ଗୁଣେ ପଡ଼ି ମୂଢ଼ ପଣେ ନିନ୍ଦେ୍ୟ କରୁଛନ୍ତି ପରବାରି । ମିଳିପେ ପଡ଼ି ହେ । ବ୍ରହ୍ମାଣ୍ଡ ହେଲେଣି ପରପଞ୍ଚ ।

Digitized by srujanika@gmail.com

ଶ୍ରୀବନ୍ତ ହୋଇ ଜଣକେ ଦେଖା ନାହିଁ ମିଥ୍ୟା କହୁ ଖାଉଛନ୍ତି ଲଞ୍ଚ । ଶ୍ରୀଚରଣ ତଳେ ଶରଣ ପଶୁଛୁ ଦନ୍ତରେ ଧରଣ ତରଣ । ସ୍ୱାମୀଙ୍କ ପାଦେ ମୋ ସକଳ କଥା ସ୍ୱାମୀ ତ ଜାଣ । ହେଳା ନ କର ହେ । ହରଷରେ ଭୁଞ୍ଜ ମଣା ହେଉ, ଛମେ ଜସ୍ମୀ ଧ୍ୟାନ କଲି ଯା କଣାଣ ଷିତ ମଧ୍ୟ ଭୁମ୍ବ ଯଶ ରତ୍ନ ॥

—o—

( ୪୩ )

(ଷ) ଛମାସାଗର ଶ୍ରୀଗୁରୁ କହୁଛନ୍ତି ମନରେ ନ କର କନ୍ଥ ଚନ୍ତା । ହରିବ ଏଥର ବ୍ରହ୍ମାଣ୍ଡର ଭାର ଶିଆଳ ନକର ଜନ କଥା । ସତ୍ୟେ କଥାକୁ ଯେ । ସହଜେ ବକୃତ ବର୍ତ୍ତିଲେ । ସାହସରେ କେତ୍ଥ ନଆଁ ଗିଳକରି, ବର୍ତ୍ତିପାରିବ କ ରବ ତଳେ । ସବ ସମାନରେ ସଂସାର ଭିତରେ, ନସ୍ଥାମ ଧର୍ମକୁ ସ୍ଥାପି ଦେଲି । ବଡ଼ ସାନ କେହୁ କାହାକୁ ନ ମାନ, ସର୍ବେ ଯାଉଛନ୍ତି ଏଥିବନ୍ତି । ଲଘୁ ହୋଇବେ ଯେ । ଯେଉଁମାନେ ଧର୍ମ ନ ମାନିବେ । ରହ ତଳେ ତାଙ୍କ ମହନ୍ତ ସରିବ, ଲକ୍ଷେ ଜନ୍ମ ନର୍କେ ପଡ଼ିଥିବେ । ୨ । ଭବ ଭକତରେ ଯେଉଁ-ମାନେ ଥିବେ ମୁକ୍ତି ପଦ ତାଙ୍କୁ ନସ୍ଥେ ଦେବ । ବନେ ବା ଭୁବନେ ଯେ ଯହିଁରେ ଥାଉ, ଅବଶ୍ୟ ଉଦ୍ଧାର କରିନେବ । ଫେଡ଼ କହୁଛୁ ଯେ । ପ୍ରକୃତ ପ୍ରଳୟ ଦେବ ବାଟି । ନସ୍ତ୍ରୟ କହୁଛୁ ଏ ମହୀମଣ୍ଡଳେ ଜନ୍ମିଇବ ସତ୍ୟ ସାଧୁ ଗୋଷ୍ଠୀ ॥ ଧର୍ମ ଧାରି ଗୁଡ଼ ଅଧର୍ମରେ ପଡ଼ ହେଉଛନ୍ତି ପ୍ରାଣୀ ଉନମତ୍ତ । ଦେବାଦେବୀ ଶାର୍ଥ ବ୍ରତେ ଦଗଧା ହୋଇ ଚହ୍ନି ନ ପାରିଲେ ସାଧୁ ସନ୍ଥ । ଅପ୍ସ କରଣ ଯେ । ତତ୍ତ୍ୱ ନ ଭଜିଲେ ନଜ ନାମ । ଅବଶ୍ୟ ତାହାଙ୍କୁ ଲୁହା ଶିକୁଳିରେ ବାନ୍ଧ କରି ଦଣ୍ଡ ଦେବ ଯମ ।୩। ତଳି ପଡ଼ିବେଟି ତ୍ରମ ତମାଳିଆ, ଜନ କଥା ତାଙ୍କୁ ନାହିଁ ଜଣା । ଡାକ କହୁଛନ୍ତି ଏ ମହୀମଣ୍ଡଳେ, ଚକ୍ଷୁ ଥାଉ ସର୍ବେ ହେବେଲି କଣା । ଠିକ୍ କଥାକୁ ଯେ । ଟିଆକୁ ଯେ ଟାକଥିବ ରହୁ ।

Digitized by srujanika@gmail.com

ନିଦାନ କହୁଛି ବ୍ରହ୍ମାଣ୍ଡ ଭିତରେ ସତ୍ୟ ଯୁଗକୁ ବହନ ମୋହ । ୫ ।
ଝାଡ଼ ମଧ୍ୟେ ବଣି ଜାଳି ଦବା ରୀତି, ଉଜ୍ଜ୍ୱଳ କରିଉଅଛୁ ମହୀ । ଜୀବ-
ନକୁ ଆଶା ଅଛୁ ଯା ବିଶ୍ୱାସ, ଭଜୁଥାଅ ପିଣ୍ଡପ୍ରାଣ ଦେଇ । ଛଛନ୍ଦ୍ରର
ଯେ । କ୍ଷିରଯୁଗ ଭକ୍ତ ହେବେ ରୁଣ୍ଡ । ଉଦେଠାରୁ ହସ୍ତ ପରିଯନ୍ତେ
ପୁଣି ନୁଆରି ହୋଇବ ଏ ବ୍ରହ୍ମାଣ୍ଡ ।୬। ଘୋଟିବେ ଧରଣୀ ଭକ୍ତକୁଳ
ଶ୍ରେଣୀ ଅଭକ୍ତରେ ଜଣେ ହେଁ ନ ଥିବେ । ଗାଈ ଗୋରୁ ପଲ ହେବେ
ଅପ୍ରବଳ, ଘୃତେ ଧ୍ୱନ କୁଣ୍ଡ ପୁରାଇବେ । ଖାଇ ପିଇଣ ଯେ । କରୁ-
ଥିବେ ଭକ୍ତେ ନୃତ୍ୟ ଗାନ । କହେ ଜଇ ଖାନ ଶ୍ରୀମୁଖ ବଚନ
ତ୍ରିକାଳରେ କେବେ ନୁହେ ଆନ । ୭ ।

—୦—

( ୪୪ )

(କ) କର୍ଣ୍ଣ ମନଗ୍ରନ୍ଥି ରି କରି ଯୁଞ୍ଜ ନରି ଶୁଣ କରିତାଙ୍କ ଚରିତ ।
କଳିଯୁଗ କାଟି କରିବା ନିମନ୍ତେ ମର୍ତ୍ତ୍ୟରେ ହେଲେଣି ଉଦିତ ।
ସୁଜନେ । କାର୍ତ୍ତିକ ଅପ୍ରତେ କରୁଛ । କହୁଅଛୁ ସତ ଶୁଣ ସାଧୁସନ୍ଥ
ପ୍ରତ୍ୟେକ୍ଷ ଅଛନ୍ତି ଅନନ୍ତ ॥ କ୍ଷମା ସତ ଶାନ୍ତି ଦୟା ଧର୍ମଜ୍ଞାନମାର୍ଗରେ
ସବୁଙ୍କୁ ଦେଖିବେ । ଖେଳ ଉଠାଇବେ ଅବଧି ବ୍ରହ୍ମ ନିସ୍ୱାମେ ପ୍ରତ୍ୟକ୍ଷରେ
ଲୋକ ଦେଖିବେ । ସୁଜନେ । କ୍ଷୀଣ ବୁଦ୍ଧରୂପ ଦିଶନ୍ତି । କ୍ଷିତି ରକ୍ଷା
ଅର୍ଥେ ବିଜୟେ ଜଗତ ଚିହ୍ନସେ ପୁରୁଷଙ୍କୁ ଚେତି ।୨। ଗୁରୁ ସ୍ୱରୂପଙ୍କୁ
ଉପମା ଦେବାକୁ ଲକ୍ଷ୍ୟ ନାହିଁ ତିନି ଭୁବନେ । ଗତି ମୁକ୍ତି ପଥ
ହେଉଛି ଯାପତ ପ୍ରତ୍ୟକ୍ଷେ ଦିଶୁଛି ନୟନେ । ସୁଜନେ । ଗୁପତ
ରହିସ ମଣ୍ଡଳ । ଜ୍ଞାନ ଗତି ମୁକ୍ତି ବାଣ୍ଟି ଦେଉଛନ୍ତି ଚାରି ବେଉ-
ଛନ୍ତି ସକଳ । ୩ । ଘୋର କଳିଯୁଗେ ଯେତେ ପାପ ଭାର ସକଳ
ହୋଇବ ଉଶ୍ୱାସ । ଚେତନ ଭକ୍ତଙ୍କୁ ଖେଳ କରୁଛନ୍ତି ଅନାଦି ସେ
ଶୂନ୍ୟ ପୁରୁଷ । ସୁଜନେ । ଚେଟିଲାଣି ଶୁଦ୍ଧ ମହାକ । ଚୌଦ ଚଉଦ
ଜଗତ ଭକତ ଯେ ଅଲେଖ ଗୁରୁ ସ୍ୱାମୀଙ୍କି । ୪ । ଉଦେ ହେଉଛନ୍ତି

Digitized by srujanika@gmail.com

ଅଶେଷ ବ୍ରହ୍ମଣ୍ଡେ ସେ ଅଲେଖ ନିଜମହିମା । ଉପମା ଦେବାକୁ ପ୍ରଭୁଙ୍କ ରୂପକୁ ଲକ୍ଷ୍ୟ ନୁହେ ରବି ଚନ୍ଦ୍ରମା । ସୁଜନେ । ଉତ୍ତମ ପୁରୁଷ ରତନ । ଉଦ୍ଧାର କରିବେ ବିପୁଳ ଜଗତ ଭଜୁଥାଅ କରି ଯତନ ।୫। ବୁଲି ଯାଉଛନ୍ତି ମେଦିନୀ ଉପରେ ଦର୍ଶନ କର ଚରଣ । ସ୍ପର୍ଶି- ଦେଲେ ଧୀରେ କୋଟି ପାପ ହରେ ପିଣ୍ଡ ବ୍ରହ୍ମାଣ୍ଡକୁ କାରଣ । ସୁଜନେ । ଚମତ୍କାର ମଣି ସମସ୍ତେ । ସ୍ୱର୍ଗୁଁ ସ୍ୱର୍ଗୁଁ ଦେଖି ଦେବାଦେବୀ ଯାକ ପଳାଇ ଗଲେଣି ତରସ୍ତେ ।୬। ଛାଡ଼ି ବ୍ରହ୍ମବାସୀ ସେବା ଲାଗି ଛନ୍ତି ଅଭୟ ଚରଣ କମଳେ । ଛଶୀ ଖାର ବଧୂ ବାନା ଉଡ଼ୁଅଛି ଏକୋଇଶ ବ୍ରହ୍ମାଣ୍ଡ ଉପରେ । ସୁଜନେ । ଗୁଡ଼ ନାହିଁ ଧର ଧର୍ମକୁ । ଗୁଡ଼ିଗଲେ ପଛେ ଅଗାଡ଼ ହୋଇବ ନିନ୍ଦା ଦେବ ନାହିଁ ପ୍ରଭୁଙ୍କୁ ।୭। ଜଗତ କରତା ଜାଗ୍ରତ ସିଦ୍ଧିତା ଯୋଗୀନ୍ଦ୍ର ଅମର ଅମୃତା । ଜଗୁ ଜୀବନ କରତା ଶୂନ୍ୟ ବ୍ରହ୍ମ ବଳେ କରିଛନ୍ତି ଧରତା । ସୁଜନେ । ଜାଗି ରଖିଛନ୍ତି ଧର୍ମକୁ । ଯୁଗ ଶେଷେ ଆସି ବଳେ ଶୂନ ବାସୀ ଘେନିଣ ଅକର୍ମ କର୍ମକୁ ।୮। ଝର ଝର ପାଦୁ ସୁଧା ବରଷୁଛି ଝାଳିବେ ବିଷୟୀ ବିଷକୁ । ଝାଳିବେ ଭକ୍ତଙ୍କୁ ବ୍ରହ୍ମଜ୍ଞାନ ତେଜେ ତାରି- ନେବେ ତାଙ୍କ ଦାସଙ୍କୁ । ସୁଜନେ । ଝିମିଟି ନିସତ ନ ହୁଅ । ଝିଗଡ଼ା ଝଞ୍ଜାଳ ସବୁ ଗୁଡ଼ି କରି ଉଦାସ ଚିତ୍ତେ ଭଜୁଥାଅ ।୯। ଲୀଳା କରୁଛନ୍ତି ନିଷ୍କାମ ଯୋଗରେ ଘେନି ମହାନତା ମଣ୍ଡଳ । ନରେନ୍ଦ୍ର କୁମାରୀ ଅର୍ଘ୍ୟ ବନ୍ଦାଇବେ ମୁଖରେ ଦେଇ ହୁଳହୁଳି । ସୁଜନେ । ନବ ରଙ୍ଗେ ହୋଇ ସୁବେଶ । ନୃତ୍ୟ କରୁଥିବେ ଅପ୍ସରୀ ବୃନ୍ଦ ଆକାଶୁ ବରଷିବ ପୁଷ୍ପ ।୧୦। ଟିଆ କଣ୍ଠ ହୋଇଲଣି ଆସି ଟିକିଏ ବିଳମ୍ବ ନ କର । ଟାଳିବେ ବ୍ରହ୍ମାଣ୍ଡେ ଯେତେ ପାପ ଭାର ଟିକିଏ ମନୁ ନ ପାଶୋର । ସୁଜନେ । ଟେକ ଭଜୁଥାଅ ନାମକୁ । ଟେକ ଦେଇଛନ୍ତି ଅଲେଖ ବାନାକୁ ବ୍ରହ୍ମଜ୍ଞାନେ ତାରି ନେବାକୁ ।୧୧। ଠିକେ କହୁଅଛି ଠିକଣାରେ ଧରି, ଠାବ ପାଇବଟି ନିଶ୍ଚୟେ । ଠକିବ ଛୁଦ୍ର ଠକୁଆ

Digitized by srujanika@gmail.com

ନାହିଁ ଦୁଅ, ଠାର ପାମର ଜାଇ କହେ । ସୁଜନେ । ଠାକୁରଙ୍କ ଖେଳ ବୃତ୍ତାନ୍ତ । ଠିକ୍ ବଚନକୁ ଫିଟାଇ ଦେଲେଣି ଶ୍ରୀପଦ୍ମରେ କର ଆଶ୍ରିତ । ୧୨ ।

(ଡ) ଡଙ୍ଗା ବାହୁଛନ୍ତି ଅଗାଧ ସାଗରେ ଅଲେଖ ମହିମା ଗୋସାଇଁ । ଡାକହାକ ପାରକର ନେଉଛନ୍ତି ଆଜ୍ଞା ନଉକାରେ ବସାଇ । ସୁଜନେ । ଢଙ୍ଗରକୁ ଦେବେ ଭସାଇ । ଡର ଭୟ ଗୁହ୍ୟ ନଉକାରେ ଚଢ଼ି ସୁଚତୁର ଯାଅ ପାର ହୋଇ ॥ ଢାକୁଣୀ ଫିଟାଇ ମୁକତି ପସରା ବସାଇ ଅଛନ୍ତି ବଜାର । ଢେଲ ପକାଇ ନକଟରେ ଚଉଳ କରୁ ଅଛନ୍ତି କାରବାର । ସୁଜନେ । ଢାଳପଦ୍ମରୁ ମକରନ୍ଦ । ଢୋକ ପିଉଛନ୍ତି ଯେତେ ଯଷ୍ଟି ସନ୍ଥ ସୁସାଧୁ ସୁର ମୁନି ସିଦ୍ଧ । ୧୪ । ଅଣାକ୍ଷର ନାମ ଅକ୍ଷର ନିଗମ ଏକାନ୍ତେ ଚଳୁଛି ଭଜନ । ଅଜପା ଗାୟନ ଅବନାର ଜ୍ଞାନ, ପଦ ଅର୍ଥେ କର ପ୍ରଛନ୍ନ । ସୁଜନେ । ଅପୂର୍ବ ଗୀତ ନୃତ୍ୟ ନାଦ । ଆନନ୍ଦ ହୋଉଛି ନବଖଣ୍ଡ ମଣ୍ଡି ନଶାନ୍ତରୁ କ୍ଷର ଶବଦ ॥ ତନ ପୁରକୁ ତାର ନେବା ନିମନ୍ତେ ଉଡ଼ାଇ ଅଲେଖ ବାନାକୁ । ତର ତର ବୁଦ୍ଧ ଟଳେ ମାହ ବୁଦ୍ଧ ଦେଖିବ ସେ ଶୂନ୍ୟ ବ୍ରହ୍ମଙ୍କୁ । ସୁଜନେ । ତାକୁଡ଼ା ଦୁଆରେ ବଜାୟେ । ତ୍ରୈଲୋକ୍ୟ କରତା ଖେଳ କରୁଛନ୍ତି ଭେଦ ଏକୋଇଶ ପୁର ଯାଏ । ସ୍ଥିତ ନାହିଁ ସଦା କାଳରେ ଅଛନ୍ତି ଥପ୍ରରେ କାହିଁ ନ ରହନ୍ତି । ସ୍ଥିତ ଉତ୍ପତ୍ତି ପ୍ରଳୟ ଭଜନଠାରେ ଥିକାଳେ କେବେ ନ ରହନ୍ତି । ସୁଜନେ । ଥକାତ ହେଲେ ସର୍ବେ ଦୁହିଁ । ଥାପନା ଦେବତା ହୋଇଲେଣି ପୋତା ରହିଲେଣି ଅପୂଜା ହୋଇ । ୧୭। ଦୁଃଖୀ ଲୋକ ଦୁଃଖ ସଙ୍ଗାଳ ଅଛନ୍ତି ଦରିଦ୍ର ପ୍ରାଣୀଙ୍କର ଧନ । ଦାତା ଭକତ ସକଳଠାରେ ଜାତା ବତାଉ ଛନ୍ତି ବ୍ରହ୍ମଜ୍ଞାନ । ସୁଜନେ । ଦୃଢ଼ ଧର ତାଙ୍କ ଚରଣ । ଦେବାଦେବୀ ତୀର୍ଥବ୍ରତ ସବୁ ଗୁହ୍ୟ ଉଦେ ଅସ୍ତ କର ଦର୍ଶନ ।୧୮। ଧର୍ମ ଧାରଣାରେ ବ୍ରହ୍ମାଣ୍ଡ ରହିବ ଧ୍ୱନି ହେଉଛି ସତ୍ୟ ସାର । ଧରଣୀ ମଣ୍ଡଳ ଭକ୍ତ ସ

Digitized by srujanika@gmail.com

ହୋଇବ ପାଣି ହୋଇଯିବ ପଥର । ସୁଜନେ । ଧ୍ୱଜ ଧାଇଥିବେ ସେ ମୁନ । ଧାଡ଼ି ଧାଡ଼ି ତ୍ରିଶ୍ୱ ପୁରୁଷ ଧାଇଁବେ; ନଉଦ୍ୱବରୁ ଲୋକେ ଶୁଣି ।୧୯। ଲୀଳା କରୁଛନ୍ତି ନିଷ୍କାମ ଯୋଗରେ ନିକଟରେ ଧର୍ମ ଚଳିଲା । ନୟନରେ ଦେଖୁ ଦେଖୁ ନିମିଷକେ କଳିଯୁଗ ଯିବ ପଳାଇ । ସୁଜନେ । ନିଶି ଦିବସ ଏକ କର । ନଥିବ ବାରଣ ଜାତି ଗୋତ୍ରମାନ ଏକାନ୍ତେ ଏକ ପାଦ ଧର ॥ ପ୍ରଭୁ ପାଦତଳେ ଗତି ମୁକ୍ତି ସବୁ ଭକ୍ତ ଜନକୁ ପ୍ରାପତ । ପତିତ ହୋଇଲେ ରଖିବେ ନିଶ୍ଚେ ଶ୍ରୀପଦରେ କର ଆଶ୍ରିତ । ସୁଜନେ । ପ୍ରକୃତି ବିକାର ନଥିବ । ପାପ ଦୋଷାକ୍ରାନ୍ତ ହୋଇବ କଠିନ ସତ୍ୟ ବ୍ରାହ୍ମଣ ହୋଇବ ।୨୧। ପୂର୍ଣ୍ଣ ହୋଇବ ଜଗତ ଭକତ ଆଶାକାର ଗୁରୁ ଦର୍ଶନେ । ଫିଟିବ କଷଣ କଳୁଷ ନାଶନ ହୋଇଯିବ ଗୁରୁ ବଚନେ । ସୁଜନେ । ପେଡ଼ି କହୁଅଛି ସନ୍ଦେଶ । ଫଳଲୋଭେ ଯେବେ ପଥ ଛାଡ଼ୁଅଛ ପ୍ରଭୁଙ୍କୁ ଦେବ ନାହିଁ ଦୋଷ ॥ ବିଜେ କରିଛନ୍ତି ବତିଶ ବେଢ଼ାରେ ସପ୍ତଫଣୀ ମଣି ଶିଖରେ । ବର ଯାଚି ଦେଉଛନ୍ତି ସମସ୍ତଙ୍କୁ, ବତିଶ ଅଙ୍ଗୁଳି ଉପରେ । ସୁଜନେ । ନରପତି ପରି ଗହଳ । ବୀଣା କଞ୍ଜରୀ ମୃଦଙ୍ଗ ଭେରୀ ତୁରୀ ବାଦ୍ୟରେ ବ୍ରହ୍ମାଣ୍ଡ ଚହଳ ।୨୩। ଆବେ ଗଦ ଗଦ ଭକ୍ତ କୁଳ ବୃନ୍ଦ, ନିଷ୍କାମ ପ୍ରେମେ ପୁଲକିତ । ଭିଡ଼ାଭିଡ଼ି ଅଙ୍ଗ ଭାବ ସାଧୁ ସଙ୍ଗ, ଧାଇଁ ଶ୍ରୀଗୁରୁ ପାଦଗତ । ସୁଜନେ । ଭରସା କରିଛନ୍ତି ବହୁତ । ଭାବି ଭାବି ସାଧୁ ଭକତଙ୍କ ମେଳେ ଭଣେ ଜଶ୍ରୀକୃଷ୍ଣ ଅର୍ପିତ ।

(ମ) ମହିମାକୁ ଭଜ ହିଂସା ବାଦ ଚେତ ମନରୁ ତ୍ରିଗୁଣ ବିକାର । ମନୁଷ୍ୟ ଜନମ କି ଭାଗ୍ୟ ଲଭିଛ ଆଉ ଜନ୍ମ ନାହିଁ ଉଦ୍ଧାର । ସୁଜନେ । ମରଣକୁ ଭୟ ନ କର । ମନରେ ଯେ ଯାହା ବାଞ୍ଛୁଛ କରିଛ ପ୍ରାପତ ହୋଇବ ଏଥର ।୨୫। ଜମ୍ବୁ ଦ୍ୱୀପ ପୃଥ୍ୱୀ ସର୍ବେ ନୂଆ ଗଢ଼ି, ସତ୍ୟରେ ସମସ୍ତେ ଚଳିବେ । ଯେତେବେଳେ ଯାହା ବାଞ୍ଛା କରୁଥିବେ, ଅବଶ୍ୟ ସେ ତାହା ଲଭିବେ । ସୁଜନେ ।

Digitized by srujanika@gmail.com

ଯାଞ୍ଚ ଦେଉଥିବେ ବରକୁ । ଜଗତ୍ର ଭକତ ସର୍ବେ ଏକ ମତ ଲକ୍ଷଣ ସେ ଶୂନ୍ୟ ପ୍ରଭୁଙ୍କୁ ॥ ରସା ମେଦମାନେ ନର ଦେହ ଧରି, ଗୁପତେ ଛନ୍ତି ଉଦେ ହୋଇ । ରୂପ ହୋଇଛନ୍ତି ଅରୂପ ଠାକୁର, କାହାକୁ ତାହା ଜଣା ନାହିଁ, ସୁଜନେ । ରହିଛନ୍ତି ହୋଇ ଗୁପତ । ରୂପ, ଗୁଣ ଦୁଇ କିଛି ତାଙ୍କ ନାହିଁ, ବ୍ରହ୍ମସୂତ୍ରରେ ଏକମତ ।୨୭। ଲକ୍ଷେ କଳ୍ପଗଣ୍ଡା ଯୁଗ ବହିଗଲେ କେବେହେଁ ଦେହ ନ ଛାଡ଼ନ୍ତି । ଲୋଭ ମୋହ କାମ କ୍ରୋଧ କିଛି ନାହିଁ ସଦା କାଳରେ ସେ ଅଛନ୍ତି । ସୁଜନେ । ଲୋଭ ଦାନ ନାହିଁ ତାଙ୍କର । ଲକ୍ଷ ଲକ୍ଷ ଲମ୍ବେ ଲମ୍ବେ ପଡ଼ୁଛନ୍ତି ଅନାଦି ଗୁରୁଙ୍କ ପୟର । ବୁଝାମଣା କରୁଛନ୍ତି ସତ୍ୟ ଧର୍ମ ।୨୮। ଆପ୍ତ ବ୍ୟସ୍ତ ସେବା ଯାହାର । ବାଣ୍ଟି ଦେଉଛନ୍ତି କର୍ମ ଧର୍ମ ଯେଉଁ ଆୟୁଷ ନୋହୁଛି କାହାର । ସୁଜନେ । ବଳ ବପୁ ଧନ ଭଣ୍ଡାର । ବ୍ରହ୍ମଜ୍ଞାନ ଧ୍ୟାନ କବା ରଜ ପଣ ଦାଣ୍ଡିଆ ପୂର୍ଣ୍ଣ ହେବ ସଂସାର ॥ ଶ୍ରୀଗୁରୁ ନାମକୁ ସମପ୍ରେ ଭଜିବେ ଅନ୍ୟ ଭାବନା କର ଦୂର । ଶ୍ରୀ ସ୍ୱାମୀ ବଚନ କେଭେ ନୁହେ ଆନ ନ ମେଣ୍ଟ ପାଷାଣର ଗାର । ସୁଜନେ । ଶ୍ରୀଗୁରୁ ଆଜ୍ଞା ସତ୍ୟ ସାର । ଶ୍ରୀମହିମା ଗାଦି ହେବ ସର୍ବ ସିଦ୍ଧି ଖଟିବେ ଦେବାସୁର ନର । ସର୍ପାଘାତ ହେଲେ ଗୁରୁପାଦ ରେଣୁ ସର୍ବାଙ୍ଗରେ ବୋଳି ହୋଇବ । ସତ୍ୟ ଏ ବଚନ କେଭେ ନୁହେ ଆନ ନଷ୍ଟପ୍ରେ ବିଷ ଝଡ଼ିଯିବ । ସୁଜନେ । ସର୍ବ ବ୍ୟାଧିକି ମହୌଷଧି । ଶମନ ଦଣ୍ଡ ସହିତେ ଘୁଞ୍ଚିଯିବ ସତ୍ୟ ସୁକୃତ ହେବ ସିଦ୍ଧି ।୩୧। ସୁରରାଜ ନର ଗଜ ଖଟିଥିବେ ଶ୍ରୀଗୁରୁ ଆଜ୍ଞା ପରମାଣେ । ଶିରେ ଯୋଡ଼ ହସ୍ତ ମଣ୍ଡି ଗାଦିଗତ ତେତିଶ କୋଟି ଦେବଗଣ । ସୁଜନେ । ସ୍ୱାମୀ ନାମ କରି ଭଜନ । ସ୍ୱର ବୀଣା ଗୀତ ନୃତ୍ୟେ ଉନ୍ମାଦିତ ନାଚନ୍ତି ଅପସରା ଗଣ ॥ ହୁଳ ହୁଳି ଦେଉଥିବେ ଗୁରୁ ବୋଲି ମୁଖେ ଅଲେଖ ନାମ ଗାଇ । ହୋଇବ ହସ୍ତାଏ ମହା ଚତୁର୍ଦ୍ଦଶ ଏକା କୁଟୁମ୍ବ ପ୍ରାପ୍ତ ହୋଇ । ସୁଜନେ । ହେଉଥିବେ ମନେ ଆନନ୍ଦ । ହାଟ ଘାଟ ଲାଟ ନ ଥିଲେ

Digitized by srujanika@gmail.com

କପଟ ଏକ ଭାବରେ ଗଦଗଦ । କ୍ଷିତି ରକ୍ଷା ଅର୍ଥେ କ୍ଷୀଣ ରୂପ ଧରି ଖେଳୁଛନ୍ତି ଦେବଙ୍କ ନୃପତ । ମଣିଷ ଶିଆଳ କଳାପରି ଭକ୍ତ ଆଗରେ ହୁଅନ୍ତି ଉଦ୍ଭତ । ସୁଜନେ । ଖାଇବା ପିଇବା ନୁହନ୍ତି । କ୍ଷଣେ ଭଣେ ଜଳ କ୍ଷଣେ ମର୍ତ୍ତ୍ୟେ ନାହିଁ ଅନୁଭବେ ଚିହ୍ନା ପଡ଼ନ୍ତି । ୩୪ ।

—o—

( ୪୫ )

(କ) କରତାଙ୍କ ଶୂନ୍ୟ ଖେଳା । କହିବା ମହାଆଶ୍ଚର୍ଯ୍ୟ ଲୀଳା । କଳିଯୁଗେ ସାହା ସାହା ହେଲା, ସୁଜନେ ହେ ॥ କ୍ଷମା ମହିମା ଗୋସାଇଁ । କ୍ଷିତିରେ ଆସି ନରଦେହ ବହି । (ଖେଳୁ) ଅଛନ୍ତି ଗୁପତ ହୋଇ, ସୁଜନେ ହେ । ୨ । ଗହନ ମାୟା ସଂସାର । ଗୁପତ ମାୟାକୁ କଲେ ବିସ୍ତାର । ଗାଢ଼ ଖୋଳିଲେ ଯୋରଦାର, ସୁଜନେ ହେ । ୩ । ଘୋର ଅନ୍ଧକାର ଶୂନ୍ୟ । ଘୋଡ଼ାଇଲେ କାୟା ଗୁପତ ହୋଇ । ଘୋଟିଗଲେ ଶୂନ୍ୟପୁର ମହୀ, ସୁଜନେ ହେ ॥ ଅଦଭୁତ ତାଙ୍କ ମତ । ଅନାଦି ଅନନ୍ତ ଯେତେ ଭକତ । ଅଗୋଚର ବସ୍ତୁ ଆଚମ୍ବିତ, ସୁଜନେ ହେ ॥ ଗୁରୁଯୁଗ ଭକ୍ତ ଚହିଁ । ସ୍ୱଚକ ପରାସ୍ତ ଅଛନ୍ତି ରହି । ଚେତା ହେଉ ଗଲା ଭୋଳ ହୋଇ, ସୁଜନେ ହେ ॥ ଘୁଞ୍ଚକରି ଗଲେ ବୋଲି । ଘୁନଆଁ ହୋଇ ଘୁଡ଼ନ୍ତି ବୋହାଳି । ଛନ୍ଦେ ପଡ଼ି ମୁହିଁ ନ ଜାଣିଲି, ସୁଜନେ ହେ । ୭ । ଜଗତ ଜୀବନ ଧନ । ଜଗତ ଭକତ ହେଲେ ଉଛନ୍ନ । (ଜୀବ) ଥାଉଁ ଅଜୀବ ସମାନ ସୁଜନେ ହେ । ୮ । ଝର ଗଙ୍ଗା ନଖ କୋଣେ, ଝରୁଥିଲା ପିଇଲେ ଭକ୍ତଗଣ । ଝଡ଼ିଲା ସବୁ ପାତକମାନ, ସୁଜନେ ହେ ॥ ନିର୍ଗୁଣ ଭକତ ଜନ । ନିର୍ଗୁଣ ପ୍ରଭୁଙ୍କୁ କଲେ ଦର୍ଶନ । (ନିଷ୍ଠା) ଛାତ୍ରେ କାଟିଲେ ତ୍ରିଗୁଣ, ସୁଜନେ ହେ । ୧୦ । ଟମକ ବଜାଇ ରାଜ୍ୟେ । ଟେକ ବାନା ବଜେ କଲେକ ନଜେ । ଠାବ କଲେ ଗଦ ଗଞ୍ଜେ,

Digitized by srujanika@gmail.com

ସୁଜନେ ହେ ॥ ଠାକୁରଙ୍କ ଶ୍ରୀଚରଣ । ଠିକେ ଜୟକୃଷ୍ଣ ପଶେ ଶରଣ । ଠଉରାଇବେ ଲକ୍ଷିଲ ଜନ, ସୁଜନେ ହେ । ୧୨ ।

(ଡ) ଡେଙ୍ଗା ଜଗତ ଉପର । ଡୋଳେ ବ୍ରହ୍ମରୂପ ଦର୍ଶନ କର । (ଢୋର) କୌପିନ ବଲ୍କ ସୁନ୍ଦର, ସୁଜନେ ହେ । ୧୩ । ଢଳଢଳ ତେଜ କାନ୍ତ । ଢଳଲ ସୁବର୍ଣ୍ଣ ଝଳ ଆକୃତ । ଢାଳେ ମୂର୍ଚ୍ଛିବ ଦେ ଯତ, ସୁଜନେ ହେ । ୧୫ । ଅଟଣପୁର ଦାଣ୍ଡରେ । ଅସିପାଜଛନ୍ତି ଥରକୁ ଥର । ଅଣି ତ କୁ ଯୋବା ଭକ୍ତ କର, ସୁଜନେ ହେ ॥ ତର ତର ହୋଇ ଯାନ୍ତି । ତରକ ନବେଦେ ରହୁ ଅଛନ୍ତି । ତିଗୁଣରେ ବନ୍ଧା ନ ହୁଅନ୍ତି । ସୁଜନେ ହେ ॥ ଥମ୍ଭ ପ୍ରାପ୍ତ ଦେହ ଅଣ । ଥବର ଯେସନେ ବର୍ଯ ମୂରାତ । (ଥମ୍ଭ) କର କାମ କର୍ମ କାଟ, ସୁଜନେ ହେ ॥ ଦଇବ କରତା ସେହ୍ନ । ଦେଇଛନ୍ତି ପ୍ରଭୁ ପାଦ ବଢ଼ାଇ । (ଦାନ) ଦଅ ପିଣ୍ଡ ପ୍ରାଣ ନେଇ, ସୁଜନେ ହେ ॥ ଧର ଧର ପରେ ଆସି । ଧରଛନ୍ତି ରୂପ ଅରୂପବାସୀ । (ଧ୍ୟାନ) ଦେଇ ରହୁ ଢବା ନଶି, ସୁଜନେ ହେ ॥ ନୂଆ ପୁରୁଣା ସେ ନୋହେ । ନବଘନପୂର୍ଣ୍ଣ ଚନ୍ଦ୍ର ମା ପ୍ରାୟେ । (ନାମ) ନାବେ ପାର କର ନଏ, ସୁଜନେ ହେ । ୨୦ । ପୂର୍ଣ୍ଣବ୍ରହ୍ମ ପୁରାତନ । ପଉତେ ହୋଇବୁ କର ଦର୍ଶନ । ପାଇପାରିବୁ ହଜଲ ଧନ, ସୁଜନେ ହେ ॥ ଫୁଲ ପ୍ରାପ୍ତ ଫୁଟି ଅଛୁ । ଫୁରୁଶା ଶରୀରେ ଲଗାଅ ଦୃଷ୍ଟି । ଫେର ଅଙ୍ଗ ଉହ୍ଲାବ ଲେଉଟି ସୁଜନେ ହେ । ୨୨ । ବ୍ରହ୍ମାଣ୍ଡ ସଚରାଚର । ବସିଅଛୁ ଗର୍ଭେ ହାତ ଯାହାର । ବାରୁ କରେ କାରବାର, ସୁଜନେ ହେ । ୨୩ । ଭାଗବନ୍ତ ଭକ୍ତଜନ । ଭବୁଛନ୍ତି ନିତ୍ୟ ଗୁରୁଚରଣ । ଭବ କହେ ଜୟକୃଷ୍ଣ ହୀନ । ସୁଜନେ ହେ । ୨୪ ।

(ମ) ମାନ ମହତ ରଖନ୍ତି । ମାନ୍ଧ ଯେନ୍ଥା କେଳ ମୁକ୍ତ ହୁଅନ୍ତି । ମାୟା ସଂସାରୁ ଉଦ୍ଧରନ୍ତି । ସୁଜନେ ହେ ॥ ଜୀବ ଚରମ ଯାହାର, ଜାଣ ବେଦ ବାଦୀ ବେନି ଅକ୍ଷର । ବାରୁ ସେହୁ କରେ

Digitized by srujanika@gmail.com

କାର କାର, ସୁଜନେ ହେ ॥ ରହିଛନ୍ତି ସ୍ଵତ ଧର୍ମ, ରୂପ ବୋଲିଛନ୍ତି ଅରୂପ ବ୍ରହ୍ମ । ରକ୍ଷା କର୍ତ୍ତା ଅନନ୍ତ ଅକର୍ମ, ସୁଜନେ ହେ ॥ ଲେଖନେ ପଟର ଧନ, ଲେଖି ନୁହେଁ ଜ୍ଞାନ ଧର୍ମ ତାଙ୍କର । ଲକ୍ଷ ଧ୍ୟାନ ତାଙ୍କ ସମ ସତ୍ର, ସୁଜନେ ହେ । ୨୮ । ବାଡ଼ବୃତ୍ତି ନ କରନ୍ତି, ବାରମାସ ପଡ଼ ଭାତ ବଢ଼ନ୍ତି । ବାସି ପଖାଳ ଆପେ ଭୁଞ୍ଜନ୍ତି, ସୁଜନେ ହେ ॥ ଶ୍ରୀଗୁରୁଦେବ ଅଛନ୍ତି, ଶ୍ରୀଚରଣେ ଜନପୁର ଝଟନ୍ତି, ଶୀତ ଖରା ବର୍ଷା ସେ ସହନ୍ତି, ସୁଜନେ ହେ । ୩୦ । ସର୍ବ ସଜତ ଶ୍ରୀଅଙ୍ଗ, ସବୁଦିନେ ରୁହେ ନୁହଁଇ ଭଙ୍ଗ । ସତ୍ୟ ଧର୍ମ କରିଛନ୍ତି ସଙ୍ଗ, ସୁଜନେ ହେ ।୩୧। ଶୁର ସିଦ୍ଧ ମୁନିଗଣ, ସର୍ବଦା ସେବନ୍ତି ତାଙ୍କ ଚରଣ । ସର୍ବେ ଅଛନ୍ତି ତାଙ୍କ ଅଧୀନ, ସୁଜନେ ହେ । ୩୨ । ହରିହର ବ୍ରହ୍ମା ତିନି । ହୋଇଛନ୍ତି ତାଙ୍କ ଆଜ୍ଞା କାରେଣୀ । ହେଉ ମୂଳ ରଖି ସ୍ଵତଖାନି, ସୁଜନେ ହେ ॥ କ୍ଷମା ମନ୍ଦିମାକୁ ଧାଇଁ, କ୍ଷିତି ମଧ୍ୟେ ଭଣେ ପାମର ଜଇ । ଖଟି ଭଜ ରତ୍ନ ବୃତ୍ତି ଦେଇ, ସୁଜନେ ହେ । ୩୪ ।

—o—

( ୪୭ )

(କ୍ଷ) କ୍ଷୀତିରେ ଯେତେ ହକତ, କ୍ଷମାମନ୍ଦିମାଙ୍କ ଧର୍ମ ଆଶ୍ରିତ । ଖଟିଛନ୍ତି ସେବାରେ ଜାଗ୍ରତ, ସୁଜନେ ହେ ॥ ହେଇ ଚେତନାକୁ ରଖି, ହୃଦରୁ ସର୍ବ କାମନା ଉପେକ୍ଷି । ସ୍ଵତ ପଦାର୍ଥେ ହିଦଣେ ରସି, ସୁଜନେ ହେ ॥ ଶୁଭ ଯୋଗେ ସାର ସ୍ଥାନ, ଶୂନ୍ୟରେ ଉଦେ ନ ହେଉ ଅରୁଣ । ସାଷ୍ଟାଙ୍ଗରେ ଶ୍ରୀଗୁରୁ ଦର୍ଶନ, ସୁଜନେ ହେ । ୩ । ସଚ୍ଚିଦାନନ୍ଦ ଶ୍ରୀହର, ସତ୍ୟ ଧର୍ମ ଦେଇଛନ୍ତି ଆଦର । ସାନ ବଡ଼ ନାହିଁ ତ ତାଙ୍କର, ସୁଜନେ ହେ । ୪ । ଶ୍ରୀଗୁରୁ ଅଲେଖ ବ୍ରହ୍ମ, ସର୍ବ ସ୍ଥାନରେ ତାହାଙ୍କ ବିଶ୍ରାମ । ଶୂନ୍ୟଥାଇ ସର୍ବଦା ସଂପୂର୍ଣ୍ଣ, ସୁଜନେ ହେ । ୫ । ବ୍ରହ୍ମା ବିଷ୍ଣୁ ମହେଶ୍ୱର, ବସାବୃତ୍ତି ଅଲେଖ ସ୍ୱାମୀଙ୍କର । ବିଧିମତେ ସୃଷ୍ଟି କରିବାର, ସୁଜନେ ହେ । ୬ । ଲକ୍ଷ ଲକ୍ଷ ଦ୍ୱାର

Digitized by srujanika@gmail.com

ମୂଳ, ଚଢାଇ ଲେଙ୍ଗୁଟି ଡୋର କୌପିନ । ଲଭ ଏକାକ୍ଷର ପାଦ ଶବ୍ଦ, ସୂଜନେ ହେ । ୭ । ରୂପ ରେଖ ନାହିଁ ଯାର, ରବିଚନ୍ଦ୍ର ବ୍ରହ୍ମ ଶୂନ୍ୟ ମଣ୍ଡଳ । ରଶ୍ମିଚନ୍ଦ୍ର ନିଜ କଳେବର, ସୂଜନେ ହେ । ୮ । ଯୁଗଳ ସ୍ୱରୂପ ନୁହେଁ, ଜୀବ ପରମଙ୍କ ଉପରେ ରହେ । ଜନ୍ମ ମୃତ୍ୟୁକୁ ଭୟ ନ ଥାଏ, ସୂଜନେ ହେ । ୯ । ମହିମା ସାଗର ଯେହୁ, ମହା ବ୍ରହ୍ମଗୁରୁ ଅଟନ୍ତି ସେହୁ । ମାନ ଭଜ ବୋଲେ ଜଳ କହୁ, ସୂଜନେ ହେ ।୧୦।

(ଭ) ଭକ୍ତ ଭଗବାନ ଦୁଇ, ଭିନ୍ନ ଭିନ୍ନ କେଭେ ନୁହନ୍ତି ସେହୁ । ଭବେ ଅଛନ୍ତି ଏକସ୍ଥ ହୋଇ, ସୂଜନେ ହେ । ୧୧ । ବ୍ରହ୍ମ-ଜ୍ଞାନୀ ଯେତୁ ହେବ, ବୁଦ୍ଧ ସ୍ୱାମୀଙ୍କ ଦର୍ଶନ ପାଇବ । ନାନା ଜନ୍ତୁରୁ ଶୂନ୍ୟେ ଦେଖିବ, ସୂଜନେ ହେ । ୧୨ । ଫକୀର ବେଶ ତାଙ୍କର, ଫେରି ଆସି ଫେରୁଛନ୍ତି ସଂସାର । ସ୍ମରଣାରେ ସର୍ବେ ଭକ୍ତ କର, ସୂଜନେ ହେ । ୧୩ । ପରମ ଅଙ୍ଗେ ବେହାର, ପୃଥ୍ୱୀରେ ନାହିଁ ଆଙ୍କ ପଟନ୍ତର । ପାପ ପୁଣ୍ୟ ଯେ ନାହିଁ ତାଙ୍କର, ସୂଜନେ ହେ ॥ ନାମ ଅନାମ ଭଜନ, ନାନା ବାଦ୍ୟ ଶବ୍ଦ ରଜନୀ ଦିନ । ନୃତ୍ୟ କରନ୍ତି ଅନେକ ଜନ, ସୂଜନେ ହେ ॥ ଧର୍ମ ପୂରିଛି ଧରଣୀ, ଧର୍ମ ବୃନ୍ଦାମଣୀ କରୁ ଅଛନ୍ତି । ଧ୍ୟାନ ଧାରଣେ କରିବେ ମୁକ୍ତି, ସୂଜନେ ହେ । ୧୭ । ଦରବ ନାହେ ନ ବନ୍ଧ, ଦୟା ସିନ୍ଧୁ ଦୀନବନ୍ଧୁଙ୍କୁ ଘୋଷ । ଦେବେ ପାରିକରି ସେ ଅବଶ୍ୟ, ସୂଜନେ ହେ ॥ ଥାପ୍ୟ କରିଛନ୍ତି ମଧ୍ୟ, ଥୋଇଛନ୍ତି ଜଳ ମଧ୍ୟରେ ଦେଇ । ଥମ୍ଭେ ବାନ୍ଧିଛନ୍ତି ସେ ଗୋସାଇଁ, ସୂଜନେ ହେ । । ୧୮ । ତରତରିଆ ପୁବର୍ତ୍ତ, ତାରି ପାରି କରୁଛନ୍ତି ସଂସାରୁ । ତିନ ତ୍ରୈଲୋକ୍ୟ କର୍ତ୍ତା ଶ୍ରୀ ଗୁରୁ । ସୂଜନେ ହେ ॥ ଅଣାକାର ସେ ଅଲେଖ, ଅନୁକ୍ଷଣେଛନ୍ତି ଲଲାଟ ଶିଖ । ଅଳ ତାରିବେ ତାଙ୍କ ସେବକ, ସୂଜନେ ହେ । ୨୦ । ଡାଉଁ ଡାଉଁ ଶବ୍ଦମାନ, ଡାକୁଣୀରୁ ସୃଷ୍ଟି କରେ ଗର୍ଜନ । ତାଳ ଭେଦୁଛି ତନ

Digitized by srujanika@gmail.com

ଭୁବନ, ସୁଜନେ ହେ ॥ ଭକତ ପଡ଼େ ଅପାର, ଡାକ ଶୁଣି ଉଠେ ଜସ୍ତୀ ପାମର । ତୋରଦକ୍ଷ ନୌଧୁମା ସୁନ୍ଦର, ସୁଜନେ ହେ ।୨୨।

(୦) ଠାକୁର ସେ ଶୂନ୍ୟ ବାସୀ, ଠୂଳ ଶୂନ୍ୟଗୁରୁ ଅଛନ୍ତି ଆସି । ଠିକେ ରହ ତାଙ୍କ ନାମ ଘୋଷି, ସଜନେ ହେ ॥ ଟଳଟଳିଆ ଯୋଜନ, ଟିକାଏ ନ ପାଳ ଗୁରୁ ବଚନ । ଚୌଦେ ପଡ଼ ହୁଏ ରଣଭଣ, ସୁଜନେ ହେ ॥ ଲୀଳା କରନ୍ତି ନିଷ୍କାମ, ନାହିଁ ଢବା ବସ ଏକଇ ସମ । ନିତ୍ୟାଶ୍ରେ ମହିମା ଗାୟନ, ସୁଜନେ ହେ । ୨୫ । ଝାଡ଼ ବୃକ୍ଷ ପର୍ଣ୍ଣ ପନ୍ତି, ଝୁଲ କାନ୍ତି ଜଳେ ଜାଗ୍ରତ ବଣ୍ଡ । ଝଟ ଝଟ ହେଶ ସେହି ଜ୍ୟୋତି, ସୁଜନେ ହେ । ୨୬ । (ଜୟ) ମହିମା ଗୁରୁ ଗାଦିକ, ଯାଇ ଦେଖ ନରେ ଗୁରୁ ସ୍ୱାମୀଙ୍କି । ଜାନ ଜୀବନକୁ ଦିଅ ଦିକ; ସୁଜନେ ହେ । ୨୭ । ଛନ୍ଦ କୁଣ୍ଠ କଳ ଧନ୍ଦ, ଛେଦନ ହୋଇବ ତ୍ରିଗୁଣ ଫାନ୍ଦ । ଛୁଡ଼ିଯିବ ପାପ ପରମାଦ, ସୁଜନେ ହେ ॥ ଚତୁର୍ବର୍ଗ ବରଦାତା, ସ୍ୱଲେଖ ନ ଜୀବଙ୍କ ପିତା ମାତା । ଚେତା ପୁରୁଷ ସେ ହର୍ତ୍ତା କର୍ତ୍ତା, ସୁଜନେ ହେ ॥ ଓଁକାର ସେ ବେଦ ମାତ, ଡ଼ଛାର ଗାୟତ୍ରୀ ଅଜପା ମନ୍ତ୍ର । ଅଣ ଅକ୍ଷରେ ସ୍ୱଲ୍ଲିତ୍ତ ଯନ୍ତ୍ର, ସୁଜନେ ହେ ।୩୦। ଘଟ ଅଘଟେ ବିହାର । ଘୋଟି ରହିଛନ୍ତି ସଚରାଚର । ଘୋଷ ପ୍ରଭୁ ନାମ ଏକାକ୍ଷର, ସୁଜନେ ହେ ॥ ଗୁରୁ ରୂପେ ବିଜେ କଲେ, ଗୁପତ ଜ୍ଞାନକୁ ପ୍ରକାଶି ଦେଲେ । ଛମା ଧାମା ଆଶ୍ରିତ ରହିଲେ, ସୁଜନେ ହେ ॥ ଷଣ୍ଡି ଭବ ଉଶ୍ୱାସିଲେ, ଷମାନନ୍ଦ ସ୍ୱାମୀ ବିଜୟ କଲେ । ଖେଳୁ ଅଛନ୍ତି ଭକତ ମେଳେ, ସୁଜନେ ହେ ॥ କରୁଣା କୃପା ସାଗର, କରନ୍ତି ସଂସାର ସାଗରୁ ପାର । କହେ ଜୟକୃଷ୍ଣ ଆଶ୍ରେ କର, ସୁଜନେ ହେ । ୩୪ ।

୦—

Digitized by srujanika@gmail.com

( ୪୬ )

(କ) କର୍ଣ୍ଣଲୋଚନ ମନସ୍ଥିର । କବଣ ଗୁରୁଙ୍କୁ ସୁମର । ୧ । କ୍ଷିତି ମଣ୍ଡଳେ ଯେତେ ଭକ୍ତ । ଖମ୍ଭ ପ୍ରାୟେକ ହୁଅ ଶକ୍ତ । ୨ । ଗୁରୁ ଗୋପ୍ୟାନ ହେଲେ ବୋଲି । ଅଙ୍କ ନ ଗୁଡ଼ ମନେ ଭଲି ।୩। ଘେନଣ ଅଛି ଗୁରୁ ଅଙ୍କ । ଘୋଷ ତା ନ କର ଅବଙ୍କ । ୪ । ଉତ୍ତମ ପୁରୁଷ ରଚନ । ଉଦୟ ଅସ୍ତ ନାହିଁ ଜାଣ । ୫ । ଚୁରି ଯୁଗରେ ଛନ୍ତି ରହି । ଚର୍ମ ନେତ୍ରରେ ଦିଶେ ନାହିଁ ॥ ଛଟବେଦ ଚରେ କଲେ ଜନ । ଛଟକେ ମିଳଇ ଦର୍ଶନ । ୬ । ଜାଗ୍ରତ ପୁରୁଷଟି ସେହି । ଜନ୍ମ ମରଣ ତାଙ୍କ ନାହିଁ । ୮ । ଝରୁଛି ଚାନ୍ଦୁ ମକରନ୍ଦ । ଝୁସାଇ ପିଅ ଭକ୍ତ ବୃନ୍ଦ । ୯ । ନିଗମ ଶୂନ୍ୟ ଗାଦି ଧର । ନିତ୍ୟ ମଣ୍ଡଳ ସେହିଠାର ॥ ଟେକି ଅନାଦି ଗୁରୁ ବାନା । ଟିକାକେ ଗର୍ବ କରେ ଚୂନା ॥ ଠାକୁର ଶୂନ୍ୟ ବ୍ରହ୍ମ ଧାମ୍ପି । ଠିକେ ଭଣେ ପାମର ଜଇ । ୧୨ ।

(ଖ) ଡାକ କରୁଛି ଶୁଣ ଭାଇ । ଡୋଳାରେ ଖେଦ ସର୍ବେ ଯାଇ ॥ ଢେଙ୍କାନାଳ ଯୋରନ୍ଦା ଗ୍ରାମ । ତାଙ୍କିଛି ତହିଁ ଶୂନ୍ୟ ବ୍ରହ୍ମ ଅନନ୍ତ ଗୁପ୍ତ ଫେଣା ପରେ । ଆତ୍ମଜ୍ଞାନୀ ଦେଖନ୍ତି ଧୀରେ ॥ ତପ୍ତ କାଞ୍ଚନ ପ୍ରାୟେ ଦିଶେ । ତାଙ୍କୁ ନା ଉପରେ ପ୍ରକାଶେ ॥ ଥମ୍ଭରେ ଯେଣୁ ରହେ ନାହିଁ । ଥପ୍ପ କହଣ ନୁହେଁ ସୂହିଁ । ଦର୍ଶନ ବେଳେ ଝଟ ଝଟ । ଦିଶନ୍ତି ଶୂନ୍ୟ ଗୁରୁ ଶ୍ରେଷ୍ଠ ॥ ଧର୍ମ ଧାରଣା ଏ ଜଗତ । ଧରିଛି ଅନାଦି ଅଚ୍ୟୁତ ॥ ନ ଖାଏ ନ ପିଏ ନ ଶୁଏ । ନିଚିନ୍ତେ ଏକାନ୍ତରେ ରହେ ॥ ପିତା ମାତା ହିଁ ଘର ନାହିଁ ॥ ପୁତ୍ର ଭାରିଜା ତାର କାହିଁ ॥ ଫକୀର ବେଶ ସଦାହିଁ ନ । ଯେତୁ ଅଛନ୍ତି ପୂର୍ବ ସ୍ଥାନେ ॥ ବ୍ରହ୍ମାଣ୍ଡ ତାରିବାର ଅର୍ଥେ । ବାନା ଉଡ଼ୁଛି ପରମାର୍ଥେ । ଭବ ଭକ୍ତରେ ଭେଟ ପାଇ । ଭଣେ ପାମର ସ୍ନାନ ଜଇ । ୨୪ ।

Digitized by srujanika@gmail.com

(ମ) ମହିମା ନାମ ସର୍ବେ ଭଜ । ମନରୁ ସର୍ବ ଭ୍ରାନ୍ତି ତେଜ ॥ ଯେହୁ ମହିମା ଭଜିଥିବ । ଯମ ଦାଣ୍ଡରୁ ସେ ତରିବ ॥ ରଖିବା ପାଇଁ ସର୍ବ ଜୀବ । ରୂପ ବହିଲେ ଗୁରୁଦେବ ॥ ଲକ୍ଷେ ଜନମ କଲେ ତପ । ଲଭିଲେ ବଇଷ୍ଣବ ରୂପ ॥ ବୈଷ୍ଣବ ସର୍ବ ଅଭ୍ୟାଗତ । ବ୍ରହ୍ମ ସ୍ୱରୂପରେ ଉଦିତ ॥ ସର୍ବ ବର୍ଣ୍ଣ ନିର୍ଗୁଣ ବନ୍ତ । ଶ୍ରୀଗୁରୁ ସ୍ୱାମୀ ଅବଧୂତ ॥ ଶୂନ୍ୟ ମଣ୍ଡଳେ ଛନ୍ତି ରହି । ମର୍ତ୍ତ୍ୟରେ ପାଳୁଛନ୍ତି ମହୀ । ଶୁଦ୍ଧାଶୁଦ୍ଧ ତ ନାହିଁ ଜାଣ । ଶରଣ ଜନଙ୍କୁ ତାରଣ ।୩୨। ହେଳୁଟରେ ଧରି ନ ପାଶୋରି । ହୋଇବ ନଷ୍ଟେ ଅକ୍ରାମରି ॥ ଷମା ମହିମା ପାଦ ଧ୍ୟାୟି । ଷମେ ଭଣେ ପାମରି ଜଇ । ୩୪ ।

—o—

( ୪୮ )

(କ୍ଷ) କ୍ଷମା ମହିମା ଥାଉଁ ଥାଉଁ । ଖଗପ ନୃହ ଗ୍ରହୁଁ ଗ୍ରହୁଁ ॥ ହେଳା ନ କରି କେହି ମନେ । ହେଳୁଟରେ ଭଜ ଅନୁକ୍ଷଣେ ॥ ଶୁଦ୍ଧ ବିଶୁଦ୍ଧ ଧର୍ମ ପଥ । ସୁସଙ୍ଗେ ହୋଇବ ଏକତ୍ର । ୩ । ସାମର୍ଥ ସୁସାଧୁ ଭକତ । ସମ୍ଭାଳ କରିବେ ଭକତ ।୪। ଶ୍ରୀଗୁରୁ ଶୂନ୍ୟ ମାର୍ଗେ ଥିବେ ଶୂନ୍ୟରୁ ଆଜ୍ଞା ଦେଉ ଥିବେ । ୫ । ବଳକଳ ପିନ୍ଧି ବସ୍ତ୍ର ଛାଡ଼ି । ବୁଲୁ ଅଛନ୍ତି ଧାଡ଼ି ଧାଡ଼ି । ୬ । ଲେଉଟିଲେ ଜନ ଚକ୍ଷୁ ଦ୍ୱାରେ । ଲଭିବ ମନୁଷ୍ୟ ଶରୀରେ । ୭ । ରଜା ଉପରେ ମହାରାଜ । ସ୍ୱରୂପ ସର୍ବେ କରନ୍ତି ପୂଜା । ୮ । ଯେ ଗୁରୁ ଭକ୍ତି ଭାବେ ଥିବ । ଜୀବନ୍ତେ ମହା ସୁଖୀ ହେବ । ୯ । ମଲେ ନ ମଲେ ହେଉ ରହେ । ମହିମା ଧ୍ୟାୟି ଜଇ କହେ । ୧୦ ।

(ଭ) ଭାଗେ ପାଇଛ ନର ଦେହ । ଭାଗି ନ ଯାଅ ଭଜୁଥାଅ । ବହୁ ରଙ୍ଗରେ ରୂପ ଯାରି । ବଦଳ କଲେ ରୂପ ତା'ରି ॥ ଫଳୁଆ ଭିତରେ ଘାରି । ଫିଟିଲେ ଯେଣ୍ଡେ ବଣେ ତୋରି ॥ ପ୍ରକୃତି ସେହି ପରକାରେ । ଧୂଳିଛି ଭିତର ବାହାରେ ॥ ନିଜ ଶକତି ବଳେ

Digitized by srujanika@gmail.com

ତା'ର । ଲୀଳା କରୁଛନ୍ତି ଚରାଚର ॥ ଧନ୍ୟ ଧନ୍ୟରେ କଳେବର । ଧରଣୀ ମଣ୍ଡଳ ସୁନ୍ଦର ॥ ଜ୍ଞାନ ବାନ୍ଧବ କୃପାସିନ୍ଧୁ । ଦୁଃଖୀ ଦରିଦ୍ର ଲୋକ ବନ୍ଧୁ ॥ ସ୍ଥାନ ସ୍ଥିତି ତାଙ୍କର ନାହିଁ । ଥାନ୍ତି ସକଳ ସ୍ଥାନେ ରହି ॥ ତିନି ଭୁବନ ନବଖଣ୍ଡ । ତାଠାରେ ଅଶେଷ ବ୍ରହ୍ମାଣ୍ଡ ॥ ଅନ୍ୟ ଆଶ୍ରୟ ମନୁ ତେଜ । ଅନାଦି ଗୁରୁ ନାମ ଭଜ ॥ ତମ ଫଳକୁ ମନୁ ଛାଡ଼ । ତାଙ୍କ ସର୍ବାଙ୍ଗେ ପାଦେ ପଡ଼ । ତାଙ୍କ ଶ୍ରୀଗୁରୁ ନାମ ଧ୍ୟାଇ । ତାଙ୍କ ଭଣେ ପାମର ଜଇ ।.୨୨ ।

(ଠ) ଠାକୁର ଅନାଦି ପୁରୁଷ । ଠୁଳ ଉପରେ ତାଙ୍କ ବାସ ॥ ଠାଣ ତାହାଙ୍କ ଶୂନ୍ୟ ବାନା । ଠେକିଲେ ଦୁର୍ଦ୍ଦଶା ଖଣ୍ଡନା ॥ ନାହିଁ ତାହାଙ୍କ ବାଢ଼ ବୃତ୍ତି । ନିତି ସେ ଘଣ୍ଟ ବାଣ୍ଟୁଛନ୍ତି ॥ ଫୁଟିକ ଦିବ୍ୟ ପ୍ରାୟ କାନ୍ତି । ଫୁଟିକ ଶୂନ୍ୟରେ ଦିଶନ୍ତି ॥ ଯିବ ଯଦ୍ୟପି ତାଙ୍କୁ ରଟି । ଜନ୍ମ ମରଣ ପଥ ତୁଟି । ଛନ୍ଦ କପଟ କ୍ରିୟା କର୍ମ । ଛାଡ଼ ସକଳ ଲୋକ ଧର୍ମ । ଚନ୍ଦ୍ର ସୂର୍ଯ୍ୟ କାନ୍ତି ପ୍ରାୟକ । ରହିଁ ସକଳ ଠାବେ ଦେଖ । ଉଦୟ ଅସ୍ତ ସେ ନୁହନ୍ତି । ଅଲେଖ ଅଶ୍ରୁତ ଅମୂର୍ତ୍ତି । ଘୋଟିଛନ୍ତି ଦେବ ପ୍ରାୟେ । ଘର ବାହାର ସବୁଠାଏ । ଗୁପତେ ଗୁରୁ ଅବତାର । ଜ୍ଞାନ ମୁକୁଟରେ ଭଣ୍ଡାର । ଖଟ ପଲଙ୍କେ ନାହିଁ ଶୁଏ । କ୍ଷିତି ଉପରେ ସୁଖେ ଶୁଏ । କର ସେ ଗୁରୁ ପାଦେ ଧ୍ୟାନ । କହଇ ଜୟକୃଷ୍ଣ ଦୀନ । ୩୪ ।

—୦—

( ୪୯ )

(କ) କରୁଣା କୃପାସିନ୍ଧୁ ବାନା ବୋଲୁଛ । କଲେ ନିତ୍ୟ କଣାଣ, କରଇ ଦେହ, କର୍ଣ୍ଣେ ନାହିଁ ଶୁଣୁଛ । ୧ । ଖଗପ କହିନାହିଁ ତୁମ ଧର୍ମକୁ । ଖଟିଛି ଆଜ୍ଞା ନାନ, କରତା ହେ, ତୁମ୍ଭ ପାଦ ପଦ୍ମକୁ ବୁଝି ହୋଇ ଦର୍ଶନ ନିତି କରୁଛୁ । ଗାଳଗରବ ନିନ୍ଦା, କରତା ହେ, ସବୁ କଥା ସହୁଛୁ । ଘଡ଼ିଏ ମନରୁ ନ ପାରେ ପାଶୋରି, ଘୋଷୁଛୁ,

Digitized by srujanika@gmail.com

ଗର୍ବ ବଚନ,କରତା ହେ, ତୁମ୍ଭଙ୍କୁ ଅନୁସରି ॥ ଉଦ୍ଧାର ହେବାପାଇଁ କରୁଛୁ ଆଶ, ଏବେ କି ଦୋଷ ଦେଖି, କରତା ହେ, କରୁଅଛ ନିରାଶ ॥ ସ୍ୱଚକ୍ଷ ପ୍ରାପ୍ତ ଅନୁସରି ରହିଛୁ, ସ୍ୱାମୀ ଦୟା ନୋହିଲା, କରତା ହେ, ଶତ୍ରାର୍ଥୀରେ ପଡ଼ିଛୁ ।୬। ସ୍ୱାନ୍ତ ଦେଇଛ ମୋତେ ଦୁଷ୍ଟଙ୍କ ମେଳେ । ସ୍ୱନଥ ହେଉଅଛୁ କରତା ହେ, ସ୍ୱଭ ଚଳ ନ ମିଳେ ।୭। ଜାନ ଜୀବନ ସବୁ ଦେଇଛୁ ବିଳ । ଜାଣି ଦୟା ନୋହିଲ କରତା ହେ, ମୋର କି ଦୋଷ ଦେଖି ।୮। ଝାଡ଼ ଭିତରେ ବଣା ହୋଇଲି ପରି । ଝାମ ମାରି ନେଉଛୁ କରତା ହେ, ଜୀବ ଯିବ କି ମରି ।୯। ନିଜ ଗୁରୁଙ୍କୁ କରିଥାଇ ଆଶ୍ରିତ । ନ ଜାଣିଥିଲି ମୂର୍ଖି, କରତା ହେ, ହେବ ବୋଲି ଏମନ୍ତ ।୧୦। ଟାଣ ପଣକୁ ମୋର ଭଞ୍ଜିଣ ଦେଲି । ଟିକେ ଦୟା ନ କରି, କରତା ହେ, ଅଛନ୍ତାରେ ରହିଲି ।୧୧। ଠାକୁର ହୋଇ ମୋତେ ଠକଣ ଗଲି । ଠିକେ ଗାଢ଼ ଚୋଳାଇ, କରତା ହେ, ସମାଧିରେ ରହିଲି ।୧୨।

(ଡ) ଡାକ ପାରୁଛୁ କିସି ଦିବା ରଜନୀ । ଡୋଳାରେ ନ ଦେଖିଲି, କରତା ହେ, ତୁମ୍ଭ ଡୋର କୌପୁନୀ ।୧୩। ଢୁଲି ଦମାଡ଼େ ମୋତେ ଦିବା ଶର୍ବରୀ । ଲକ୍ଷିଲି ବକ୍ଷ ପ୍ରାପ୍ତ କରତା ହେ ଦେହ ହେଉଛୁ ଘାରି ॥ ଅଣ ଅକ୍ଷରେ ଭଜ ଅଲେଖ ନାମ । ଏବେ ଜଣାପଡ଼ୁଛି, କରତା ହେ, କର୍ମ ହେଲି ମୋ ବାମ ।୧୫। ଓଡ଼ ବ୍ରହ୍ମାଣ୍ଡେ କଲ ନିଷ୍କାମ ଲୀଳା । ଡାକ ନ ପାରିବାରୁ, କରତା ହେ, ତେଣୁ ବୁଡ଼ୁଛୁ ଭେଳା ।୧୬। ଥୟ ନୋହୁଛୁ ମୋର ପିଣ୍ଡ ପବଣ ଅନ୍ତରରେ ଥରୁଛି, କରତା ହେ, ରମ୍ଭା ପତ୍ର ଯେସନ । ଦଇବ କର୍ତ୍ତା ହୋଇ ଏମନ୍ତ କଲି । ଦୟା ଧର୍ମ ନ କରି, କରତା ହେ, ମୋତେ ଭସାଇ ଦେଲି ।୧୮। ଧର୍ମ ଉଦେ କରିଛ ବଡ଼ ନିଷ୍କାମ । ଧରି ନ ପାରିବାରୁ, କରତା ହେ, ତେଣୁ ହୋଇଲି ଭ୍ରମ ॥ ନିଷ୍ଠା ପ୍ରତିଷ୍ଠା ଧର୍ମ ଜାଣି ନ ଥିଲି । ନ ପାଳିବାରୁ ମୂର୍ଖି, କରତା ହେ, ତେଣୁ

Digitized by srujanika@gmail.com

ଖରାପ ହେଲ ॥ ପୋଡ଼ି ଏ କଳଯୁଗେ ଜନ୍ମ ହେବାର । ପଡ଼ିଗଲ ମାୟାର, କରତା ହେ, ଜନ୍ମ କଲ ଅପାର ॥ ଫୁଲ ଫୁଟିଛି ବୃକ୍ଷେ ଫଳବ ଫଳ । ଫଳ ଫଳନ୍ତ ବେଳେ, କରତା ହେ, ଜହାଡ଼ରେ ରହିଲ ॥ ବାନା ଉଡ଼ୁଛି ତନପୁର ମଧ୍ୟରେ । ବୃଦ୍ଧ ପ୍ରବୁଦ୍ଧ ବେଶ କରତା ହେ, ନ ଦେଖିଲ ନେତ୍ରରେ ॥ ଉରଣା ହେଲ୍ କଣ୍ଠ ଅଛୁ ଅନାଇ । ଖଳ ଖଳ ମରୁଛୁ, କରତା ହେ, ଶ୍ରେଷ୍ଠ ମିତ୍ର ନାହିଁ । ୨୪ ।

(ମ) ମହିମା ନାମକୁ ମୁଁ ଭଜନା କରି । ମହତ ସରୁଅଛୁ, କରତା ହେ, ବୁଝି ହାରି ଗୁହାରି । ୨୫ । ସିବ ବାହାର ବୋଲ ଜାଣି ନ ଥିଲ । ଜଗତ ଶୂନ୍ୟ କଲ, କରତା ହେ, ଦେଖି ତାଟକା ହେଲ ॥ ରବ ତଳରେ ବୃଦ୍ଧ ସ୍ୱରୂପ ଦେଖି । ରଚନା କଲ ପଦ, କରତା ହେ, ଭୁମ୍ଭ ଭଜନ ଲେଖି । ୨୭ । ଲୋଡ଼ୁଛି ତେଜହଗ ଶୂନ୍ୟ ଧରଣୀ, ଲେଶ ଦୟା ନ କଲ, କରତା ହେ, ଫାଟିଯାଉଛି ଗ୍ରୀବ ॥ ବୁଦ୍ଧ ବୈଷ୍ଣବ ବେଶଗ୍ନ ରୁ ଅଲେଖ । ବାହାରେ ଦେଖୁଥିଲେ, କରତା ହେ, ଏବେ କଲ ନିରେଖ । ଶ୍ରୀଗୁରୁ ବୋଲ କରିଥିଲ ମୁଁ ଆଶା । ଶିଷ୍ୟ ସମ୍ପଦ ଦାତା କରତା ହେ, କରିଗଲ ନିରାଶା ।୩୦। ସଦଗୁରୁ ହାଇଣ ଏମନ୍ତ କଲ । ସୋହହଂ ହାଗରେ ଯେ କରତା ହେ, ମନ୍ତ୍ର ଉସାଇ ଦେଲ । ୩୨ । ସଂସାର ସବୁ ସୁଖ ହୋଇଲ ଦୁଃଖ । ଶଙ୍କୁ-କଂସାର୍ଥେ ଚଢ଼ି କରତା ହେ, ବୃନ୍ଦାବ କାହା ମୁଖ । ୩୨ । ହାଟ ହାଣ୍ଡି ବାଟରେ ନ ପାରେ ବୁଲ । ହାଡ଼ରୁ ରକ୍ତ ମାଂସ, କରତା ହେ ଏବେ ପଡ଼ୁଛି ଝଡ଼ି ।୩୩। କ୍ଷମାନନ୍ଦଙ୍କ ପାଦ ହୃଦରେ ଗୁଣି । କ୍ଷମା କର ମୋ ଦୋଷ, କରତା ହେ, ଜୟୀ ପାମର ଭଣି ।୩୪।

—୦—

( ୫୦ )

(କ୍ଷ) କ୍ଷିତିରେ ନର ଦେହେ କରିଛ ଜନ୍ମ । ଖଣ୍ଡ ତପସ୍ୟା ଯୋଗୁ, କରତା ହେ; ଏଣୁ ହୋଇଲ ଭ୍ରମ । ୧ । ହେଉ ଚେତା

Digitized by srujanika@gmail.com

ମୋ କଷ୍ଟ ଉଦ୍ଧରୁଛ ନାହିଁ । ହେଲି ଅଧପନ୍ତର, ବରତା ହେ, ଜ୍ଞାନ ଧ୍ୟାନ ବୁଡ଼ାଇ ॥ ସ୍ୱାମୀ ମୋ ଗୁରୁ ହୋଇ ଦୟା ନ କଲେ । ଶିଷ୍ୟ ବୋଲି ମୋଠାରେ, କରତା ହେ, ଦୟା ନାହିଁ ବହିଲେ । ୩ । ଶରୀରେ ବହିବାର ବ୍ୟର୍ଥ ହେଲା । ସତ୍ୟବାଦ ଧରମରେ, କରତା ହେ, ଶର ନାହିଁ ରହିଲା । ୪ । ଶ୍ରୀଗୁରୁ ହୋଇ ମୋତେ ଏମନ୍ତ କଲେ । ଶିଶୁ ସମ୍ପଦ ଦେଇ, କରତା ହେ, ପୁଣି ଛଡ଼ାଇ ନେଲେ ॥ ବାପା ବୋଲି ମୁଁ କରିଥିଲି ଭରସା । ବାହୁ ତଳରେ ରଖି, କରତା ହେ। ମୋର ଭାଙ୍ଗିଲି ଆଶା ।୬। ଲୋଭ ମୁଁ କରିଥିଲି ଅଲେଖ ନାମ । ଲୋଭରେ ପଡ଼ିବାରୁ, କରତା ହେ, କର୍ମ ହେଲା ମୋ ବାମ ॥ ରଖିଥିଲ ଯେ ମୋତେ କରି ସ୍ୱୀକାର । ରକ୍ଷା ନକଲେ ମୋତେ, କରତା ହେ, ଆଉ ହେବ କାହାର ॥ ଜନ୍ମ ହୋଇଛୁ କାୟା ଯୋନି ଦୁଆରେ ଜାଣି ମୁଁ ନ ପାରିଲି, କରତା ହେ, ପଡ଼ିଗଲି ମାୟାରେ । ୯ । ମହିମା ନାମକୁ କରଣ ଭରସା । ମାୟାରେ, ପଡ଼ିବାରୁ, କରତା ହେ, ହେଲି ଉଦାସୀ ଦଶା । ୧୦ ।

(ଭ) ଭବ ଭକତି କରି ପାରିଲି ନାହିଁ । ଭାଷା ପଦେ ନ କହି, କରତା ହେ, କେଉଁଣେ ରହିଲି ଯାଇଁ ।୧୧। ବକଳ ପିନ୍ଧା ଭକ୍ତମାନେ ଭ୍ରମିଲେ, ବନ ପର୍ବତେ ଲୋଡ଼ି, କରତା ହେ, ନମିଳୁଛ ଖବର ॥ ଫଟା କର୍ମେ ମୋ ଏହା ଥିଲି କି ଲେଖି । ଫେରି ଫେରି ବ୍ରହ୍ମାଣ୍ଡେ, କରତା ହେ, ନ ପାରୁଛି ମୁଁ ଦେଖି ॥ ପସ୍ତୁରୁଅଛି ଯାକୁ ଦେଖୁଛ ଯେଉଁଣେ । ପ୍ରତ୍ୟକ୍ଷ ହେଉଛୁ ବାର୍ଣ୍ଣ, କରତା ହେ, ନ କହିଲେ ତ ଜାଣେ ।୧୪। ନ ପାଇ ଦର୍ଶନ ହିଂଯୁର ମଧ୍ୟରେ । ନରତେ ମାରୁଥିବି, କରତା ହେ, କହୁଅଛୁ ନେଇରେ ।୧୫। ଧର୍ମ ନିଷ୍କାମ ଭୁମ୍ର ଭୃତ୍ୟକୁ ଦେଲ । ଧରି ନ ପାରିବାରୁ, କରତା ହେ, କେଉଁଣେ ଗୁପ୍ତେ ରହିଲ ।୧୬। ଦୁଃଖ ସୁଖ କା ଆଗେ କହିବ ଯାଇଁ । ଦେଖା ନଦେଲ ଯେଣୁ, କରତା ହେ, ଭଳ ମରୁଛି ମୁହିଁ ॥ ଥକିତ ହେଲିଣି ମୁଁ ନ

Digitized by srujanika@gmail.com

ଚଳେ ପାଦ । ଥୋପର ମୀନ ପରି, କରତା ହେ, ହେଲୁ ଗୁରୁ ପ୍ରମାଦ ॥ ଭ୍ରମନ୍ତ ନମନେ ଏତେ କଷ୍ଟ ମଣ୍ଡିଲୁ । ତରକ ପଳାଇଲୁ, କରତା ହେ, ତେଣୁ ବ୍ୟର୍ଥ ହେଲୁ ॥ ଅଲେଖ ନାମକୁ ମୁଁ କର ଭଜନା । ଅନ୍ତର ହେଲୁ ହିନ୍ଦୁ କରତା ହେ, ଶତ୍ରୁ ହେଲୁ ମୋ ବଣା । ୨୧ । ଛଳ ପଡ଼ିବା ପରି ହେଲଣି ଅଙ୍ଗ । ଢାଳେ ପୂର୍ଣ୍ଣ ହେଉଛୁ; କରତା ହେ, ଢୋଲ ପବସ୍ତ ଭଙ୍ଗ ॥ ଡାକୁଛୁ ବଳେ କର ଗୁରୁ ଅଲେଖ । ଡୋଳାରେ ନ ଦେଖୁଛୁ, କରତା ହେ, ଭ୍ରମନ୍ତ ଝୁନ ଝୁଲକ ।

(ଠ) ଠାକୁର ବୋଲି ଯେଣୁ ଭଜନ କଲି । ଠୁଳ ଦେଖା ନ ହେଲୁ, କରତା ହେ, ତେଣୁ ଅନାସ୍ତ ହେଲି । ୨୩ । ଟିଆକୁ ଟାକ ଅଛୁ କର ଭରସା । ଟିକେ ଦୟା ନ କଲେ, କରତା ହେ, ମୁର୍ଛି ହେଲି ନଆଶା ॥ ନଟରେଖ ହୋଇ କଲି ଗୁହାରି ଯେତେ । ନଷ୍ଟେ ଜାଣିଲି ଏବେ, କରତା ହେ, ନର୍ଦ୍ଦୟ କଲୁ ମୋତେ । ୨୪ । ଝୁରି ଝୁରି ଶରୀର ହେଲଣି କ୍ଷୀଣ । ଝୁଗଡ଼େ ପଡ଼ିଗଲି କରତା ହେ, ମୋର କରମ ହୀନ ॥ ଜନ୍ମ ଥିବାର ଆଉ ନୁହଇ ଭଲ । ଜଗତେ କ ବୋଲିବେ, କରତା ହେ, ନିନ୍ଦିବ କବାରିଲ ॥ ଛଇବା ତଳ ମୋର ଗୁରୁ ଦୁଆର । ଗ୍ଲାନଆ ହେଉଅଛୁ, କରତା ହେ, ହେଲୁ ହିନ୍ଦୁ ଅନ୍ତର ॥ ସ୍ବରସୁତକୁ କଥା ଜଗତେ ଥିବ । ଶତ୍ରୁ ସୁକୃପା କଲେ କରତା ହେ, ଭୃତ୍ୟ ସାଙ୍ଗି ଯାଇବ ॥ ଉଦ୍ଧାର କର୍ତ୍ତା ଅଣାକାର ଅଲେଖ । ଅସୁବିଧ ଭୟରୁ, କରତା ହେ, ବାରେ ବଞ୍ଚାଇ ରଖ ॥ ଘଟ ଅଘଟେ ପ୍ରଭୁ ପୂରି ରହିଛ । ଘାଏ ରକ୍ଷା ନ କଲେ କରତା ହେ, ନାଶ ହେଲି ପ୍ରତ୍ୟକ୍ଷ ॥ ଗୁରୁ ଗୋବିନ୍ଦ ଗୁରୁ ଶିଷ୍ୟଙ୍କ ହିନ୍ଦୁ * ଗୁହାରି ବାରମ୍ବାର, କରତା ହେ, ମୁର୍ଚ୍ଛି ନ ପାରେ ମନ୍ଦ ॥ ଖାଲେ

* ଗୁରୁ ମହିମା ସ୍ୱାମୀ ଓ ଶିଷ୍ୟ ଗୋବିନ୍ଦ ବାବାଙ୍କ ହିନ୍ଦୁ ।

Digitized by srujanika@gmail.com

ମୁଁ ପଡ଼ିଗଲି ନିର୍ଗତ ହୋଇ । କ୍ଷମା କର ମୋ ଦୋଷ, କରତା ହେ, ଠିକରେ ରଖ ନେଇ । ୩୩ । କରୁଣା କୃପାସିନ୍ଧୁ ଗୁରୁ ଅଲେଖ । କହଇ ଜୟକୃଷ୍ଣ, କରତା ହେ, ମୋତେ ସମ୍ଭାଳି ରଖ । ୩୪ ।

—○—

( ୫୧ )

(କ) କହନ୍ତି ଚୈତନ୍ୟ ଶୁଣ ଭୁ ସୁମନ ଷଟ ଯୋଗର ବିଧାନ କ୍ଷୀଣ ନାଳେ ବ୍ରହ୍ମ ହଂସ ଖେଳୁଅଛି କର ଯାଇ ଦରଶନ । ୧ । ଗୁରୁଙ୍କୁ ଭଜିବୁ ଜ୍ଞାନେ ମଜାଇବୁ ଅଣାକ୍ଷର ଲକ୍ଷ୍ୟ ଘୋଷ । ଷଟ ଚକ୍ର ଚକ୍ଷ ମୁଦ୍ରା ଭେଦ ଯିବୁ ଅବନା ମଣ୍ଡଳେ ପଶି । ୨ । ଓମ୍ ଧୂମ୍ର ଜ୍ୟୋତିର୍ମାଳା ଗୃହକଳା ବିଶ୍ୱଦୁଆରେ ଜପିବୁ । ବିଲୁଣି ବେଢ଼ାଚନ୍ଦ୍ର ସୂର୍ଯ୍ୟ ଉପରେ ବ୍ରହ୍ମ ଦର୍ଶନ ପାଇବୁ । ୩ । ଯୁଇ ହାଇ ନାହିଁ ଷଢ଼ ବେଦ ପରେ ବିଜୟ ସେ ବ୍ରହ୍ମରୂପ । ଶୀବ ଜଗନ୍ନାଥ ଭଜନ ଗାବନ୍ତ ଜାଳଣ ଦୋପଖା ହୀପ ॥ ଝରଝରେ ଗଙ୍ଗା ପ୍ରଭୁ ଶ୍ରୀପଦ୍ମରୁ ଝରୁଅଛି ନିରନ୍ତରେ । ନଶିଦିବସେ ଅନୁକ୍ଷଣେ ବରଷା କରୁଛି ଈଶ୍ୱର ଶିରେ ଟେକ ଦେଖ ଶୂନ୍ୟ ସହସ୍ର ପାଖୁଡ଼ା ଫୁଟିଛି କମଳ ଫୁଲ । ଠୁଳ ଶୂନ୍ୟ ବୋଲି ତାହାକୁଟି କହି ତହିଁ ବିଜେ ଆଦିମୂଳ ।

(ଉ) ଟେଉଁଣ ପବନ ଊର୍ଦ୍ଧକୁ ସେଠାରୁ ମାରୁଅଛି ନିରନ୍ତରେ । ଡାକୁଣୀରେ ପଡ଼ି ହୋମୁହାଁ ସର୍ପ ଯେ ଗରଜୁଅଛି ପେଡ଼ିରେ ॥ ଅଗ୍ନିରୁ ଧୂମ୍ର ହୋଇବ ଯେବେ ଭିନ୍ନ ନିର୍ମଳ ଦିଶିବ ଜ୍ୟୋତି । ତେବେ ସିନା ମନ ପାଇବୁ ଦର୍ଶନ ନେହେ ଅଲେଖ ଅଜ୍ୟୋତି ॥ ଥାନରେ ମନ ସାଧିଲେ ଦିବ୍ୟଜ୍ଞାନ ନ ଥିବ ଭାବ କଳୁଷ । ଦିବ୍ୟଜ୍ଞାନ ବୋଲେ ଦିବ୍ୟ ନୟନରେ ଦିବ୍ୟରୂପ ହେବ ଦୃଶ୍ୟ ॥ ଧନ ଜନ ମନ କାମନା ଏମାନ ତେଜିଲେ ଏ ଜ୍ଞାନ ପାଇ । ନାମ ନାବେ ବସି ପାର ହୋଇଯିବୁ ଅଖଣ୍ଡ ଶରୀର ବନ୍ଧି ॥ ପରମ ସାଧିବୁ ପରତେ ହୋଇବୁ ଆତ୍ମାକୁ କରିବୁ ଧ୍ୟାନ । ଧୂଙ୍କାବନ୍ଧେ ବ୍ରହ୍ମ ହଂସ ଖେଳୁଅଛି ନିଶ୍ଚେ

Digitized by srujanika@gmail.com

ପାଇବୁ ଦର୍ଶନ ॥ ବନ୍ଧକୁ ବାନ୍ଧିବୁ ନିଗୁଣ ଛେଦିବୁ ନବଙ୍କେ ରଖିବୁ ପାଣି । ଭବଜଳୁ ତେବେ ନିର୍ଭୟେ ତରିବୁ ହେବୁକର ମନ ମାନି । ୧୦ ।

(ମ) ମାୟା ସଂସାର ଯେ ଅନିତ୍ୟ ଅଟଇ ଜନ୍ମିଲେ ନିଶ୍ଚେ ମରଣ । ଜାଣୁ ଜାଣୁ ଏଥେ ନ ଭ୍ରମ ବିଅର୍ଥେ ମାନ ଶ୍ରୀଗୁରୁ ବଚନ ॥ ରହିବଟି ନାହିଁ ଏ ମାନବ ଦେହ ମିଥ୍ୟା ମାଟି କଳେବର । ଲେଉଟିଲେ ମନ ଆଉ ଏ ଜନମ ନ ପାଇବୁ ପୁନର୍ବାର । ବୁଝାଇ ମୁଁ ତୋତେ କହୁଅଛୁ ଯେତେ ଏହା ହେବୁକର ଧର । ଶିଖ ସମ୍ଭାଳି ତୋ ସବୁଦିନେ ଥିବ ସଦଗୁରୁ ଆଶ୍ରେ କର ॥ ଶୁକ ସନକାଦି ଅଠାଶୀ ସହସ୍ର ମୁନି ଏହି ଧର୍ମ କଲେ । ସପ୍ତାଙ୍ଗ ଅଷ୍ଟାଙ୍ଗ ବ୍ରହ୍ମବିଦ୍ୟା ସାଧି କାୟା ବଞ୍ଚାଇ ରଖିଲେ । ୧୬ । ବେଦଜା ଲେଖା ବେଦ ବିଦ୍ୟା ଶାହାସ୍ତରେ ଏଥିରେ ବ୍ୟର୍ଥେ ନ ଭ୍ରମ । ଷମେ ବୋଲେ ଜୟ ଶ୍ରୀଗୁରୁ ଅଭୟ କ କର ପାଶବ ଯମ । ୧୭ ।



( ୫୨ )

(କ) କଳିଯୁଗ ସ୍ଥିରଲକ୍ଷ, କଲର୍ମ ବତିଶ ସହସ୍ରରେ ଠିକ । ସୁଜନେ ହେ, କହୁ କହୁ ଶେଷ ହେଲା ଦେଖ, ସୁଜନେ ହେ ॥ ଖଗପ ହେଲେ ସମସ୍ତେ, ଖଳକୁଟ ଘାତ ପୁର ପର୍ଯ୍ୟନ୍ତେ । ସୁଜନେ ହେ, ଷମା ଦୟା ନାହିଁ କାର ଚିତ୍ତେ । ୨ । ଗୁରୁ ବିଜେ କଲେ ମର୍ତ୍ତ୍ୟ । ଗର୍ବୀତାରେ କେହି ଚିହ୍ନିଲେ ନାହିଁ । ସୁଜନେ ହେ, ଗଲ କହୁଁ କହୁଁ ଯୁଗ ବହି ॥ ଘୋର ଅନ୍ଧକାର ମର୍ତ୍ତ୍ୟ, ଘୋଟିଲାଣି ମାୟା ମଦିର ଖାଇ । ସୁଜନେ ହେ, ଘଟେ ପଡ଼ିଅଛନ୍ତି ଘୂମାଇ ॥ ଅଚେତା ପ୍ରିଶ ପୁରୁଷ । ଅଚେତା ବ୍ରାହ୍ମଣ କ୍ଷତ୍ରିୟ ବଶ୍ୟ, ସୁଜନେ ହେ, ଅଭକ୍ଷ କଲେଣି ମଦ୍ୟ ମାଂସ । ୫ । ଚଣ୍ଡାଳ ଘର ଯୁବତୀ । କହୁଁ କହୁଁ

Digitized by srujanika@gmail.com

କଲେ ସମସ୍ତେ ରତ । ସୁଜନେ ହେ, ପାପ ପୁଣ୍ୟେକୁ ନ ବଳି ଗ୍ରାତ ॥ ଗୁରୁଦେଇ ନାଜ ଉପ୍ସ । ଛେଳ ମେଣ୍ଢା ଗାଈ ଗୋରୁ ପରସ୍ୱ ସୁଜନେ । ହେ, ଏଣୁ କଳସୁନ ଶ୍ୱେଗ ପ୍ରାପ୍ତ । ୭ । ଜାତି ଅଜାତି ଏକସ । ସଙ୍ଗଯାତ୍ରା ତୀର୍ଥ ବ୍ରତ ତେଜତ । ସୁଜନେ ହେ, ଜଣାନାହିଁ ଯୁଗ ଗତାଗତ । ୮ । ଝାଡ଼ବେଡ଼ା ହେଲା ସଂସାର, ଝଡ଼ ମିଶା ଧାନ ଯେଉଁ ପ୍ରକାର । ସୁଜନେ ହେ, ଝଡ଼ ନ ଦଶେ ବାହା ଶରୀର । ନୂଆ ନୂଆ କଥାମାନ । ନକେ ଗୁରୁ କରିଦେଲେ ସ୍ଥାପନ । ସୁଜନେ ହେ, ନ ମାନୁଛ ଷଡ଼ପୁର ଜନ ॥ ଟିଆ କଣ୍ଠ ହେଲା ପୃଷ୍ଠ । ଟେକ ଗୁରୁ ଆ[illegible] କର ପାଳନ । ସୁଜନେ ହେ, ଠିକେ ବାଛିନେବେ ଭକ୍ତ ଜନ । ୧୧ । ଠାକୁରଙ୍କ ପାଦ ଧାଇଁ । ଠିକେ ଭଣେ ସ୍ୱାନ ପାମର ଜଇ । ସୁଜନେ ହେ, ଠିକ କଥା ଭାଷା ବନ୍ଧେ ନାହିଁ । ୧୨ ।

(ଡ) ଡକା ପଡ଼ୁଛି ସଂସାର । ଡାକ ଆଜ୍ଞା ଦେଲେ ଥରକୁ ଥର । ସୁଜନେ ହେ, ଡାଳ ଗୁଡ଼ି ମୂଳ ଧର । ୧୩ । ଢାଳିରଙ୍ଗ ଢମପଣ, ଢୋକ କରୁଛନ୍ତି ଗରଳ ପାନ । ସୁଜନେ ହେ, ଢଳ ପଡ଼ୁଛନ୍ତି ହାରି ଜ୍ଞାନ ॥ ଅଣିର ଜପରୁ ମାଣ୍ଡ । ଆତଯାତ ଭନେ ଭୁବନେ ତହିଁ । ସୁଜନେ ହେ, ଅଣଦେଖୁଥିବେ ଚିହ୍ନୁଛ ନାହିଁ ॥ ତଳ ଉପରେ ଏ ଦୁଇ । ତତ୍ତ୍ୱ ପଥ ଯିବା ଆସିବା ହୋଇ । ସୁଜନେ ହେ, ତତ୍ତ୍ୱ ଚେତା ହେଲେ ଜ୍ଞାନ ପାଇ ।୧୬। ଥପ୍ସ କର ଗୁରୁ ପାଦ । ଥପ୍ସକର ଗୀତା ଅବନ ଭେଦ । ସୁଜନେ ହେ, ଠୁଳ ଶୂନ୍ୟରୁ ଫିଟିଛୁ ମୋଦ । ୧୭ । ଦେହ ଅଦେହ ଏ ବେନ । ଦେଖ ରହିଛନ୍ତି ଯୋଷି ମେଦିନୀ । ସୁଜନେ ହେ; ଦୃଷ୍ଟି ପଥେ ନ ପାରୁଛ ଚିହ୍ନି ॥ ଧର୍ମ ସ୍ୱରୂପେ ସତ । ଧର୍ମେ ନିତ୍ୟ ହିପୁର ଜଗତ । ସୁଜନେ, ହେ ଧର୍ମ ଠାରୁ ନାହିଁ ବଳବନ୍ତ ।୧୯ । ନବ ରୂପ ନରହର । ନାଶିବେ ଦୁଷ୍ଟ ସନ୍ଥ ରକ୍ଷାକର । ସୁଜନେ ହେ, ନାମ ଏକ୍ଷଛି ହାର ଆବୋର ॥ ପ୍ରଭୁ ବୋଲି ଜାଣ ପ୍ରତ୍ୟେ । ପରମବ୍ରହ୍ମ ପୁରୁଷଟି ଯେଣ୍ଟ । ସୁଜନେ ହେ

Digitized by srujanika@gmail.com

ପରାପର ତାଙ୍କଠାରେ ନାହିଁ । ୨୧ । ଫକୀର ସ୍ୱରୂପ ହୋଇ । ଫନ୍ଦା ଧନ୍ଦା ତାଙ୍କ ବେଲନ୍ତୁ ନାହିଁ । ସୁଜନେ ହେ, ଫେରୁଛନ୍ତି ନବଖଣ୍ଡ ମଝି । ୨୨ । ବ୍ରହ୍ମା ଯେ ବ୍ରହ୍ମାଣ୍ଡ ନାଥ । ବାଛୁ ବଦନ ରଖିବେ ଭକତ । ସୁଜନେ ହେ, ବ୍ରହ୍ମଙ୍କନେ ରଖନ୍ତି ଜଗତ । ୨୩ । ଭାବ ଭକ୍ତିରେ ଯେ ଥିବ । ଭବଜଳେ ସେହୁ ନଉକା ହେବ । ସୁଜନେ ହେ, ଭାବ ଭଣେ କବ ଜଯ଼ଦେବ । ୨୪ ।

(ମ) ମାନ ଆଜ୍ଞାକୁ ଯେ ଥିବ । ମେଦିନୀରେ ସେହୁ ବଦନ ହେବ । ସୁଜନେ ହେ, ମ୍ଳେଚ୍ଛ ମଣ ନଲେ ନାଶି ଯିବ ॥ ଯୁଦ୍ଧ ହେବ ଅପ୍ରମାଣ । ଜାଣିଥାଅ ଯିବେ ପାଷାଣ୍ଡ ହାଣ । ସୁଜନେ ହେ, ଜମ୍ବୁ-ଦ୍ୱୀପେ ସତ୍ୟ ହେବ ମୂର୍ତ୍ତି ॥ ରଣ ସଂଗ୍ରାମ କରିବେ । ରାମକୃଷ୍ଣ କଳଙ୍କି ସ୍ୱରୂପ ହେବେ । ସୁଜନେ ହେ, ରାଜାମାନେ ଧର୍ମଶିକ୍ଷା ନେବେ ॥ ଲକ୍ଷେ ରାଜା ରୁଣ୍ଡ ହେବେ । ଲକ୍ଷେ ଛତି ପ୍ରଭୁ ଶିରେ ଟେକିବେ । ସୁଜନେ ହେ, ଲକ୍ଷ ଏକାକ୍ଷର ମନ୍ତ୍ର ନେବେ ॥ ବୁଦ୍ଧାମଣା ହେବ ସତ୍ୟ । ବିବେକ ପଣ ହିପୂର ଜଗତ । ସୁଜନେ ହେ, ବିଧିମତ ଚଳିବ ସମସ୍ତ । ୨୯ । ଶ୍ରୀଗୁରୁଙ୍କ ପାଦ ପୂଜା । ଶ୍ରୀ ଶୁଭେ କରିବେ ରାଜା ପରଜା, ସୁଜନେ ହେ, ଶୂନ୍ୟ ଗାଦିରେ ବାନ୍ଧିବେ ଧ୍ୱଜା । ୩୦ । ସପ୍ତ ବ୍ରହ୍ମାଣ୍ଡରେ ଜାଣ । ସତ୍ୟଧର୍ମ କରି ନେବେ ସ୍ଥାପନ । ସୁଜନେ ହେ, ସତ୍ୟ ସତ୍ୟ ପଦ ଏ ପ୍ରମାଣ । ୧ । ସତ୍ୟ ଗୁରୁଙ୍କ ବଚନ । ସତ୍ୟଯୁଗ ହେବ ସୁଜନେ ଶୁଣ । ସୁଜନେ ହେ, ସମସ୍ତେ କରିବେ ବ୍ରହ୍ମ କର୍ମ ॥ ହୋଇବେ ସମସ୍ତେ ଭକ୍ତ । ହୋଇବ ଆୟୁବଳ ବନ୍ଧମୁକ୍ତ । ସୁଜନେ ହେ, ହେବେ ଇଚ୍ଛା ଅନୁସାରେ ମୁକ୍ତ । ୩୬ । କ୍ଷମାକର ମୋର ଦୋଷ । କ୍ଷମେ ଭଣେ ଜଇ ପାମର ଦାସ । ସୁଜନେ ହେ, କ୍ଷମା ମହିମା ଆଜ୍ଞା ପ୍ରକାଶ ॥

—o—

Digitized by srujanika@gmail.com

( ୫୩ )

(କ) କରତା ପୁରୁଷ ହୋଇବେ ପ୍ରକାଶ ଗୁପତେ କରିବେ ଖେଳ । କାହିଁ କାହିଁ କମ୍ବୁଦ୍ୱୀପ ବୈକୁଣ୍ଠପୁର ଘୋଟିବେ ଭକତ କୁଳ ।୧। କୋଳାହଳ ହୋଇ ନାମ ଶବଦରେ ସମସ୍ତେ ଚେତା ପାଇବେ । କରତାଙ୍କୁ ଦେଖି କଳ୍ପନା ଉପେକ୍ଷି ସମସ୍ତେ ଆଶ୍ରିତ ହେବେ । ଷମା ନାଥ ସ୍ୱାମୀ ଖେଳ କରୁଥିବେ ଦାସ ଧାମୀ ସଙ୍ଗେ ଘେନ । ଖଟିଥିବେ ପାଦେ ପୂରି ସୂର ସିଦ୍ଧେ ହେବ ଜୟ ଶଙ୍ଖଧ୍ୱନି ।୩। ଖଳ କପଟିଆ ଖଚୁଆ ମିଛୁଆ ଲମ୍ପଟିଆ ଯେତେ ଜନ । ଖେଳେ ପଶିବାକୁ କ୍ଷମତା ନୋହିବେ କାଳ ଚକ୍ର ଯିବେ ହାଣ । ୪ । ଗାଦି ଗରଦା ଉପରେ ବିଜେ କରିଥିବେ ଅନାଦି ଅଲେଖ । ଗଦାନରେ ଚଉପାଶେ ଖଟି ଥିବେ ନିଷ୍କାମ ଭକ୍ତ ଯେତେକ ॥ ଗିନି ଖଞ୍ଜଣୀ ବଜାଉଥିବେ ଭକ୍ତେ ଗାଇ ଅଲେଖ ଭଜନ । ଗନ୍ଧର୍ବେ ଅର୍ଣ୍ଣି ଚଉକ ଲଗିଥିବେ ଘେନ ବେତ ବାଡ଼ିମାନ । ଘନ ଘନ ଘଣ୍ଟା ପିଟା ହେଉଥିବ ପଦର ଘଡ଼ିକ ଘଡ଼ି । ଘୋଟିଥିବେ ଷୋଳଜଣା ଲକ୍ଷେ ରଜା ପ୍ରସନ୍ନେ ଧାଡ଼ିକ ଧାଡ଼ି ଘୋର ଘଡ଼ି ଘଡ଼ି ମୁଖ ରବ ସ୍ୱାନେ ଶୁଭୁଥିବ ଘନ ଘନ । ଘେରି ପଚିଶିଆର ରଜା ବେଢ଼ିଥିବେ ଘୁମୁରେ ମାଗି ନିଶାଣ ॥ ଉଦେ ହୋଇ ଚନ୍ଦ୍ର ସୂର୍ଯ୍ୟ ତାରାଗଣ ଖେଳରେ ମିଶିବେ ଆସି । ଉଆଁସ ପୂର୍ଣ୍ଣମୀ ବାରଣ ନ'ଯିବ ଏକସ ଦିବସ ନିଶି । ଉଚ୍ଚବାଚ କିଛି ବାରଣ ନ'ଥିବ ସମସ୍ତେ ହୋଇବେ ଏକ । ଉଣା ଅଧିକ କେ କାହାକୁ ନୋହିବେ ଥିବେ ବୈକୁଣ୍ଠପୁର ଲୋକ । ୧୦ । ଋଷିଖାନ ଆସି ଋଷି ବାଣୀ ଭାଷି ଋଷିବୃନ୍ଦେ ଥିବେ ବେଢ଼ି ଋଷି ଭାଷାରେ ଭଜନ ଗାଉଥିବେ ଶିରେ କରପଦ୍ମ ଯୋଡ଼ି ॥ ଋଷିବୃନ୍ଦ ଲୋକ ହୋଇବେ ଏକସ ଶୁଣିଥାଅ ସୁଜ୍ଞଜନ । ଚନ୍ଦନ କର୍ପୂର ସପ୍ତାମୃତେ ପୂଜା କରିବେ ସ୍ୱାମୀ ଚରଣ ଛତ୍ର ଅର୍ଦ୍ଧେୟ ରତ୍ନ ସାପାବଳିମାନ ମାତାଗଣମାନେ ଜାଳି । ଘୁମୁରେ ସ୍ୱାମୀଙ୍କୁ ଅର୍ଘ୍ୟ ବଢ଼ାଇବେ ମୁଖେ ଦେଇ ହୁଳହୁଳି ॥ ଛବି ସ୍ୱାମୀର

Digitized by srujanika@gmail.com

ଆଳଟ ପଡ଼ୁଥିବ ସ୍ୱାମୀ ବଳେ ନଳଟରେ । ଛତିଶ ରାଗେ ନୃତ୍ୟଗୀତ ଗାଆନ୍ତେ ଶବଦ ବେଉଦ ନିପୁରେ ॥ ଜମ୍ବୁଦ୍ୱୀପ ପୃଥ୍ୱୀ ସମସ୍ତେ ମାନବେ ଧର୍ମଦେବ ହେବେ ରାଜା । ଜାଣି ଗୁଣେ ବୃତ୍ତି ଖଞ୍ଜା କରି ଦେବେ ପାଳବେ ଜନ ପରଜା । ୧୫ । ଜଗତଯାକ ଏକ ଧର୍ମେ ଚାଲିବେ ଅଲେଖଙ୍କ ଆଜ୍ଞା ଘେନ । ଜମ୍ବୁ ଜମ୍ବୁ ଶଙ୍ଖ ଯୋଉନ୍ଦା ଭୁବନେ ମହିମା ଶବଦ ଧ୍ୱନ ॥ ଝଟ ଝଟ ଝଳ ଝଟକ ବଜ୍ରଲ ପରଏ ପାଉଛି ଶୋଭ । ଝାଡ଼ବୃକ୍ଷ ବୃନ୍ଦାବରେ ଘାପାବଳ ଶିଖରେ ଅଲେଖ ପ୍ରଭ । ଝଡ଼ିବ ପାତକ ଦର୍ଶନ ମାତ୍ରକେ ଧର୍ମବଳ ବକଶିବ । ଝାଡୋଡ଼ାରୁ ଜାଣ ବାଛିବେ ବନ୍ଧନ ଶୂନ୍ୟବ୍ରହ୍ମ ଗୁରୁଦେବ । ୧୮ । ନାମ ଭଜୁଥିବେ ଅଲେଖ ଅଲେଖ ମୁଖେ କହୁଥିବେ ସତ୍ୟ । ନାନା ରତ୍ନବନ୍ତ ସମସ୍ତେ ଅର୍ଜିବେ କରିବେ ଗୃହ ବସ୍ତି । ୧୯ । ନାରୀମାନେ ସ୍ୱାମୀ ସେବା କରୁଥିବେ ଗୁରୁନାମ ମୁଖେ ଗାଇ । ନିତ ଗୁରୁ ଦରଶନ କରୁଥିବେ ଅନ୍ନ ପାଣି ଭିକ୍ଷା ଦେଇ । ୨୦ । ଟଙ୍କା ସୁନା ଭାତ ବର୍ଣ୍ଣନ ସବୁଙ୍କୁ ଅଲେଖ କରିବେ ଖଞ୍ଜା । ଖଟିଛନ୍ତି ଦେଖ ଧର୍ମ ପ୍ରଭୁ ପାଖ ଚାରି ଊଣା ଲକ୍ଷ ରାଜା ॥ ଟାଣପଣ ଆଉ କାହାରି ନ ଥିବ ସମସ୍ତେ କରିବେ ଭକ୍ତି । ଟେକ ଭଜ ସର୍ବେ ଅଲେଖ ମହିମା ଛତିଶ ପାଟକ ଜାତି । ୨୨ । ଠିକ କଥା ଗୁରୁ କହିଲ ଦେବାରୁ ସମ୍ପ୍ରତେ ସର୍ବେ ପାଇବେ । ଠାକୁର ଅରୂପ ଧର୍ମାନ୍ଧ ସ୍ୱରୂପ ସେବାରେ ସର୍ବେ ଖଟିବେ । ଠିକ୍ ବାକ୍ୟ ସତ୍ୟ ଶୁଣି ସାଧୁସନ୍ଥ ଶ୍ରୀମୁଖରୁ ଆଜ୍ଞା ପୁଣି । ଠକ ଜଇ ଭଣି ଆଜ୍ଞା ଶିରେ ଘେନ ଆନନ୍ଦିତ ମନେ ଗୁଣି । ୨୪ ।

(ଡ଼) ଡାକ ଶିଷ୍ୟମଣ୍ଡ ମହାବାଣୀ ଗୁରୁ ଚରଣରେ କର ପୂଜା । ଡାକ ଶ୍ରୀଗୁରୁଙ୍କୁ ରାଜ୍ୟ ସମର୍ପିବ ବାଜୁଥିବ ଘାର ବାଜା ॥ ଡେଙ୍ଗା ଜଗଣ୍ଡ ଉପରେ ବସି ଧର୍ମ କରୁଥିବେ ବ୍ରହ୍ମାମଣା । ଢଙ୍ଗର ବୋଲିତ ଜଣେ ହେଁ ନ ଥିବେ କରିବେ ନାମ ଭଜନା । ଢାଳୁଥିବେ ପାଦେ ପୁଣ୍ୟ ଗଙ୍ଗାଜଳ ସବ ରଜପୁତ ମିଳ । ଢାଳ ଶ୍ୱେତ ଛତ୍ର ଚାମର

Digitized by srujanika@gmail.com

ଢାଳିବେ କର୍ପୂର ଚନ୍ଦନ ଘୋଳ ।୨୭। ତାଳ ଡାଳ ପୁଏ ନୃତ୍ୟ କରୁଥିବେ ବଜାଇ ଗିନି ଖଞ୍ଜଣୀ । ଢାଳ ଶିଭ ପ୍ରଭୁ ପାଦରେ ଲୋଟିବେ ଶିଶୁମଣ୍ଡ ମହାବଣୀ ।୨୮। ଅନ୍ତର୍ଯ୍ୟାମୀ ପ୍ରଭୁ ଅଲେଖ ମହିମା ସତ୍ୟରେ କରିବେ ଖେଳ । ଆନନ୍ଦରେ ସ୍ୱରବେଦ ଭକ୍ତମାନ ଏକଠାକେ ହେବେ ମେଳ । ୨୯ । ଅଖିଳ ତାରଣ କରିବା ନିମନ୍ତେ ଅରୂପ କୁରୂପ ବନ୍ଧ ଅଚିନ୍ତାରେ ପ୍ରଭୁ ଖେଳ ଉଠାଇବେ ଚଉଦ ବ୍ରହ୍ମାଣ୍ଡ ଗୋସାଇଁ ।୩୦। ତତ୍ତ୍ୱ ପାଇବେ ଜନପୁର ଭକତ ସୁଖେ ନେଉଥିବେ ବନ । ତପ ଜପ ଯଜ୍ଞ ବ୍ରତ ନ କରିବେ କରୁଥିବେ ଆତ୍ମଜ୍ଞାନ ।୩୧। ଜନପୁର ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଲୋକ ହେବେ ଏକ ଗୋଷ୍ଠୀ । ତେଣିକି ଆଉ ଅପମୃତ୍ୟୁ ନଥିବ କଳିକାଳ ଯିବ ମେଣ୍ଟି ।୩୨। ଅସ୍ତ ହେବ ଧର୍ମକାଣ୍ଡି କ୍ରିୟା କର୍ମ ଗୁରୁ ଆଜ୍ଞା ଥିବେ ଧରି । ଥକିତ ହୋଇବେ ସ୍ୱରବେଦ ଶାସ୍ତ୍ର ନ ଶୁଣିବେ ନରନାରୀ ।୩୩। ଥୋକାଏକ ଦିନ ରହିଅଛି ଆଉ ଅଳପ ରହିଛି କାଳ । ସ୍ଥାନ ଛାଡ଼ି କରି ପଳାଇ ଯିବାକୁ କରୁଅଛି ବାର ଭୂପାଳ ।୩୪। ଦେବବନ୍ଦ ହୋଇ ଅରୁଣ ବରୁଣ ଗରୁଡ଼ ହନୁ ଆସିବେ । ଦୁଷ୍ଟଙ୍କୁ ନାଶିବେ ପୃଥ୍ୱୀ ଉଶ୍ୱାସିବେ ଧନରତ୍ନ ସବୁ ନେବେ ॥ ଯାନବାହନ ଅଲେଖ ଅବଧୂତ ଭଣ୍ଡାରେ ସବୁ ରଖିବେ । ଦାତା ଭକ୍ତ ଜାଣି ଦେଉଥିବେ ଗଣି ଦୁଃଖୀ ତ ଜଣେ ନଥିବେ ॥ ଧର୍ମ ଜାଣି ପ୍ରଭୁ ଧନ ପଣ ଦେବେ ମନରେ ନକର ଚିନ୍ତା । ଧରଣୀରେ ଯେତୁ ଧର୍ମ ଧରିଥିବ ଦେଖିବ ସକଳ କଥା ॥ ଧୂନି ପକାଇବେ ବ୍ରହ୍ମାଣ୍ଡ କରତା ସତ୍ୟରେ ଉଡ଼ିବ ବାନା । ଧରଣୀରେ ଯେତେ ଦୁଷ୍ଟ ମାନେ ଥିବେ କାଳଚକ୍ରେ ହେବେ ହଣା ।୩୮। ନୂଆ ଯେ ହୋଇବ ସବୁ କଥାମାନ ଧରଣୀରେ ଯେତେ ରଜା । ନିଜ ଶୂନ୍ୟ ବାନା ସ୍ୱରଯୁଗେ କଣ୍ଠା ସମସ୍ତେ କରିବେ ପୂଜା । ୩୯ । ନଗରେ ଅନାଦି ଯୋଗନିଦ୍ରା ଗାଦିର ଉପରେ ବାନ୍ଧିବେ ଧ୍ୱଜା । ନିଜ ଗୁରୁଙ୍କର ହୁକୁମ ଚଳିବ ମାନିବେ ଜନ ପରଜା । ୪୦ । ପୁରନ୍ଦର ଜଳ ବରଷା

Digitized by srujanika@gmail.com

କରିବେ ସମସ୍ତ ବେଳକୁ ଜାଣି । ପରଜାଏ କୃଷି ନଷ୍ଟିନ୍ତେ କରିବେ ଏ ନବଖଣ୍ଡ ମେଦିନୀ ।୪୧। ପୃଥ ପରି ରାଜା ପ୍ରଜାଙ୍କୁ ପାଳିବେ ହଳକେ ଟଙ୍କାଏ ନେବେ । ପ୍ରଭୁ ଆଜ୍ଞାରେ ଧନରତ୍ନ ଅର୍ଜିବେ ଦୁଃଖି ଯେ ଜଣେ ନଥିବେ ।୪୨। ସନ୍ଧା କରି ଫଳ ପ୍ରାପତ ହୋଇବ ଚତୁର୍ପାଦେ ହେବ ଆସ୍ତ । ଫଟା ଘର ହେବ ଚଉଖ ଉଆସ ସୁଜ୍ଞଜନେ ଶୁଣିଥାଅ ।୪୩। ମୁଲ୍‌ମାଳ ଧରି ପୁରୁଷକୁ ସ୍ତ୍ରୀ ଇଚ୍ଛାଏ କରିବେ ବର । ପୁରୁଣାରେ ନାମ ଭଜନ କରିବେ ସୁଖେ କରୁଥିବେ ଘର ।୪୪। ବାନା ନେବେ ସିଦ୍ଧ ଗୁରୁ ଆଜ୍ଞା ପାଇ ବ୍ରହ୍ମ ଧୂନ ଘରେ ଯାଇଁ । ବୈଷ୍ଣବ ହୋଇବେ ଚଉଷଠି ସିଦ୍ଧ ସତ୍ୟ ଧର୍ମ ରକ୍ଷା ପାଇଁ ॥ ବାହ୍ମନ ପାଟକ ଜାତି ଯେତେ ଲୋକ କୁଳ ଦେବତା ଛାଡ଼ିବେ । ବଚନରେ ଭାବ ଦେଉଅଛି କହି ପ୍ରଭୁଙ୍କୁ ମୂଳ କରିବେ ।୪୫। ଭକ୍ତ ଜାଣିକରି ଭଣ୍ଡାରକୁ ଦେବେ ଯେ ହେବ ସେମାନେ ପଢ଼ି ଭାଗବର୍ତିନ ପ୍ରଭୁଙ୍କୁ ଏକଦିନେ ଲକ୍ଷେକ ଟଙ୍କା କଉଡ଼ି ।୪୬। ଭରଣ ହୋଇବେ ଖରପୁଟ ଭକ୍ତ ଗୋଟିଏ ନଥିବେ ଊଣା । ଭାବେ ଜଇ ବୋଲେ ଗୁରୁ ଆଜ୍ଞା ବଳେ ଆଗମ୍ଭୁ ଘଡ଼ୁଛି ଜଣା ।୪୮।

(ମ) ମନରେ ଅପ୍ରତେ ନକର ଜଗତେ ସତ୍ୟ ଦେଉଅଛି କହି । ମଲ୍ଲ ଲୋକ ଜୀଇ ଲେଉଟି ଆସିବେ ପୂର୍ବ ହେବୁ ଚେତା ପାଇ ।୪୯। ମହିମା ନାମକୁ ସମସ୍ତେ ଭଜିବେ ଜୀବ ଉଦ୍ଧାର ନିମନ୍ତେ । ମେଦିନୀରେ ଧର୍ମ ପ୍ରଘଟ ହୋଇବ ଶୁଣିଥାଅ ସାଧୁ ସନ୍ଥେ ।୫୦। ଯେତୁ ଏ ଧର୍ମକୁ ଛାଡ଼ି ଦେଇକରି ଅନ୍ୟ ଧର୍ମ ଆଚରିବେ । ଯୁଗଯୁଗାନ୍ତରେ ଜନ୍ମଜନ୍ମାନ୍ତରେ ଅଧୋଗତି ସେତୁ ହେବେ ଯେତେ ଲୋକ ନିଷ୍ଠାକରି ଭଜୁଥିବେ ପିଣ୍ଡ ପ୍ରାଣ ଦେଇ ଦାନ । ଜୀବ ଉଦ୍ଧରିଇ ସଂଶୟ ନଥାଇ ନ ବାଧେ ଜନ୍ମ ମରଣ ।୫୧। ରଣ ସଂଗ୍ରାମ କରିବେ ରାମକୃଷ୍ଣ ଅଶ୍ୱଚଢ଼ି ଖଣ୍ଡା ଧରି । ଉଦ୍ଧତଲେ ଯେତୁ ଧର୍ମ ନ ମାନିବେ ସବୁ ପକାଇବେ ମାରି ।୫୩। ରାଜାମାନେ ଉଠରେ

Digitized by srujanika@gmail.com

ଶରଣ ପଶିବେ ଶୂନ୍ୟ ବ୍ରହ୍ମଙ୍କ ଚରଣ । ରଖିବେ ସେ ଯାହା ରାଜ୍ୟ ଭାର ଦେଇ ଦେବେ ଏକାକ୍ଷର ଜ୍ଞାନ । ୫୪ । ଲକ୍ଷ ଲକ୍ଷ ନୂଆ ଛତି ବିଶ୍ୱକର୍ମା ଆଜ୍ଞା ପାଇ ତିଆରିବେ । ଲକ୍ଷେ ରାଜପୁତ୍ର ଏକାବେଳେ ଛତ୍ର ପ୍ରଭୁଙ୍କ ଶିରେ ଟେକିବେ । ୫୫ । ନବଖଣ୍ଡର କର୍ତ୍ତା ବ୍ରହ୍ମାଣ୍ଡ କରତା ରାଜାଙ୍କୁ ଦେବେ ଆଦେଶ । ଲୋଭ ଲାଭ ତେଜି ନିଜ ନାମ ଭଜି ପାଉଥିଏ ଶୂନ୍ୟ ଦେଶ ॥ ଚୁଡ଼ାମଣି କରି ସବୁଙ୍କୁ ତିଆରି ଜଣେ ଜଣେ ଶାଢ଼ୀ ଦେବେ । ବୁଦ୍ଧ ସ୍ୱାମୀଙ୍କର ଆଜ୍ଞା ଶିରେ ଘେନି ସେ ଯାହା ପୁରକୁ ଯିବେ । ୫୭ । ବ୍ରହ୍ମାଣ୍ଡପାଳ ଅତିଥିଙ୍କ ନିମନ୍ତେ ମଢ଼ିଆ ତିଆରି ହେବ । ବୁଦ୍ଧ ସ୍ୱାମୀଙ୍କର ଶୂନ୍ୟ ଗାଦି ସେବା ନିରନ୍ତରେ ଲାଗିଥିବ । ୫୮ । ଶ୍ରୀଗୁରୁ ଶିଷ୍ୟ ସବୁବେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଫେରୁଥିବେ । ଶ୍ରୀଗୁରୁ ଭଜନ କରି ରାଜଧନ ଅଟାଳିରେ ଧନ ନେବେ । ୫୯ । ଶ୍ରୀଗୁରୁ ଆଜ୍ଞାରୁ ପଶ୍ଚିମ ଦିଗରୁ ଆସିବଟି ରେଳଗାଡ଼ି ॥ ଶ୍ରୀଗୁରୁଙ୍କ ଖର୍ଚ୍ଚ ଦେବେ ରାଜା ପ୍ରଜା ହସ୍ତୀ ଯାଉଥିବେ ଚଢ଼ି ॥ ଶୂନ୍ୟ ପ୍ରଭୁ ଶୂନ୍ୟ କ୍ଷଣକେ ଦୃଶ୍ୟ କ୍ଷଣକେ ବୃହନ୍ତ ରୂପ । ସତ୍ୟ କହୁଅଛୁ ସେ ଶୂନ୍ୟ କରତା ଛପନ କୋଟିଙ୍କ ବାପ । ୬୧ । ସେ ସାତ୍ତ୍ୱିକ୍ୟ ପଦ ଭଜନ ନିର୍ବନ୍ଧ ସମସ୍ତ ଜନଙ୍କ ହିତ । ସତ୍ୟଧର୍ମ ଖେଳା ମହାନାଟ୍ୟ ଲୀଳା ଶୁଣନ୍ତେ କର୍ଣ୍ଣ ମୁକତ ॥ ସ୍ୱାମୀ ଗୁରୁଦେବ ଏକାନ୍ତରେ ଭାବ କରିବେ ଭକତ ଗୋଷ୍ଠି । ସତ୍ୟଯୁଗ ଧର୍ମ ଜ୍ଞାନ ପ୍ରକାଶିବେ କଳିକାଳ ଯିବ ମେଣ୍ଟି । ୬୩ । ଶରଣ ରଖିବେ ମରଣ କାଟିବେ କାରଣ କରତା ଗୁରୁ । ଶୁଭେ ସମସ୍ତଙ୍କୁ ଅଙ୍କରେ ରଖିବେ ଉଦ୍ଧରି ନେବେ ସଂସାରୁ ॥ ହରିହର ବ୍ରହ୍ମା ନିରାକାର ସଙ୍ଗେ ସେ ଯାହା ପଣ ପାଇବେ । ହରଷରେ ଗୁରୁ ଆଜ୍ଞା ଶିରେ ଧରି ସେ ଯାହା କାର୍ଯ୍ୟେ ଲାଗିବେ । ୬୫ । ହେଳା ଲେଖା କରୁଥିବେ ହରିଦ୍ୱାରେ ଥିବେଟି ହରିକରଣ । ହନୁମନ୍ତ ବ୍ରହ୍ମା ପଦରେ ବସିବେ ବଳ ନେବେ ଇନ୍ଦ୍ର ପଣ । ୬୭ । ଷିତ

Digitized by srujanika@gmail.com

ମଧ୍ୟେ ସ୍ୱାମୀ ଖେଳ କରାଇବେ ଭକତଙ୍କ ରକ୍ଷା ପାଇଁ । କ୍ଷୀଣ ବୃଦ୍ଧ ରୂପ ଦର୍ଶନରେ ମୋକ୍ଷ ପାତକ ରହିବ ନାହିଁ । କ୍ଷେତ୍ର ପ୍ରାପ୍ତ ହୋଇ ତଜଡ଼ରେ ମହା ମନ୍ତ୍ରମାଙ୍କ ଯଶ ପୂର୍ଣ୍ଣ । ଖ୍ୟାତ ହୋଇବ ଏକାକ୍ଷର ଭଜନ ଭଣେ ଜୟକୃଷ୍ଣ ସ୍ମାନ । ୬୮ ।

—o—

( ୫୪ )

(କ) କୃପା ସାଗର ଗୁରୁ, ମହିମା ମହାମେରୁ, ହୃଦୟରୁ ଉଦେ ହୋଇଅଛ । କଲେ ଯେତେ ଜଣାଣ, କର୍ଣ୍ଣେ କମା ନ ଶୁଣ, ମୋ କର୍ମକୁ ମଜନେ ରହିଛ ହେ କୃପାନିଧି । କର୍ମେ ମୋ ଲେଖିଅଛ କସ । କଳି ଯୁଗରେ ମୋତେ ଜନ୍ମ କରାଇ ମର୍ତ୍ତ୍ୟେ, କ ଦୋଷେ ବନ୍ଧୁଅଛ ବେଷ ହେ । ୧ । କ୍ଷମା ସାଗର କାନା, ଅଟ ହେ ବଜ୍ର ସେହ୍ନା, ଶ୍ବରିଯୁଗେ ଭକ୍ତ ନିମନ୍ତେ । ଖଳ ଗଞ୍ଜନ ବାକ୍ୟ ପଡ଼ୁଛି ଯେହ୍ନେ ଶ୍ରାବଣ, ନାଶ୍ବତ ଆସି ହୃଦଗତେ ହେ, କ୍ଷମାନିଧି, ଖଚ୍ଚୁ ମୁଁ ଥାଇଁ ଥାଇଁ ଯାଦେ । ଖଗପ ହୋଇ ମୁହିଁ ଯିବାର ଦୂର ନାହିଁ, ଦୟା ନୋହିବ ଯଦ ହୃଦେ ହେ । ୨ । ଗୁରୁ ପଣେ ସମାନ ଚତୁର୍ଦ୍ଦଶ ଭୁବନ ମଧ୍ୟେ ଜଣେ ହେଁ ନାହିଁ ଦେଖା । ଗର୍ବ କମା ଗଞ୍ଜୁଛ କଷଣ ନ ଫେଡ଼ୁଛ ଭୁମ୍ଭହୁଁ ହେ ଅଛୁ ଅଧିକା ହେ ଗୁରୁ-ଦେବ, ଜ୍ଞାନେ ଅଜ୍ଞାନେ ଥିଲେ ଦୋଷ, ଗୁରୁ ଯେ ଅବଧୂତ ଶାନ୍ତିକର ଅରତ ଘୋର ଦୁରିତ କର ନାଶ ହେ । ୩ । ଘରେ ମୋତେ ରଖାଇ କଷଣ କାହିଁ ପାଇଁ ପଡ଼ୁଛି ଆସି ଅଦଭୁତେ । ଘାଣ୍ଟି ହୋଇ ମରୁଛି ଦୟା କମା ନୋହୁଛି ସୁଦୟା କର ହୃଦଗତେ ହେ ଘଟକାଗ, ଘୋର ସଙ୍କଟ ପାତକର, ହେନ ମୋର ଜଣାଣ ଆହେ ଆରତନାଶ ଘୋଟି ରହିଛ ଚନ୍ଦ୍ରଚର ହେ । ୪ । ଉଦ୍ଧାର କର୍ତ୍ତା ଯେଣୁ ଭରସା ମୋର ତେଣୁ, ଅନ୍ତର୍ଗତରେ କର ଭାବ । ଏବେ ତ ବନ୍ଦୁନ ହେଉଛୁ ଆନୁ ଆନ, ଏ କଥା ବଡ଼ ଅସମ୍ଭବ ହେ, ଅଣା-କାର, ଅନାଥ ପ୍ରାପ୍ତ ମୁଁ ହେଉଛୁ । ଅନାଥ ନାଥ ହୋଇ ସୁହାର

Digitized by srujanika@gmail.com

ଶୁଣନାହିଁ, ଏହା ମୁଁ ବିଚାରି ମଣୁଛି ହେ ॥ ଚିତ୍ତ ମଧ୍ୟେ ମୋହର, କରୁଥାଇ ବିସ୍ମର, ଅଲେଖ ସ୍ୱାମୀଙ୍କନ୍ତ ବୋଲି । ଚତୁରବର୍ଗ କର୍ତ୍ତା ଅଟ ଅଭୟ ଦାତା, ଭାବନା କରି ଜଣାଇଲି ତେହୁ, ଚିନ୍ତାମଣି, ଚିନ୍ତା ଚିତ୍ତରୁ କରି ଦୂରି । ଛଇ ବାନା ଢୋଉଲ, ରଖ ଚିନ୍ତା ଛଡ଼ାଇ ଚରଣ ଧରୁଛି ତୁମ୍ଭର ହେ ।୬। ଗୁଡ଼ ସକଳ ଆଶା, ତୁମ୍ଭ ପାଦେ ଭରସା, କରି ମୁଁ ଆବାଲ୍ୟ କାଳରୁ । ଗୁରୁ ବିପତ୍ତି କେତେ, ଏକା ମୋ ପ୍ରଭୁ ଥାନ୍ତେ, ଏହା ମୁଁ ଭାବୁଛି ମନରୁ ହେ, କ୍ଷମାସିନ୍ଧୁ, ଗୁଣକ କରିଅଛ ଦୟା । ଗୁପ୍ତ ପରାଏ ହୋଇ, ଛପି ଯେ ଅଛ ରହି, ଯେସନ୍ତେ ଅଚଳ ମେରୁ ଖମ୍ଭ ହେ ।୭। ଜଗତ କର୍ତ୍ତା ଯେଣୁ, ଜୀବନ ଜୀବନ ତେଣୁ, ଚରଣେ କଲି ସମର୍ପଣ । ଜପ ତପକୁ ତେଜି ନିଜ ନାମକୁ ଭଜି, ଚରଣେ ପଶିଲି ଶରଣ ହେ । ଜଡ଼ଚେତନ ଯମ ନିୟମ ଆଜ୍ଞା ହେଉ । ଜଗତକର୍ତ୍ତା ମୋତେ, ସୁଦୟା କର ଚିତ୍ତେ, ଜଗତେ ତୁମ୍ଭ ଯଶ ରହୁ ହେ ।୮। ଝଗଡ଼ା କରି କେତେ, ଝାବୋଡ଼ା ଲୋକ ଯେତେ, କହୁଅଛନ୍ତି ଖଳ କଥା । ଝାମ ମାଇଲାପରି, ରହୁଛି ଅପସରି, ତଳକୁ ନ ନୁଆଁଇ ମଥା ହେ । ଝିମିଟେକେ । ଝୁରିବ ବୋଲି ଦୁଃଖ ଭାରି । ଝଞ୍ଜାବାର ଭିତରୁ, ଉଦ୍ଧରି ଧରି ଗୁରୁ, ବୋଲିଣ ଭରସା ମୋହରି ହେ ।୯। ନିତ୍ୟ ଭୃତ୍ୟ ପାଳନ, ଅଟ ଦୁଷ୍ଟଦଳନ, କରିଅଛ ବିଷ୍ଣୁ ହସ୍ତେ । ନିର୍ଲେପ ସର୍ବ ପୂର୍ଣ୍ଣ, ସତ୍ୟ ଧର୍ମ ପାଳନ, କାରଣ ରହିଛ ଗୁପତେ ହେ । ନିଜ ଗୁରୁ, ନେଇ ଚରଣ ତଳେ ରଖ । ନୋହିଲେ ଗଲି ଭାସି, ହେ ସ୍ୱାମୀ ଶୂନ୍ୟବାସୀ, ଖଣ୍ଡନ କର ଭବ ଦୁଃଖ ହେ ।୧୦। ଟେକ ଭଜୁଛି ନାମ, ଅନାଦି ଗୁରୁବ୍ରହ୍ମ, ଟାଣପଣ ନ ଭାଙ୍ଗ ମୋର । ଟିକାଏ ଦୟା ହେଉ. ଦୁରିତ କ୍ଷୟ ଯାଉ ଚରଣ ଧରୁଛି ତୁମ୍ଭର ହେ । ଟେକ ବାନା, ଟେକିଲେ ଦୁର ହୁଏ ଦାରୁ । ଟାଣ ପଣ ଯେ କରେ ଏ ମହୀ ମଣ୍ଡଳରେ, ଟିକକେ ଦୂନା କର ମେରୁ ହେ ।୧୧। ଠାକୁର ବୋଲି ଆଶା, କରିଅଛି ଭରସା, ଜଣାଣ କରୁଛି ଛାମୁରେ ।

Digitized by srujanika@gmail.com

ଠାକୁର ବଶୁନାହିଁ, ଠାକୁରକଲେ ଯାଇ, ଠାକୁର ନ ଦୁଏ ମଗରେ ହେ । ଠିକଣାରେ, ଠିକେ କରଅ ଗୃହ ଶାନ୍ତ । ଠିକେ ଜନ୍ମୀ ପାମର ଅପ୍ରାଧ କ୍ଷମାକର, ବୋଲୁଣ କହୁଛୁ ମିନତ ହେ । ୧୨ ।

(ଡ) ଡେଙ୍ଗା ଜଗତ ପରେ, ଦଜେ ଭକ୍ତ ଶ୍ରବରେ ରକ୍ଷାକରଣ ବାନା ବୋହୁ । ଡାକ ଡାକ ମୁଁ ଯେତେ, ଜଣାଉଛୁ ଅଗ୍ରତେ କର୍ଣ୍ଣେ ନ ଶୁଣୁ ଛ କମାଇଁ ହେ । ଡାକ ଡାକ, କଣ୍ଠ ଶୁଖି ଯାଉଛୁ ମୋର, ଡୋଳାରେ ଦେଖ ସ୍ୱାମି, ଦୁଃଖ ପୁର ଅଛଲ, ଦୁର୍ବଳ ହେଉଛୁ ଶରୀର ହେ ॥ ଢାଳୁରଙ୍ଗ ପସର, ଗୁଡ଼ ସବ ଆଶେଷ, ଅରୂପ ବ୍ରହ୍ମ ଅଶ୍ରେ କର । ଢାଙ୍କ ମାଡ଼ି ପଡ଼ୁଛି, ସମ୍ଭାଳ ନ ହେଉଛି, ଅଙ୍ଗକୁ ହେଉଅଛୁ ଘାର ହେ । ଢାଳେ ପ୍ରଭୁ, ଢାଙ୍କୁଣୀ ମିଟାଅ ଏଥର, ଢେଲ ପଡ଼ିଲ ଭଲ, ଅନାସୃତ ହୋଇଲ, ଅମୃତ ପାନେ ଦୁଃଖ ହର ହେ । ୧୪ । ଆକୁଳ ସମୁଦ୍ରରେ ଭାସୁଛୁ ଶୋହନ୍ତରେ ନାବ ଲଗାଇ ରକ୍ଷାକର । ଅଣଆସ୍ତ କାଳେ, ପଡ଼ୁଛୁ ପାଦତଳେ, କଞ୍ଚନ କୃପାରେ ଉଦ୍ଧରନ୍ତେ । ଅଣାକାର, ଅକୃପା ହେଲେ ନଲ ସର । ଏ ତନ ଭୁବନର ସମସ୍ତେ ନାରଖାର, ହେଲେଣି ମରିଯିବା ପର ହେ ॥ ତନ ଭୁବନ ମଧ୍ୟ ମଧ୍ୟେ ମୋ ଖାଦା ନାହିଁ, ଏକା ଅଲେଖ ମୋର ଇଷ୍ଟ । ତେଣୁ ମୋ ପ୍ରତ ଆଟା କରିଅଛୁ ଭରସା ଶାନ୍ତ କରିବ ବୋଲ ଚିଷ୍ଟ ହେ । ତପନସ୍ତୁ, ତଇ ମୁଁ କରୁଛୁ ଭୁମ୍ଭଙ୍କୁ । ତାରିବ ଯେବେ ତାର, ନୋହିଲେ ପ୍ରାଣେ ମାର, ଦେଖାଅ ନାହିଁ ଏ କଷ୍ଟକୁ ହେ । ୧୬ । ଥପ୍ ନୋହୁଛୁ ମନ, ଥରୁଛୁ ପିଣ୍ଡପ୍ରାଣ, ଉକଣ୍ଠା ପ୍ରାପ୍ତ ହେଉଛୁ । ଥକନ୍ତ ଦୁଏ ପାଦ ନଡଳ ନଶବଦ, ହୋଇ ଅଣାସ୍ତେ ରହୁଛୁ ହେ । ଥାଉଁ ଥାଉଁ ଗୁରୁ, ମୋ ଅଲେଖ ଅବଧୂତ । ଥପୁ ମୁଁ କର ଛତ୍ରେ, ଡାକୁଅଛୁ ଝରତେ, ଫେଡ଼ିଲ ନାହିଁ ମୋ ଆରତ ହେ ॥ ଦୟା ସାଗର ଗୁରୁ, ମହିମା ମହା ମେରୁ, ସଂଶୟ ଫେଡ଼ ମୋ ହୃଦରୁ । ଦୁଃଖୀ ଦୁଃଖ ନାଶନ, ଅଟ ହେ

Digitized by srujanika@gmail.com

ଆର୍ତ୍ତତ୍ରାଣ, ବ୍ରହ୍ମାଣ୍ଡ ରଖ ଆପଦରୁ ହେ । ଦୟାମିନ, ଦୟା ଯାହାର ଠାରେ ହୁଏ । ଦୁଃଖ ଦଶା ଖଣ୍ଡନ, ହରେ ବିପଦମାନ, ଯମ ଭକ୍ଷଣ ନାହିଁ ଥାଏ ହେ ॥ ଧନ ଧର୍ମ ଦାୟକ, ଅଟ ଅଶେଷ ରକ୍ଷ, ନିଯ କରେ ତୁମ୍ଭଙ୍କୁ ଭଜନ । ଧର୍ମ ପୁରୁଷ ଯେଣୁ, ଜଣାଣ ମୋର ତେଣୁ, ଧ୍ୟାନ ଧାରଣେ ଭକ୍ତଜନ ହେ । ଧର୍ମଧର, ଧରୁଛୁ ପ୍ରଭୁଙ୍କୁ ସମ୍ଭାଳ । ଧାତା ବିଧାତା କର୍ତ୍ତା, ଅଟ ଜଗତ ଜର୍ତ୍ତା, ତେଣୁ ମୁଁ ଶରଣ ପଶିଲି ହେ ।୧୯। ନଜର ହଟହଟା, ଦନ୍ତେ ଧରୁଛନ୍ତି କୁଟା, ପ୍ରାଣକୁ ହେଉଛି ବାଧକ । ନ ଦିଅ ପ୍ରଭୁ ଦୁଃଖ, ତୁମ୍ଭ କିଣା ସେବକ, ଆଜିକ କଷ୍ଟ ଅଧିକ ହେ । ନାରାୟଣ, ରଖ ଶ୍ରୀଚରଣେ ଶରଣ । ନ ହେଲେ ସାହାଯ୍ୟ, ନାଶ ଗଲା ପ୍ରତ୍ୟକ୍ଷ, କୃପାରେ କର ଶ୍ରୀ କାରଣ ହେ ॥ ପଡ଼ୁଛି ଦୁରଦଣ୍ଡ, ଶୂନ୍ୟ ପ୍ରଚଣ୍ଡ କାଣ୍ଡ, ଅଗ୍ନି ଜଗଏ ବହ୍ନିଅଛି । ପଡ଼ୁଅଛି ଚମକ, ପୃଥ୍ୱୀ ହେଉଛି କମ୍ପ, ପିଣ୍ଡକୁ ସମ୍ଭାଳ ନୋହୁଛି ହେ । ପରମେଶ୍ୱର, ପୃଥ୍ୱୀରେ ଛନ୍ତି ଯେତେ ଲୋକ । ପଡ଼ୁ ଅନ୍ତର ଜଳପଡ଼ୁଅଛି ହୋବାଳ, କାହାର ଦେହେ ନାହିଁ ସୁଖ ହେ ।୨୦। ଫକୀର ବେଶ ହୋଇ, ଫେରୁଛି ସର୍ବମହୀ, ସଂସାରର ମଧ୍ୟ ଭୋଟି । ମୁ ରୁଣ୍ଡା ମୁଣ୍ଡେ ମନ, ଭଲ ରହମା ଦାନ, କ୍ଷୁଧାରେ ମରୁଛନ୍ତି ଚିନ୍ତି ହେ । ଫଳାଫଳ, ଫଳୁଛି କଳର ପ୍ରଭାବ । ଫାନ୍ଦ ପାତୁଛି କାଳ-ମୁଖ ଦେଉଛି ଗିଳି, କ୍ଷୁଧାରେ ଶରୀର ଜର୍ଜ୍ଜରିବ ହେ ॥ ବ୍ରହ୍ମାଦି ଦିଗପାଳ, ସୁରେନ୍ଦ୍ର ଆଖଣ୍ଡଳ ପାଳନ ନ କରନ୍ତି ମହୀ । ବାସୁକି ନାଗବଳ, ପଡ଼ୁଅଛି ଗରଳ, ବିଷମ ବିଷଘାତ ଦେଉଛି ହେ ! ବିଧିମତ, ବୁଝାମଣା ନୋହିଲା ଯେଣୁ । ବ୍ରହ୍ମାଣ୍ଡ ଦିଶେ ଶୂନ୍ୟ, ଅଟଳ ସର୍ବଜନ, ମରଣ ପାଉଛନ୍ତି ଏଣୁ ହେ । ଭାବ ପ୍ରଭୁଙ୍କୁ ଦେଇ, ଭାବ ଭକ୍ତି ଲଗାଇ, ଭାବୁଛି ହୃଦୟ ଭିତରେ, ଭ୍ରାନ୍ତି ମୋ କର ଛେଦ, ଅନାମ ପୂର୍ଣ୍ଣାନନ୍ଦ, ଜଣାଣ କରୁଛି ଆଳୁରେ ହେ । ଭବତ୍ରାଣ, ଭକତ ହିତକାରୀ ଯେଣୁ । ଭଣେ ଜୟୀ ପାମର, ଅପ୍ରାଧ କ୍ଷମାକର, ଭରସା ଅଛି ମୋର ତେଣୁ ହେ । ୨୪ ।

Digitized by srujanika@gmail.com

(ମ) ମନ୍ତ୍ରମାଙ୍କୁ ଭଜୁଛନ୍ତି, ମହନ୍ତ ସବୁଅଛନ୍ତି, ମଧ୍ୟରେ ଥାଇଁ ଥାଇଁ ବୁଡ଼ି । ମୂର୍ଖ ମୂଢ଼ ପାପିଷ୍ଠ, ଦୁଷ୍ଟ-ଦୁର୍ଜନ-ନଷ୍ଟ, ଗଞ୍ଜୁଅଛନ୍ତି ଗର୍ବ ବଢ଼ି ହେ । ମହାମେରୁ, ମନରୁ ନ ପାଶୋର ମୋତେ । ମନୁ ଦେଲେ ପାଶୋରି, ନଷ୍ଟେ ମୁଁ ଗଲି ସରି, କାରଣ କର ଦୟାଚିତ୍ତେ ହେ ॥ ଜଗତ ନର ଯେତେ, ତାଙ୍କ ସଙ୍ଗତେ ମୋତେ, ସଂସାରେ ଦେଇଛ ପକାଇ । ଜାଣିତ ମୁଁ ନ ଥିଲି, ଏବେ ସିନା ଜାଣିଲି, କେମନ୍ତେ ରଖିବ ବଞ୍ଚାଇ ହେ । ଯୋଗେଶ୍ୱର, ଜଞ୍ଜାଳ ଜାଲରେ ପଡ଼ିଛି । ଜୀବ ଜୀବନ ଆଶା ନୋହୁଅଛି ଭରସା, ଏଣୁ ମୁଁ ଜଣାଣ କରୁଛି ହେ । ୨୭ । ରସା ମେଦିନୀପୁର, ସମସ୍ତ ନାରଖାର, ହେଉଅଛନ୍ତି ରଣଭଣ । ରହିବ ବୋଲି ଦେହ, କାହାରି ଆଶା ନାହିଁ, ବୁଡ଼ାଇ ଦେବକ ବହନ ହେ । ରକ୍ଷାକର୍ତ୍ତା, ରଣ ସଂଗ୍ରାମ ପଶି କରି । ରବି ତଳରେ କେତେ, ପଢ଼ଣ ମୋହଗତେ, ଅନେକ ଯାଉଛନ୍ତି ମରି ହେ ॥ ଲେଖି ଲେଖି ଜଣାଣ କରୁଛି ଶ୍ରୀଚରଣେ, ରଖଏ ଜଗତ ଭଜତ । ଲକ୍ଷ ତୁମ୍ଭର ପରି, ନାହିଁ ଏ ବସୁନ୍ଧରୀ, ରକ୍ଷା କରିତା ସାମରଥ ହେ । ଲୋଭେ ପଡ଼ି, ଲୋଭ ବୁଡ଼ିଛନ୍ତି ସବୁଙ୍କରି । ଲାଗିଛି ପ୍ରତିବାଦୀ, ଅମୋଘ ଖଡ଼୍‌ଗେ ଛେଦି, ଅନାଦି ଅବ୍ୟକତ ହରି ହେ ॥ ବଡ଼ ପ୍ରଭୁ ଥାଆନ୍ତେ, ବଡ଼ ଭରସା ଚିତ୍ତେ, କରିଣ ଅଛି ସଦା କାଳେ । ବିଶ୍ୱାସ କରିଥାଇ, ତୁମ୍ଭ ଭରସା ପାଇ, ମନେ ପଡ଼ୁଛି ଏତେବେଳେ ହେ । ବାଞ୍ଛା ତରୁ, ବାଞ୍ଛା ମୋ ପୂର୍ଣ୍ଣକର ସ୍ୱାମୀ । ବ୍ରହ୍ମାଣ୍ଡ ରକ୍ଷା ପାଇ, ତୁମ୍ଭଙ୍କୁ ନିନ୍ଦା ନୋହି, ଅନୁପ ବ୍ରହ୍ମ ଅନ୍ତର୍ଯ୍ୟାମୀ । ୨୮ । ସନ୍ଥଜନ ପାଳନ, ସତ୍ୟଧର୍ମ ସ୍ଥାପନ, କରଇ ଅଛ ବାନା ଦେଇ । ସଂସାର ଜନ ଯେତେ, ହେବାରୁ ଅପରତେ, ସାମାଧି ଯୋଗେ ଅଛ ରହି ହେ । ସଦଗୁରୁ, ସଦଗ୍ରହ କର ବାରଣ, ସପ୍ତଫେଣାରେ ରହି, ଛଳ ଦୂର ମହାମାୟି, କରୁଣା କଟାକ୍ଷ କାରଣ ହେ । ୩୦ । ଶ୍ରୀଗୁରୁ ବୋଲି ପଦ, ଅଟେ ମହାନନ୍ଦ, ସର୍ବ ବ୍ୟାଧିକ ମହାମନ୍ତ୍ର । ସକଳ ଭୂତ ପ୍ରେତ, ପିଶାଚ କାଳଦୂତ, ନାଶନ କରନ୍ତିରେ

Digitized by srujanika@gmail.com

ଯନ୍ତେ ହେ । ଶ୍ରୀଅଲେଖ, ଶ୍ରୀ ସଦ୍‌ଗୁରୁ ଜୟ ଜୟ । ଶ୍ରୀଚରଣେ ଶରଣ ଦନ୍ତେ ଧରି ତରଣ, ସବୁଙ୍କୁ କରାଅ ଅଭୟ ହେ ।୩୧। ଶୂନ୍ୟମଣ୍ଡଳେ ଅଛ ସକଳ ଦେଖି ଅଛ, ବ୍ରହ୍ମାଣ୍ଡେ ହୋଇଅଛୁ ଯାହା । ସୁର ଅସୁର ଲୋକ, ବିବେକ ଅବିବେକ, କେବେ ନୁହନ୍ତ କାହାରେ ସାହା ହେ ସ୍ୱାମୀ ତୁମ୍ଭେ, ସକଳ ଯେଣୁ କରିପାର । ସାମର୍ଥ ଗୁରୁ ଘଣେ, ଚତୁର୍ଦ୍ଦଶ ଭୁବନେ, ସମସ୍ତେ ଆସ୍ତ ତୁମ୍ଭର ହେ । ୩ । ହଜୁର ଆଜ୍ଞା ଯାହା ଅବଜ୍ଞା ନୁହେଁ ତାହା, ବୃହସ୍ପତେ ପାଷାଣ ଗାର । ହେତୁ ଦାତାଙ୍କ ମୂଳ, ଅଟ ବ୍ରହ୍ମ ଅଟଳ, ଦୟାଳୁ କରୁଣା ସାଗର ହେ । ହର୍ତ୍ତାକର୍ତ୍ତା, ହରି ହର ଯା ଆଜ୍ଞାକାରୀ । ହୋଇଅଛୁ ଅନାସ୍ତ, ଅହେ ଅନାଥ ନାଥ, ହେତୁରେ ରଖ ଦୟାକରି ହେ ॥ କ୍ଷୀନ ବୁଦ୍ଧ ଶରୀର, ଧ୍ରୁବୁଙ୍କୁ କଲେ ତାରି, ଉଦେ ଅନ୍ତରେ ଦରଶନ । କ୍ଷିତି ମଧ୍ୟରେ ଯେତେ, ଅଛନ୍ତି ଲୟ ହୋଇ, ସେତେ ତୁମ୍ଭର ଜଣା ଜନ ହେ । କ୍ଷମାକର, କ୍ଷିତିର ଖଣ୍ଡ ଅପରାଧ । କ୍ଷମେ ବୋଲଇ ଜୟଦେବ କର ଅଭୟ, ବରଦାତା ଅରୁପାନନ୍ଦ ହେ । ୩୪ ।

—୦—

( ୪୫ )

(ଭକ୍ତ ନାରଣଙ୍କର)

(କ) କହୁଅଛି ସୃଷ୍ଟିରେ ଶୁଣ ଜଗତରେ କରିତାଙ୍କ ଖେଳ ବୃତ୍ତାନ୍ତ । କଳ ଶେଷ ଜାଣି ବିଜୟ ଧରଣୀ ସଙ୍ଗେ ହୋଇ ସବୁ ଭକତ । ସୁଜନେ । ଶୁଣ ଶୁଣ ବିବ୍ୟ ରହସ୍ୟ । ପ୍ରକାଶ ତେଜ ନିଷ୍କାମରେ ଅଛନ୍ତି ସେ ଅନାଦି ଶୂନ୍ୟ ପୁରୁଷ । ୧ । କ୍ଷିତିମଣ୍ଡଳ ଭାର ଖଣ୍ଡିବା ନିମନ୍ତେ ଭଜନ୍ତେ ଅନାଦି ଯୋଗେଶ୍ୱର । କ୍ଷମାନନ୍ଦ ପତି ଶାନ୍ତ ଦୟା-ଶୀଳ ଅଲେଖ ମହିମା ସାଗର । ମୁଜନେ ଖୋଜିଲେ ନ ମିଳେ ଏ ବ୍ରହ୍ମ । କ୍ଷିତି ଖଳ ଖଳ ଦେଖି କ୍ଷମାନନ୍ଦ ବିସ୍ତାରି ଦେଲେ ସତ୍ୟ ଧର୍ମ । ୨ । ଗୁରୁ ରୁପେ ଜ୍ଞାନ କରି ପର୍ଯ୍ୟଟନ ଗୁପତ ଲୀଳା ଆର-ମ୍ଭିଲେ । ଗୋସ୍ୱାମୀ ମୋ ସ୍ୱାମୀ ଗୋବର୍ଦ୍ଧନ ସ୍ୱାମୀ ଅଲେଖ ସ୍ୱାମୀ ଯା

Digitized by srujanika@gmail.com

ଦେଖିଲେ । ସୁଜନେ । ଅଖଣ୍ଡ ବଳ୍ପିତ ଯାହାର । ଙ୍କନେ ତାରିବା ପାଇଁ ଭୃତ୍ୟମାନଙ୍କୁ ଗୁରୁରୂପେ ହେଲେ ଦାହାର ॥ ଙ୍ଘୋଟି ରବିଚନ୍ଦ୍ର ବିପୁଳ କାଳ ଘଟଣ ରୂପଗୋଟି ଧରି । ଘେନ ନିଜ ରୂପ ହୋଇଛନ୍ତି ଗୋଚ୍ୟ ଘନଶ୍ୟାମ ଶୂନ୍ୟବେହାରୀ । ସୁଜନେ । ଘୋର ଏକାମ୍ବର ବନରେ । ଅକ୍ଷମାଳ ଦେହ୍ନ ଉତ୍କୃଷ୍ଟେ ରଖିଛନ୍ତି କପିଳାସ କନ୍ଦରେ ॥ ଅଣାକାର ଧ୍ୱଜ ଆଣି ସ୍ଥାପି ଦେଲେ ଅନାଦ୍ଧ ଶୂନ୍ୟମଣ୍ଡଳକୁ । ଅଶେଷ ମହିମା ଡିନପୁରେ କ୍ଷମା ସଦା ପ୍ରବାସୀ ହେଲାଠାରୁ । ସୁଜନେ । ଙ୍କୀର ସାର କର ଆହାର । ନ ବିଶ୍ରାମି ଦଣ୍ଡେ ବୁଲନ୍ତି ବ୍ରହ୍ମାଣ୍ଡେ ଶୂନ୍ୟ ମଣ୍ଡଳରେ ଯା ବେହାର । ୫ । ଚକା ଭଉଁରିଆ ଆଗେ ତକ ସ୍ନେଷ କରିପାରିଙ୍କେ ଯେତ୍ନ ଜମି । ଚେତୁଆଳ ଚେତା ଚନ୍ଦ୍ରାର୍ଥୀ ସାଗର ଅନ୍ତର୍ଯ୍ୟାମୀ ପେ ମୁରୁ ସ୍ୱାମୀ । ସୁଜନେ । ଚେତା ଥିଲେ କର ଦର୍ଶନ । ଚଉବର୍ଗ ଦାତା ଜଗତ କରତା ଚିତ୍ତୁ ଜାଣି ହେବେ ପ୍ରସନ୍ନ । ୬ । ଛତ୍ରଚକ୍ର ଶିଖ ଉପରେ ଅଲେଖ ଛନ୍ତିଲ ନିଷ୍ଟକ ମୂରତି । ଛକବୋନା ଡିନପୁରେ ଉଦ୍ଧଲଣି ମନରୁ ଗୁଡ଼ ନାହିଁ ସ୍ୱାତ । ସୁଜନେ । ଛନକା ପଶିଲା ଗୁପ୍ତରେ । ପୂର୍ବଦିଗେ ରବି ଉଦେ ହୋଇଅଛୁ ଦେଖ ନିଶା କାଳ ଯତରେ । ୭ । ଜମ୍ବୁ ଶଙ୍ଖ ଡିନପୁରେ ଶୁଭିବା ଜାଣିବେ ଡିନ ପୁରଜନେ । ସୁଜନେ ସାଗର ଶ୍ରୀମହିମା ଧୂନ ପ୍ରକାଶ ହେବ ଅଳ୍ପ ଦିନେ । ସୁଜନେ । ଜାଗିଥାଅ ପିଣ୍ଡେ ପ୍ରାଣକୁ । ଜାଣୁଜାଣୁ ଯେବେ ପଥ ଭୁଲୁଥିବ ଦୋଷ ଦେବନାହିଁ ପ୍ରଭୁଙ୍କୁ ।୮। ଝଡ଼ପଡ଼ିଲଣି ପାତକ ଯେସନ ଅରୁଣକୁ ଗଙ୍ଗଣିଇଲା । ଝିଟକ ଉଜ୍ଜ୍ୱଳ ରୂପ ଦରଶନେ କଳିଯୁଗ ଶିବ ମଣ୍ଡଳ । ସୁଜନେ । ଝଡ଼ିବ ପାତକ ଏଥର । ବସନ୍ତେ ଯେସନେ ମଳୟ ବହିଲେ ବୃକ୍ଷରୁ ଝଡ଼ଇ ପତର । ୯ । ନିର୍ମଳ ଭୁବନେ ନିଜ କଳ୍ପ ବ୍ରହ୍ମ କଳ୍ପନା ନାହିଁ ତହିଁ କିଛି । ନିର୍ମଳ ମୁକୁତା ପ୍ରାପ୍ତ ଯା ଶରୀର ଚନ୍ଦ୍ର ଯେ ସୁ ରୂପକୁ ବାଛି । ସୁଜନେ । ଲକ୍ଷ୍ୟ ଦେବ ଅଙ୍ଗ କାହାକୁ । କୋଟି ଚନ୍ଦ୍ର ସୂର୍ଯ୍ୟ ଅରୁଣ କିରଣ ତେଜ ସମ

Digitized by srujanika@gmail.com

ନୁହେଁ ଯାହାକୁ । ୧୦ । ଟେକ ଦେଇଛନ୍ତି ଅଲେଖ ବାନାକୁ ଟାଣ ଭାଙ୍ଗିବା ନିମନ୍ତରେ । ଟହଟହ ହୋଇ ଟଳ ପଡ଼ୁଛନ୍ତି ଦେଖି ବୁଦ୍ଧ ରୂପ ମର୍ତ୍ତ୍ୟରେ । ସୁଜନେ । ଟାଣ ଭାଙ୍ଗିଦେବେ ଏଥର । ଟେକ ଦେଲେ ମଥା ସଢ଼ିଯିବ କଥା ପାଣି ହୋଇଯିବ ପଥର । ୧୧ । ଠୂଳ ଶୂନ୍ୟ ଖେଳ ଠିକ ହେଲା ଆସି ଠାବ କହୁଅଛୁ ନାରଣ । ଠାଠିକେ ଅମୂଳ ପୁରୁଷ ରଚନ ଶୂନ୍ୟ ବ୍ରହ୍ମେ ପଶ ଶରଣ । ସୁଜନେ । ଠିକ ହେଲାଣି ସମକୂଳ । ଠାବ ଦେଇ ଭକ୍ତ ମାନଙ୍କୁ ରଖିବେ ଠିକାଏ ପଞ୍ଚାଅଶୀ ସାଲ । ୧୨ ।

(ଡ) ଡୋଳେ ଦେଖୁ ଦେଖୁ ଡାଳ ଭାଙ୍ଗିଯିବ ମୂଳକୁ ନଥିବ ଶୋଚନା । ଡେଙ୍ଗା ଡଙ୍ଗର ଯେଉଁମାନେ ରହିବେ ପଶ୍ଚାତ୍ତେ କରିବେ ଭାବନା । ସୁଜନେ । ଡେରି ହୁଁ ଥିବେ ସକଳ । ବେଢ଼ ଭୂଜକୁ ଡଷ ଡଳେ ଦେଇଣ ମନେ ଦେଉଥିବେ ଡକାଳ । ୧୩ । ଡାକୁଥିବେ ଭକ୍ତ ଆଳଟ ଭ୍ରମର ବାଜୁଥିବ ଗୀର କାହାଳ । ଅଷ୍ଟବୃନ୍ଦ ନାଗ ମଙ୍ଗଳ ହୁଳୁସ ପ୍ରଭୁ ଶବଦେ ହୁଳହୁଳ । ସୁଜନେ । ପୁଷ୍ପବୃଷ୍ଟି ହେବ ସ୍ୱର୍ଗରୁ । ଚନ୍ଦନ କର୍ପୂର ରସ ଶେଷ ଗୋଳା ରଖିଛନ୍ତି ହୁରିଯୁଗରୁ ॥ ଆନନ୍ଦ ହେଉଛି ନବଖଣ୍ଡ ମଣ୍ଡ ଅଣାକାର ସ୍ତୁତି ଦର୍ଶନେ । ଅନାଇ ଦେଲେ ଶ୍ରୀନଳିନ ନୟନେ ମଳୟ ବହଇ ଗଗନେ । ସୁଜନେ । ଆଲୁଅ ହୋଇବ ସଂସାର । ଅରକ୍ତ ନାଶିବେ ଆରତ ଭଞ୍ଜନ ଜୀବନେ ନ-ଯିବ ପାଶୋରି । ତ୍ରିପୁର ଜଗତେ ଅଧିକାଶ ସେଣ୍ଡ ସପତ ବ୍ରହ୍ମାଣ୍ଡେ ଶବତ । ଚଉଦ ବ୍ରହ୍ମାଣ୍ଡେ ଚଉବର୍ଗ ଦାତା ଅଶେଷ ବ୍ରହ୍ମାଣ୍ଡ କରତା ସୁଜନେ । ଚିହ୍ନ ଥିଲେ କର ଭକତି । ତ୍ରୈଲୋକ୍ୟ ନାଥଙ୍କୁ ଚିହ୍ନ କରିଥିଲେ ଫେଡ଼ିବେ ଅଶେଷ ଦୁର୍ଗତି ॥ ଥାଳ ଲଜ ନାହିଁ ଭିକ୍ଷା ମାଗୁଛନ୍ତି ହାଣ୍ଡି ନାହିଁ ଅନ୍ନ ରନ୍ଧନ । ବୁଲୁଛନ୍ତି ପଥ ନୁହନ୍ତି ନଗତ ନାହିଁ ତାଙ୍କ କରଚରଣ, ସୁଜନେ । ଅସ୍ତୁ ସୁଧାସାର ବଚନ । ବଚନ ଭିତରେ କଞ୍ଚନ ଲୁଚିଛି ସଦଗୁରୁଙ୍କୁ ସେବ ଚିହ୍ନ ॥ ବସ୍ତୁ ମହୁଁ ଅଣାକାର ଅନ୍ତ-

Digitized by srujanika@gmail.com

ସ୍ୱାମୀ ଶାରବାନା ଟେକ ଦେଲେଣି । ଦେଉଳ ଭିତରୁ ଆଣି ଚନ୍ଦନଦାରୁ ବଡ଼ଦାଣ୍ଡେ ଥୋଇ ଦେଲେଣି । ସୁଜନେ । ମାଗୁଛନ୍ତି ଥୋକେ ପଶ୍ଚାତ, ପ୍ରଭୁ ନୃପ୍ରଫଣୀ କ ଦେବେ କରଣି ଏବେ କ ପ୍ରତ୍ୟକ୍ଷେ ନ ଦେଖ ॥ ଧରନେଇ ଧର୍ମ ଧ୍ୱଜ ବନ୍ଧକରେ ହୋଇଲା ଯେତେ ଯେତେ ଶାସ୍ତି ॥ ମୁଦ୍ରିତ ଅଞ୍ଚଳା ହୋଇ ଅନର୍ଗଳା ଚନ୍ଦନେ ନ ପାରିଲେ ନେତି ॥ ସୁଜନେ । ନୀଳରୁ ନେତ ଟଳି ଗ୍ରୁଡ଼ । ଧବଳ ପୂରୁପ ଧ୍ୱଜ ନାଶିବାରୁ ବାଲ୍ୟଧିଆସୁଥିଲା ମାଡ଼ ॥ ନାବ ଖଣ୍ଟାଇଛନ୍ତି ଶୂନ୍ୟ କରତା ଅଗାଧସିନ୍ଧୁ ସାଗରକୁ । ଜସ୍ଥାନରେ ଲୀଳା ନର୍ଗୁଣ ମହାତ୍ମା ସ୍ଥାପି ଦେଇଛନ୍ତି ପୃଥ୍ୱୀକୁ ସୁଜନେ । ନିନ୍ଦାସ୍ତୁତି କଲେ କ ହେବ । ସାକ୍ଷଲକ୍ଷ୍ୟ ପ୍ରତ୍ୟକ୍ଷରେ ଦେଖୁଥିଜ ଲଗିବ ଯେଉଁ ଯେଉଁ ଭାବ । ପଥର ଖଣ୍ଡିଏ ଖସିପଡ଼ିଲାଣି ଏଥର ସମ୍ମୁଖରେ ଭାଇ । ପରତେ ସମ୍ପ୍ରତେ ନ ଯିବାରୁ କେହି ପରମେଶ୍ୱର ଦେଲ ଥୋଇ । ସୁଜନେ । ଅପ୍ରତେ ନକର ମନରେ ପରମ ପୁରୁଷ ଯାହାକୁ ବୋଲନ୍ତି ଖୋଜ ଢେଙ୍କାନାଳ ରାଜ୍ୟରେ ॥ ଫେଡ଼ ଦେଲାବେଳେ କ୍ଷଣ ଉଙ୍କୁଣିକ ପିଟିବ ସକଳ ଫଣସ୍ୟ । ଫଣ୍ଟା ନାକ ଖଣ୍ଡି ଫାଟି ଗଲାବେଳେ କାହାକୁ କରିବ ଅଶ୍ରୟ । ସୁଜନେ । ଫେଡ଼ିବେ ଅକଣ୍ଟ ଦୁର୍ଗତି । ବୁଦ୍ଧି ରତନରେ ମୁକତ ପସରା ଫାଙ୍କାର ବେଶ ଧରିଛନ୍ତି । ବୃଦ୍ଧ ବୟସରେ ବୁଲନ୍ତି ଫସାରେ ଏମନ୍ତ ପୁରୁଷ ଶ୍ରୀହରି । ବସ୍ତୁପ ଅଳପ ସୁତ ନବ ଟଲୁ ଶଢ଼େ ଶୂନ୍ୟ ବ୍ରହ୍ମ ବ୍ରହ୍ମଚାରୀ । ସୁଜନେ । ବୃନ୍ଦାବନେ ଝାଡ଼ ଆଲକ୍ଷ । ବୁଡ଼ାଇ ଘୃତକୁ ଭୁଜାରେ ଅନଳ ଝାଡ଼ାରେ ଜଳାଇବେ ବକ୍ଷ ॥ ଭକ୍ତଙ୍କ ନିମନ୍ତେ ଭେଳା ବାନ୍ଧିଛନ୍ତି ଭାବଗ୍ରାହୀ ଭୟ ନାଶନ । ଭାବେ ଦେଲେ ଠାବ ନଥିବ ହେଲା ଜାଣି ଭଣେ ଧ୍ୟାନଜନ ନାରଣ । ସୁଜନେ । ଭ୍ରାନ୍ତି ଗ୍ରୁଡ଼ିଲା ଦେବଙ୍କର ॥ ମହିମା ଉଠିଲ ଭରସା ବୁଡ଼ିଲା ଭାଙ୍ଗିଲା ରତ୍ନମଣ୍ଡପୁର । ୨୦ ।

(ମ) ମାନବ ବପୁରେ ମର୍ଯ୍ୟାଦା ନକର ସ୍ୱୟଂ ପର ବ୍ରହ୍ମ ମୂରତି । ମର୍ତ୍ତ୍ୟ ଖେତ୍ତପତି ପରେ ଉଚ୍ଚପତି ମାନବ ରୂପେ ବିଶ୍ୱପତି ।

Digitized by srujanika@gmail.com

ସୁଜନେ । ମନରେ ନକର କଳ୍ପନା । ମାଣିକ୍ୟ ହୀରାକୁ ବୋଲୁଛ
ପଥର ପରୀକ୍ଷା ହେବ ପଛେ ପଣା ॥ ଜାଳ ଦେଲବେଳେ ବ୍ରହ୍ମ ଅନଳକୁ
ଜୀବନ ରଖିବ କି ପିଣ୍ଡେ । ଜନ୍ମାପରାଧ ଚଢ଼ିବ ଚାନ୍ଦ ଜାଣି ନ
ପାରିବେ ପାଷାଣ୍ଡେ । ସୁଜନେ । ଯାଗିଥାଅ ବୃକ୍ଷ ମୂଳକୁ । ଜାଣି
ପିବ ବୋଲି ଫଳ ନ ଭୁଞ୍ଜିଲ ଶ୍ରେଷ୍ଠ୍ୟ ହେବ ... କୁଳକୁ । ୨୭ ।
ରୁହାଇଲେ କଥା ବ୍ରହ୍ମାଣ୍ଡ କରତା ବହାମ ମଣ୍ଡନ ରଞ୍ଜନ । ରାଜାଙ୍କ
ଜନମା ଅର୍ଘ୍ୟସ୍ଥାଳୀ ଘେନ କରିବେ ପ୍ରଭୁ ବନ୍ଦାପନା । ସୁଜନେ ।
ଜାଳି କନକ ଧୂପାବଳୀ । ମଙ୍ଗଳ ଶବ୍ଦେ ପ୍ରଭୁଙ୍କୁ ବନ୍ଦିବେ ଆନନ୍ଦେ
ଦେଇ ହୁଳହୁଳି । ନବ ନୂଆଗୁଡ଼ ବାସନାକୁ ଯେଝେ ଲମ୍ବିଥାନ୍ତି
ଜଦା ପିମ୍ପୁଡ଼ି । ଲକ୍ଷଯୋଜନାରୁ ଲକ୍ଷ୍ୟ ଭଙ୍ଗ ଗୁଡ଼ ସ୍ୱାମୀ ଦର୍ଶନେ
ଧାଇଁ ଧାଉଁ । ସୁଜନେ । ସପ୍ତମୃତେ ଧୋଇ ଚରଣ । ଲକ୍ଷ ଲକ୍ଷ
ଲମ୍ବେ ଲମ୍ବେ ପଡ଼ିଥିବେ ଅଲେଖ ସ୍ୱାମୀଙ୍କୁ ଶରଣ । ୨୮ । ବୈକୁଣ୍ଠ
ପୁରରୁ ଆସି ବେଦ ବ୍ରହ୍ମା ନାରଦେ ବଜାଇବେ ବୀଣା । ଅନୁକୂଳ
ଘେନ ଅପସର ବେନ କରି ପ୍ରଭୁଙ୍କୁ ଅର୍ଚ୍ଚନା । ସୁଜନେ । ମୁଖେ
ମଙ୍ଗଳ ନାମ ଧ୍ୱନି । ବାଳୁତ କୁମରମାନେ ନାଚୁଥିବେ ବଜାଇଣ ଗିନି
ଖଞ୍ଜଣି । ୨୯ । ଶ୍ରୀବତ୍ସ ଲାଞ୍ଛନ ହୃଦସ୍ଥ ଯାହାର ସେ ଚରଣେ ପଶି
ଶରଣ । ସକଳ ଶାସ୍ତ୍ରକୁ ଅଗୋଚର ଅନନ୍ତ ଅଭେଦ୍ୟଚସ୍ଥ ବ୍ରହ୍ମଜ୍ଞାନ ।
ସୁଜନେ । ଆଶ୍ରେ କର ଶୂନ୍ୟପୁରୁଷ । ଅବଶ୍ୟ ନାଶିବେ ଆରତ
ଭଜନ ବଢ଼ିବା ବେଳେ ଅଣାକ୍ଷର । ସତ୍ୟସୁଧାସାର ବ୍ରହ୍ମାଣ୍ଡ ଠାକୁର
ଶରଣ ପଞ୍ଜର ଶ୍ରୀଗୁରୁ । ବ୍ରହ୍ମାଣ୍ଡ ଉଦ୍ଧାର କରିବେ ଏଥର ବଚନ
କରିଛନ୍ତି ଶୂନ୍ୟରୁ । ସୁଜନେ । ଘୋର କଳିକାଳ ନାଶିବେ । ସନ୍ଥାଳିଣ
ଅଙ୍କଠାରେ ସର୍ବସିଦ୍ଧି ସୃଷ୍ଟି ସାଧି କରି ବସିବେ ॥ ସନ ଚେରଣଙ୍କୁ
ନାଶ କରି ତାଙ୍କୁ ସ୍ୱୟଂ ପରଂବ୍ରହ୍ମ ମୂରତି । ସୁଜନେ ସୁନାକୁ ବୋଲୁଛ
ତ୍ରି ଛଳ । ଅଗ୍ନିଠାରୁ ବଳି ଶକ୍ତି ପୁଣ ତେଜ କଳିଯୁଗେ ସନ୍ନ୍ୟାସୀ ଛଳ ॥

Digitized by srujanika@gmail.com

ହେଳା କରନାହିଁ ହିତକାଷ୍ଠ ସେହି ହୃଦ ପଦ୍ମେ କର ଭାବନା ।
ଦୁରନ୍ତ ସର୍ବପାପ ଗୁରୁ ବୋଲନ୍ତେ ସର୍ବସିଦ୍ଧି ନୂଆ ରଚନା । ସୁଜନେ
ହୃଦେ କର ଗୁରୁ ଭାବନା । ହଜ ଯାଇଥିବ ପୂର୍ବର ବାସନା ଉଦେ
କରାଉଛନ୍ତି ପିନା ॥ କ୍ଷିତିରେ ଅକ୍ଷତ ଯେତେ ଦଣ୍ଡ ଛନ ଏ ସର୍ବକାଠ
ହୋଇଲଣି । କ୍ଷମାନନ୍ଦ ଖେଳ ଖ୍ୟାତ ହେବ ବୋଲି ଆସିଛୁ ତରସ
ଆତ୍ରେଣୀ । ସୁଜନେ । କ୍ଷମେ ଭଣେ ସ୍ଥାନ ନାରଣ । ଶ୍ରୀହସ୍ତରେ ଯାକୁ
ଛନ୍ଦ ଟେକ ଦେବେ ସେହି ଜମ୍ବୁ ଦ୍ୱୀପେ ସଜନ । ୩୪ ।

—○—

( ୫୭ )

(କ) କଳିଯୁଗ ଶେଷ କଲ୍ମଷ ବିନାଶ କରତା ବିଜୟେ ଆସି ।
କାରଣ କରତା ଗତିମୁକ୍ତି ଦାତା ଅଭେଦ ଦେଲେ ପ୍ରକାଶି ଯେ ।
ଶୂନ୍ୟ ମନ୍ଦରେ ବେହାର । ସୁଧାନିଧି ନାମ ବ୍ରହ୍ମସାର ଯେ । ୧ ।
ଖଗପତି ନାଥ ହରିସିଦ୍ଧି ବାସୀ କ୍ଷମାନନ୍ଦ ଦୟାକର । ଖେଳା କରି-
ବାକୁ ଭକତଙ୍କ ସଙ୍ଗେ କ୍ଷିତି ମଧ୍ୟେ ଅବତରି ଯେ । ଖେଳ କରୁଛନ୍ତି
ଆସି । ନରରୂପେ ନାରାୟଣ ଋଷି ଯେ ॥ ଗୁପତ ବିହାସ ହେଲେଣି ।
ପ୍ରକାଶ ଗୁପ୍ତ ବୃନ୍ଦାବନ ପରି । ଗହନ ଗୁପତ ବଡ଼ ଆଚମ୍ବିତ ସ୍ଥିର
ଧର୍ମନୁହେଁ ସଞ୍ଚ ଯେ । ଗୁରୁ ଜ୍ଞାନର ଶକତା । ଗତି ମୁକ୍ତି ଚତୁ
ର୍ବର୍ଗ ଦାତା ଯେ ।୩। ଘଟଣା ପୁରୁଷ ଘନେ ବିଦ୍ୟୁହାସ ଘୋଟି ଭନଦୂର
ଯାକ । ଘନଶ୍ୟାମ ମୂର୍ତ୍ତି ନ ପାରୁଛ ଚେତି ନବଘନ ରୂପ ଦେଖ
ଯେ, ଘର ବାହାରେ ଅଲେଖ । ତିନଭୁବନେ ମହିମା ଡାକ ଯେ ॥
ଅନନ୍ତ ମୁରତି ଆନ ସେ ନୁହନ୍ତି ଅକଳଣା ବାରିନିଧି । ଆରତ
ଭଞ୍ଜନ ଅନାଦ୍ୟ ପୁରୁଷ ନବକଳ୍ପ ସିଦ୍ଧି ସାଧି ଯେ । ଯାର ଅଶେଷ
ମହିମା । ଅନ୍ତ ନ ପାଇଲେ ବେଦବ୍ରହ୍ମା ଯେ । ୫ । ଚଉଶ ଗୁରୁଙ୍କ
ଉପରେ ଏ ଗୁରୁ ଚଉଦ ବ୍ରହ୍ମାଣ୍ଡେ ସାର । ଚତୁର୍ବର୍ଗ ଦାତା
ଚତୁର କରତା ଚେତା ଦ୍ୱାରେ ହେଉ କର ଯେ । ଜୟ ଶରଣ

Digitized by srujanika@gmail.com

ପଞ୍ଜର । ସ୍ୱର୍ଣ୍ଣ ଦେଖିଲେ ଚେତା ଚିନ୍ତାପୁର ସେ । ୬ । ଛତ୍ର ଦେଖାଉ ସେ ବାହାର ହୋଇଣ ଶୂନ୍ୟ ମନ୍ଦିରକୁ ନେହାର । ଛପ୍ପନ କୋଟି ଜୀବ ପଣ୍ଡ ଦାତା ସ୍ୱାମୀ ଶରଣ ତଳଦମ୍ବର ସେ । ଛଇ ଛଟକ ମୂରତ । ଗୁପ୍ତ ମନରୁ ସଂଶୟ ଛାଡ଼ି ସେ ।୭। ଜାତ ହୋଇଲଣି ଜମ୍ବୋଦ୍ୱୀପ ମଧ୍ୟ ଜାଣି ଜାଗି ନ ପାରୁଛ । ଜ୍ୟୋତିର୍ମୟ ବ୍ରହ୍ମ ଜଗତ ଠାକୁର ଜାଣୁ ଜାଣୁ ନ ଚିହ୍ନୁଛ ସେ । ଜାଳି ବେଢ଼ିଛି ନପୁଂସ । ଯେହ୍ନେ ପାସଛଡ଼ା ଦରପଣ ସେ । ୮ । ଝାଡ଼ ବୃନ୍ଦାବନେ ରହସ କରିବେ ଝଳକ ଚନ୍ଦ୍ର ବଦନ । ଝଁ ଝଁ ଝିଁ ବସନେ ମଣ୍ଡନ ସଙ୍ଗେ ଅଷ୍ଟବୃନ୍ଦ ଗଣ ସେ । ସ୍ୱାମୀ ନାମ କୀର୍ତ୍ତନ । ଝଡ଼ପଡ଼ିବ ପାତକ ମାନ ସେ । ୯ । ନକଟ ହେଲଣି ଲୀଳା କରିବାକୁ ନିତିଅଛୁ ଚିନ୍ତ ଘଡ଼ି । ନକତ ପକାଇ ଧର୍ମ ବୁଡ଼ୁଛନ୍ତି ନିସତେ ନ ଦେବେ ଗୁଡ଼ ସେ ଫିଟାଇବେ ଜ୍ଞାନ ମେଡ଼ । ଲୀଳା ଅଛି ଆଉ ପାଞ୍ଚ ଘଡ଼ି ସେ । ୧୦ । ଟଳୁଛି ବ୍ରହ୍ମାଣ୍ଡ ପୃଥ୍ୱୀ ନବଖଣ୍ଡ ଟିକଏ ସମ୍ଭାଳି ଥାଅ । ଟେଳା ବଣେ ମହି ଦେବ ଘୋଷଡ଼ାଇ ଅଲେଖ ପୁରୁଷ କହୁ ସେ । ଟାଣ କହୁଛନ୍ତି ସେତେ । ଟୋପ ଗୋଟିଏ ପଡ଼ିବେ ସମୟେ ସେ । ୧୧ । ଠାକୁର ଏବେ ସେ ଠୂଳ ଶୂନ୍ୟବାସୀ ଠିକେ ନ ପାରୁଛ ଚିହ୍ନି । ଠୂଳଶୂନ୍ୟ ନିର୍ଦ୍ଧାକାର ନିରମୟ ଶିରେ ଶୋଭେ ସପ୍ତଫଣୀ ସେ । ଠାରି କହୁଅଛୁ ସତ । ଠିକେ ଭଣେ ଦାରଣ ଅଙ୍କିତ ସେ । ୧୨ ।

(ଡ) ଡର ମରୁଛୁ କିମ୍ପାଇ । ଡାକ ଉଠେ ଭବଗ୍ରାମ୍ପ । ଡଙ୍ଗର ଗଞ୍ଜିବା ପାଇଁସେପାଇଁ ଶୂନ୍ୟ ମାଧୋଇ ସେ ॥ ଡାକୁଣୀ ପିଟିବ ଥରେ ଢେଙ୍କାନାଳ ଯୋରନ୍ଦାରେ । ଢୁଳାଇ ପଡ଼ିବେ ନରେ ସେ ଜନରେ ଢମ ପଣରେ ସେ ॥ ଅଣାକାର ଶୂନ୍ୟବାସୀ । ଅନ୍ତର୍ଯ୍ୟାମୀ ବ୍ରହ୍ମଋଷି । କରିବେ ଏମନ୍ତ ଲୀଳା ସେ ଲୀଳା ଆନନ୍ଦେ ଖେଳା ସେ ॥ ତରତର ତୁର୍ଯ୍ୟ ଜେଜିବ । ନିନ୍ଦନ ଥାଅ ରହିବ । ଯିବା ପ୍ରଭୁଙ୍କ ଗହଣେ ଗହନେ ମଙ୍ଗଳ ଗାଇ ସେ ॥ ସ୍ଥିତ ବସ୍ତୁରେ ନଥିଲା । ଏ ଧର୍ମ ଉଦୟେ ହେଲା

Digitized by srujanika@gmail.com

ଥବିକ ଦେଖିଲେ ଦେହ ସେ ଦେହ ଏମନ୍ତ ଲୀଳା ଯେ ॥ ଦଇତ୍ୟ ଭଞ୍ଜନ ହରି । ଦୀନବନ୍ଧୁ ଦଇତାରି । ଦବାନଳି ନାହିଁ ଯାର ଶୂନ୍ୟେ ବେହାର ଯେ । ୧୮ । ଧର୍ମ ସ୍ଥାପି ଦେଲେ ଆଣି । ଉଶ୍ୱାସ ହେଲ ଧରଣୀ । ସ୍ୱାମୀ ମହିମା ଶବଦେ ଶବଦେ କମ୍ପେ ମେଦିନୀ ଯେ ॥ ଲୀଳା କଳି ଅବସରେ । ଲଗିବ ଜମ୍ବୋ ଦୀପରେ । ଏମନ୍ତ ଲୀଳା ନ ଥିବ ନ ଥିବ ଆର ଯୁଗରେ ଯେ ।୨। ପଦୁପାଦ ରେଣୁ ପଡ଼ି ପାତାଳ ପଡ଼ିବ ଝଡ଼ି । ପଞ୍ଚାଶ ଯୂଥ ଭକତ ଭକତ ପ୍ରଭୁଙ୍କୁ ବେଢ଼ି ଯେ ॥ ଫୁଲମାଳ କରେ ଧରି । ସ୍ୱର୍ଗୁ ଆସେ ଅପସରି । ଫଙ୍କାର ବେଶକୁ ସ୍ୱର୍ଣ୍ଣି ସେ ସ୍ୱହିଁ ଦୁନ୍ଦୁଭି ବାଇ ଯେ । ୨। ବାରନ୍ଧି ସାରବର । ଦାନା ଉଡ଼େ ଜିନପୁର । ବାଞ୍ଛ୍ୟ ଶକ୍ତର ନ କର ନ କର ଏ ଧର୍ମ ସାର ଯେ । ୨୩ । ଭସ୍ମ ଗୁଡ଼ ଭକ୍ତି କର । ସ୍ୱବଗ୍ରାସ୍ତ ଯୋଗେଶ୍ୱର । ଭଣେ ନାରଣ ପାମର ପାମର ଅଧମ ଗୁରୁ ଯେ । ୨୪ ।

(ମ) ମାଣିକ୍ୟ ମୁକୁତାକୁ ଧୋତ ବସ୍ତ୍ରରେ । ବାନ୍ଧିଲେ ମୂଲ୍ୟ କେବେ କ୍ଷୁଣ୍ଣାଇ ତାରେ ଯେ । ମରମ ଗଣି । ଫେଡ଼ି ଦେଖିଲେ ମୁକୁତା ଗୋଟି ଯେ । ୨୫ । ଜଗତ ଯାକ ଦେଖ ଧୋତ ବସନ । ଜାଗ୍ରତେ ବୁଲୁଛନ୍ତି ଗୁରୁ ସଜନ ଯେ । ଯାହା ସେ କଲେ । ପାଶୋରି ଯିବନାହିଁ ଏ ଜୀବ ଥିଲେ ଯେ ॥ ବେଳା ଉଠୁଛି ନେତ୍ରୁ ନଦେଖି କହୁଛି । ରାଶି ନ ପାଦୁ ରକ୍ତ ଉଦେ ହୋଇଛି ଯେ । ରଙ୍ଗଣି ଉଠା । ରାସ ମଣ୍ଡଳାକାର ଚୌକନ କୋଠା ଯେ । ୬ । ଲକ୍ଷ୍ମୀବିଳାସ ଯାର ପାଦେ ଶରଣ । ଲୋଡ଼ିଲେ ନ ମିଳଇ ଏମନ୍ତ ବ୍ରହ୍ମ ଯେ । ଲକ୍ଷ ଦେବାଙ୍କୁ । ହିସ୍ତରେ ସମ ନାହିଁ ତାଙ୍କ ତେଜକୁ ଯେ । ୨୭ । ବୃକ୍ଷ ବକଳ ଦେଶ୍ୟାପନ ସାର । ଅବତାର ଦେଲେ ଦାନା ଚଉଦ ପୁର ଯେ । ବୈଷ୍ଣବ ରୂପ । ଦର୍ଶନେ କୋଟିଜନ୍ମ ପାତକ ମୋକ୍ଷ ଯେ ॥ ଶ୍ରୀ ସ୍ୱାମୀ ଶ୍ରୀ ମହିମା ପାଦେ ଶରଣ । ଅଖଣ୍ଡ ମଣ୍ଡଳାରେ ଶ୍ରୀବସ୍ତ୍ର ଛନ୍ତି ଯେ । ଶ୍ରୀନନ୍ତ ଦର । ଶ୍ରୀଗୁରୁ ପଞ୍ଚ ପଞ୍ଚ ଧାଇଁଛି ଶିଷ୍ୟ

Digitized by srujanika@gmail.com

ଯେ ।୩୫। ସ୍ୱାମୀ ମହିମା ଶୂନ୍ୟ ଅବନା ଖଣ୍ଡ । ସାକ୍ଷୀ ରୂପେ ଅଛନ୍ତି ସପ୍ତ ବ୍ରହ୍ମାଣ୍ଡ ଯେ । ଶରଣ ପଶ । ଶୂନ୍ୟ ପୁରୁଷ କ୍ଷମା କରିବେ ଦୋଷ ଯେ ॥ ଶରଣ ପଶ ଶେଷ ହେଲାଣି କାଳ । ଦନ ରହିଛି ଯୁଗ ଯାଉଛି ବଳ ଯେ । ସାଧୁ ସୁନ୍ଦର । ସତ୍ୟ ଚକାଣି ହେଲେ ଚଉଦ ପୁର । ଯେ ।୩୬। ହାଟ ବସିଛି ସ୍ୱାମୀ ନାମ କ୍ଷୀଣରେ ହେଲା ନକର କର ଗୁରୁ ଦର୍ଶନ ଯେ । ଦରସ ଶବ୍ଦେ । ନରନ୍ତେ ଥାଅ ସ୍ୱାମୀ ନାମ ଆଶ୍ରିତେ ଯେ ।୩୭। କ୍ଷୟ ନୁହନ୍ତି କ୍ଷୀର ସାଗର ବାସୀ । ଅଭୟ ପୁରେ ନାହିଁ ଦିବସ ନିଶି ଯେ । କ୍ଷମା ସାଗର, କ୍ଷମେ ଭିଣେ ନାରଣ ପାପୀ ପାମର ଯେ । ୩୮ ।



( ୪୭ )

(କ) କରଯୋଡ଼ ଭକତଙ୍କୁ । ବନ୍ଧୁଛି ନ ଛାଡ଼ ସତ୍ୟ ଧର୍ମକୁ । ସୁଜନେ ହେ । ଥାଅ କଳଙ୍କି ବେଳକୁ । ୧ । କ୍ଷିତିନାଥ ଦଇତାରି । ପ୍ରାଚୀ ତଟରେ ହେବେ ଅଧିକାରୀ । ସୁଜନେ ହେ । ଅଛି ଶତେକ ଶବାରି ।୨। ଗୁରୁ ଆଜ୍ଞା ଥାଅ ପାଳ । ଗଣ୍ଡିଧନ ପ୍ରାପ୍ୟ ଥାଅ ସମ୍ଭାଳ ସୁଜନେ ହେ । ଶେଷ ହୋଇଲାଣି କାଳ ।୩। ଘୁମା ବେଗ ଘରେ ଘରେ । ଘଟୁନା ଲଗିବ ଅମର ପୁରେ । ସୁଜନେ ହେ । ଭେଦ ନାହିଁ କାହାଠାରେ । ୪ । ଅନନ୍ତ ଶୂନ୍ୟ ପୁରୁଷ । ଅମ୍ରାବତୀ ପୁରେ ହେବେ ପ୍ରବେଶ । ସୁଜନେ ହେ । ଜଣା ନଥିବ ସନ୍ଦେଶ । ୫ । ଚନ୍ଦ୍ରି ଗଡ଼ରେ ଯୁଧିଷ୍ଠି । ସହଦେବ ଥିବେ ଗ୍ରାମୂରେ ଖଟି । ସୁଜନେ ହେ । ପଞ୍ଚଭ୍ରାତା ଭୁଲେ ପୋଥି ।୬। ଗ୍ରାଏଣି ଯୋରନ୍ଦା ଧାମ । ସେହି ମହା ପ୍ରଭୁଙ୍କର ଆସ୍ଥାନ । ସୁଜନେ ହେ । ଜ୍ୟୋତି ଜ୍ୱଳା ଉର୍ମ ଧୂମ ॥ ଯୋଗମାୟାକୁ ଶ୍ରୀଧର । ଆଜ୍ଞା ଦେବେ ଯାଅ ଜଗତେ ଫେର । ସୁଜନେ ହେ । ବସୁତା ରୂପକୁ ଧର ।୮। ଝୁଂବନ୍ତା ଦେଖି ସଂସାର । ଅପରାଧ

Digitized by srujanika@gmail.com

ଦେଖି କର ଆହାର । ସୁଜନେ ହେ । ବାଛି ବାଛି ରଖ ସାର । ୯ ।
ନିଗମ ବଚନ ସତ୍ୟ । ନେଉଛି ଯୁଗ କରିବେ ଅନନ୍ତ । ସୁଜନେ
ହେ । ନଷ୍ଟେ ହେବ ସାରସ୍ୱତ । ୧ । ହିମକ ବାଜୁଛି ଏବେ । ହାଣ
ଲୋକମାନେ ସବୁ ହଜିବେ । ସୁଜନେ ହେ । ଚିହ୍ନ ଛେଉଣ୍ଡି ଆ
ଥିବେ । ୧୧ । ଠିକ ହେଲାଣି ସମ୍ପୂର୍ଣ୍ଣ । ଠୁଳ ହେବେ ସବୁ ଭକତଗଣ
ସୁଜନେ ହେ । ଠାରୁ କହଇ ନାରଣ ॥

(ଡ) ଡରୁଥିବେ ଲୋକେ ଶୁଣି । ଡାକପଣେ ଲୁଚି ଥିବେ
ଡାଏଣୀ । ସୁଜନେ ହେ । ଡାକ ଦେବେ ହେଲା ଜାଣି । ୧୩ । ଢମ
ନଗର ଢାକୁଣୀ । ପିଟାଇବେ ସ୍ୱାମୀ ସମ୍ପୂ ଜାଣି । ସୁଜନେ ହେ
ଶେଷ ହେବ ମୀନ ଶନି ॥ ଅନ୍ଧ ଧୃତରାଷ୍ଟ୍ର ଏଣେ । ଜନମ ହୋଇଛି
ଐଶାନ୍ୟ କୋଣେ । ସୁଜନେ ହେ । ସେ ଥିବ ଦମନ ରଣେ ।୧୫।
ତରସ୍ତ ହୋଇବ ଜନ । ଉତ୍ତର ଦିଗରୁ ସାଜିବେ ସୈନ୍ୟ । ସୁଜନେ
ହେ । ହେବ ମହା ଘୋରରଣ ॥ ଥପ୍ପ ନୋହିବ ବ୍ରହ୍ମାଣ୍ଡ । କମ୍ପୁଥିବ
ମହୀ ସପତ ଖଣ୍ଡ । ସୁଜନେ ହେ । କମ୍ପୁଥିବ ବ୍ରହ୍ମାଣ୍ଡ । ୧୭ । ଦାଉଁ
ଦାଉଁ ହେବ ଗ୍ରାମ । ଧନେ ଭକ୍ତ ମେଳେ ହୋଇବେ କ୍ଷେମ । ସୁଜନେ
ହେ । ଅସ୍ତ୍ର ଶସ୍ତ୍ର କରିବେ ଶ୍ରମ । ୮। ଧର୍ମ ଉଦୟ ହେବ ସିନା । ଧ୍ୱଜା
ଉଡୁଥିବ ନୂଆ ରଚନା । ସୁଜନେ ହେ । ଧୃତି କ୍ଷିତି ଧୈର୍ଯ୍ୟ ବାନା
ନରଲୋକ ଜଣେ ଜଣେ । ବୋଲୁଥିବେ ପ୍ରଭୁ ଆମ୍ଭେ ଆପଣେ ।
ସୁଜନେ ହେ । ଅଖିଳ ନସ୍ତାର ଜଣେ । ୨୦ । ପାହିଗଲା କଳିଯୁଗ ।
ପନ୍ଦର ଶତ ପଚସ୍ତରି ଭୋଗ । ସୁଜନେ ହେ । ଠିକ୍ ହେଲାଣି
ନିଯୋଗ ॥ ଫଳା ବୃକ୍ଷ ଯିବ ନାଶ । ଫାଟକ ଧାରିଣୀ ଦେଶ ।
ସୁଜନେ ହେ । ହବ ଗିରି କଇଲାସ । ୨୨ । ବେଦ ବିଦ୍ୟା ବିକା
କଣା । ବାଜିବ ହିମକ ନିତି ବାଜଣା ସୁଜନେ ହେ । ସବୁ ହେବେ
ଭେଦ ମାର୍ଗ ବଣା ॥ ଭସ୍ମେ ନୁହ ଛନ୍ନ ଛନ୍ନ । ଭବିଷାନ୍ତ ବାଣୀ
ଶୁଣ ଶ୍ରବଣ । ସୁଜନେ ହେ ଭବ କହଇ ନାରଣ । ୨୪ ।

Digitized by srujanika@gmail.com

(ମ) ମହୀରେ ମହିମା ନାମ । ଚରଣ ଅଙ୍କରେ ଉଠିବ ଧାମ । ସୁଜନେ ହେ । ନଷ୍ଟ ହେବ ବଡ଼ ଗ୍ରାମ ॥ ଜୁଆର ଉଠିବ ଜଳ । ଉତ୍ତର ଦିଗରୁ ଆସିବେ ବଳ । ସୁଜନେ ହେ । ହେବ ମହା ଖଳ-ବଳ । ୨୬ । ରଜା କୁଳ ନୃପବନ୍ଧି । ବାହୁତ କୁମର ରଖିବେ ଗଡ ସୁଜନେ ହେ । ଦିବ୍ୟସିଂହ ଥିବେ ବନ୍ଦୀ । ୨୭ । ଲଏ ଲହଙ୍ଗା ପାଟଣା । ସେହିଠାରେ ହେବେ ବକ୍ଷରେ ହଣା । ସୁଜନେ ହେ । ନ ଚିହ୍ନି ପର ଆପଣା ॥ ବାହୁତ ରଜା ହୋଇବେ । ବାବୁ ରଜା ଖଣ୍ଡଗିରିରେ ଥିବେ । ସୁଜନେ ହେ । ବେଲ୍ଲାଳ ସେନ ସେ ପୂର୍ବେ ଶ୍ରୀରାମ ଚନ୍ଦ୍ରଙ୍କ ଘରେ । ଜନମ ହୋଇବେ କଙ୍କଟ ନଗ୍ରେ । ସୁଜନେ ହେ । ଅନନ୍ତ ସିନ୍ଧୁ ଠାକୁରେ । ୩୦ । ସ୍ୱୟଂ ପରଂବ୍ରହ୍ମ ହରି । ମୁକ୍ତି ପଦବିକୁ ଗୁପତ କରି । ସୁଜନେ ହେ । ଫେରିବ ଯମ କଚୁରି ।୩୧। ଶୁଣ ଜନେ ସାରସ୍ୱତ । ବାର ରଣି ଗୁରୁ ପୁଷ୍ୟା ନକ୍ଷତ୍ର । ସୁଜନେ ହେ । ସେହିଦିନ ହେବ ସତ୍ୟ ।୩୨। ହରିନାମ ଆଶ୍ରେ କର । ଭକ୍ତ-ସିନ୍ଧୁ ଯେବେ ହେବ ଉଦ୍ଧାର । ସୁଜନେ ହେ । ଶ୍ରୀଗୁରୁ କରିବେ ପାର ॥ କ୍ଷମାନନ୍ଦ ଶ୍ରୀଚରଣେ । ଉତ୍ତରିବାଣୀ ବାଣୀ ନାରଣ ଭଣେ । ସୁଜନେ ହେ । ଶ୍ରୀଗୁରୁ ଅନୁସରଣେ । ୩୪ ।

—୦—

( ୪୮ )

(କ) କର୍ମକାଣ୍ଡ ବାଣୀ କର୍ଣ୍ଣେ ଥାଅ ଶୁଣି କଳଙ୍କି ହୋଇବେ ପ୍ରଭୁ । କଳନା ଅନ୍ତେ ଉଠିବେ ସାକ୍ଷାତେ ମହିମା ଦେଖିବେ ସବୁ ଯେ । କାନ୍ତି ତେଜ ଝଟ ଝଟ । ଆକାଶକୁ ଲଗିବ ମୁକୁଟ ଯେ ॥ ଖଣ୍ଡିବେ ଦୁର୍ଦ୍ଦାନ୍ତ ଦଣ୍ଡାଇତ ପଣ ଖଡ଼ଗ ଶ୍ରୀକରେ ଧରି । କ୍ଷିତି ଟଳବଳ ଦେଖି ଅଦିମୂଳ ନିଷ୍କାମ ଲୀଳା ବିସ୍ତାରି ଯେ । ଲୀଳା ଦେଖିବ ଦେଖିବ । ଖଳା ମୁଣ୍ଡାକୁ ଯେ ଟାକ ଥିବ ଯେ ॥ ଗର୍ଜନ ତର୍ଜନ ଗରବତା ଜନ ସ୍ୱର୍ଗେ ମେଦେ ଛନ୍ନ ଛନ୍ନ । ଗଙ୍ଗ ଗଡ ସୀମା

Digitized by srujanika@gmail.com

ଖର୍ଜିବେ ଗାରମା ଖାଉବାନା ଧନ୍ୟ ଧନ୍ୟ ଯେ । ଗୁଣନିଧି ଜନ ବ୍ରହ୍ମ । ଗୁ ରୁ ରଖିବେ ସକଳ ଧର୍ମ ଯେ ॥ ଘନଘନ ଚଡ଼ଚଡ଼ ମଡ଼ମଡ଼ ଯେସନେ ଅକାଶ ଘନ । ବଡ଼ ବଡ଼ ଲୋକଙ୍କ ଧଡ଼ଧଡ଼ ହୋଇ ଘୃଣା କରୁଥିବେ ମନ ଯେ । ଘରୁ ଉଦ୍ଧାର ବନ୍ଧ । ଘୋର ବନେ କରିବେ ନିବାସ ଯେ । ୪ । ଉନ୍ନେ ହେଲାବେଳେ ଦେଖିବ ସକଳେ ଅନନ୍ତ ସପନ୍ତ ଫଣୀ । ଆଦ୍ୟ ଅବଧୂତ ହୋଇବେ ଯେମନ୍ତ ଆକାର ତା ସିଂହ ଠାଣି ଯେ । ଯୋଦ୍ଧା ସିଜ ଅପସର । ରବ ତେଜକୁ ଯେଉଣ୍ଠ ତମିର ଯେ ॥ ଚନ୍ଦ୍ରକି ଗଳଣି କଳଙ୍କି ବାସନା ଛାଡ଼ ଦମ୍ଭ କରିଥାଅ । ସୃଗଖାନ ଚଳିପ୍ରଣୋତି ଯେତେ ଅଛ ସମସ୍ତେ ତ ଶୁଣିଥାଅ ଯେ । ଛତ୍ରପଟ୍ଟ ପର ଗୁପ୍ତ । ଛନ୍ଦ ନପର ଅଲେଖ ମାଯ୍ଯା ଯେ । ୬ । ଛନ୍ନ ଛନ୍ନ ମନ ହୋଇବ ଉଚ୍ଛନ୍ନ ଛନକା ପଣିଙ୍କ ଗୁପ୍ତ । ଛତିଶ ପାଟକ ସ୍ୱଭାବ ବର୍ଣ୍ଣ ଛନ୍ଦ କୁଟିଳ ପ୍ରକୃତ ଯେ । ଛୁଟ୍ର କଥା ଯେ ଧରିବ । ଗୁମ୍ଫ ଦ୍ୱାରେ ଅପରାଧୀ ହେବ ଯେ । ୭ । ଜୀବଙ୍କୁ ଯତନ ପଚାଅ ରତନ ଶୂନ୍ୟ ବ୍ରହ୍ମଆଦ୍ୟ ମୂଳ । ଯନ୍ତା ଧର୍ମ ତତୋ ଜପ୍ତ ହେବ ନଷ୍ଟେ ଦେଖିବ ଅନନ୍ତ ଖେଳ ଯେ, ଜୀବ ଉଦ୍ଧାର ହୋଇବ । ଯେତ୍ର ପିଣ୍ଡେ ପ୍ରାଣ ରଖିଥିବ ଯେ । ୮ । ଝାଡ଼ ଦୀପାବଳୀ ଚଉପାଶେ ଜାଳ ବୃନ୍ଦାବନ ଜଣି ଶୋଭା । ଝଟ ଝଟ ନଶି ପାଣ୍ଡବାର ଆସି ତେଜ ସୂର୍ଯ୍ୟମଣି ପ୍ରଭା ଯେ । ଝଟ ଝଟ ତେଜ କ୍ଲାନ୍ତ । ଦେବ କୁସୁମ ବରଷୁଛନ୍ତ ଯେ । ୯ । ନଗାର ସୁରଙ୍ଗ ଲୋଇଟିବ ଯୁଗ ଭୋଗ ହେଲା କାଳ ଘନ । ନ ଦେଖି ସୁନ୍ଦର ନଖାଇ ମଧୁର ନଅଙ୍ଗଠା ଶୂନ୍ୟ ବ୍ରହ୍ମ ଯେ । ଲକ୍ଷ ଲକ୍ଷ ହୋଇ ଜନ । ଲମ୍ଭେ ଦଣ୍ଡ କରିବେ ଦର୍ଶନ ଯେ । ୧୦ । ଟେକି ଦେଲେ ପ୍ରଭୁ ଶ୍ରୀମୁଖ ମଣ୍ଡଳ ଟେର ବାଡ଼ ଫିଟି ଯିବ । ଟାଣ ଭର୍ଜି ଯିବ ଠିକଣା ବେଳରେ ଟିକସ ହୋଇଛୁ ଠାବ ଯେ । ଟେପ ପଞ୍ଚ କୂପ କୁଣ୍ଡ । ଟାଣ ଟସ୍କର ହୋଇବେ ରୁଣ୍ଡ ଯେ । ୧୧ । ଠିକଏ

Digitized by srujanika@gmail.com

ବଚନ କେ କରିବ ଆନ ଠାକୁର ଅନାଦ୍ଧ ବ୍ରହ୍ମ । ଠିକ୍ କହୁଅଛୁ ଚେତରଣ ଚେତରରେ ଦେଖିବ ନୂଆ ନଗାନ ଯେ । ଠୁଳ ହେବେ ଭକ୍ତ ଗଣ । ଠାକୁର ନାମ ନାମର କାରଣ ଯେ । ୧୨ ।

(ଓ, ଓଁକାରଦେବଙ୍କ ଓଁକାର ଅନାଦ୍ଧ ଅଲେଖ ଅନ୍ତର୍ଯ୍ୟାମୀ ଶୂନ୍ୟବାସୀ । ଓଡ଼ିଶା ଉଙ୍ଗର ଯେ ଉଦକ ବକଳ ଏ ଧର୍ମରେ ଗଲେ ପଶି ଯେ । ଧର୍ମ ଧରି ହେବେ ପାର । ନାଗ ଚୂଡ଼ନ୍ଧ ଧଇଲ୍ ପର ଯେ । ୧୩ । ଛାକା ବାଜନ୍ତି ଯେ ଢେଙ୍କାନାଳ ରାଜ୍ୟେ ଅନାଦ୍ଧ ଅନନ୍ତ କ୍ଷେତ୍ର । ଛାଲଦେଇ ଶୂନ୍ୟ ମଦ୍ଧରେ ନମୁନା ଦେଖିଣ ନେତ୍ର ପବିତ୍ର ଯେ । ଛୋକ ନାମାମୃତ ବାର । ଛାଲଦେବେ କୃପା ସୁଧା ଝରି ଯେ ॥ ଆଦ୍ଧ ଅବ୍ୟକ୍ତ ଅନନ୍ତ ଅବ୍ୟକ୍ତ ଅଣାକାର ଶୂନ୍ୟବାସୀ । ଅଖିଳ ନମନ୍ତେ ଅବତାର ମର୍ତ୍ତ୍ୟେ ନସ୍ଥାମରେ ବ୍ରହ୍ମବଣି ଯେ । ଅଣ ସାଧନାରେ ସିଦ୍ଧି । ଆଣି ସ୍ଥାପିଲେ ଯୁଗ ସମାଧି ଯେ ।୧୪। ଚେତରଣ ଚେତର ସାଲରେ ଗୁରୁସ୍ୱାମୀ ଅନନ୍ତ ଖେଳ କରିବେ । ତେତିଶ କୋଟି ଯେ ଅମରବୃନ୍ଦ ନରେ ଜନ୍ମ ଆସିଥିବେ ଯେ । ତନପୁରେ ଯେତେ ଜନ । ତଳେ ପଡ଼ିଆ ନ ଥିବ ସ୍ଥାନ ଯେ । ୧୭ । ସ୍ଥାନ ଭ୍ରଷ୍ଟ ଦୋଷ ହୋଇବେ ନରେଣ ସ୍ଥାନ ହୋଇଥିବ ଭୁଛ । ଥରୁଥିବେ ଦେଖି ଅନନ୍ତ ଖେଳକୁ ଚକ୍ରେ ଦେଉଥିବେ ତନ୍ତ ଯେ । ଥିବେ ଜମ୍ବୁଦ୍ୱୀପେ ଯେତେ, ଶୂନ୍ୟ ଆଶ୍ରିତ କରି ସମସ୍ତେ ଯେ । ୧୭ । ଦଅଁ ନାହିଁ ଶୂନ୍ୟ ଦେଉଳ ଛତରେ ବ୍ରହ୍ମବଣି ପାଥାବଳୀ । ଯତ ସଖ ନାରୀ ସଧବା କୁମାରୀ ପତ୍ର ଭକ୍ତା ଯେତେ ମିଳ ଯେ । ବଢାଇବେ ଅର୍ଘ୍ୟ ସ୍ଥାଳ । ଉଚ୍ଚେ ଦେଉଥିବେ ହୁଳ ହୁଳ ଯେ ।୧। ଧର୍ମ ଉଦେ ହେବ ଧାରଣ ଉଛିବ ସତ୍ୟକୁ ସୁକୃତ ପଥ । ଧର୍ମ ଧରି ପ୍ରାଣୀ ରହିବେ ଧରଣୀ ସତ୍ୟ ହୋଇବ ପ୍ରାପତ ଯେ । ଧାମ୍ମି ଅଲେଖ ମହିମା । ଧୂଳଧର ଜଗିଥିବ ବ୍ରହ୍ମା ଯେ । ନର୍ଭୁତ ଚରିତ ନଗାନ ଯେ ଘୃତ ଲକ୍ଷେ ଲକ୍ଷେ ଠଙ୍କା ସୁନା । ନବନ ଧର୍ମ ସ୍ଥାପି ଗୁରୁବ୍ରହ୍ମ ନର୍ମଳ ନୂଆ ରଚନା ଯେ ।

Digitized by srujanika@gmail.com

ବନ ବନକର ଭବ । ଲୀଳା କେ କର ପାରିବ ଠାବ ଯେ । ୨୦ ।
ପୂର୍ବବର ସୀମା ପ୍ରଭୁଙ୍କ ମହିମା ପରଶୁ ପଥର ସୀଝ । ଚଉଦ ଭୁବନ
ସତ୍ୟବନ୍ତ ପ୍ରାଣୀ ପାପୀ ତପୀ କୁଢ଼ କୁଢ଼ ଯେ । ଖଣ୍ଡ ଖଣ୍ଡ ହୋଇ
ଭୁଣ୍ଡ । କର୍ମ ଥିବ ଜମ୍ବୁଦ୍ୱୀପ ଖଣ୍ଡ ଯେ ॥ ଫାଟିଯିବ କଳିଯୁଗ ନଭ-
କାଟି ଫୁଙ୍କାର ଧ୍ୱନି ନାଦରେ । ଫେରୁଅଛି ଶୂନ୍ୟ ମହିମା ଶବଦ
ପ୍ରୀତି ଲଗା ସେହିଠାରେ ଯେ । ଫଳ ଫଳିବ ବିଶେଷ । ଫନ୍ଦାକରି
ଗୁରୁନାମ ଘୋଷ ଯେ ॥ ବଦଳିବ ଯୁଗ କେ ଜାଣିପାରିବ ଋତୁ ଭୋଗ
ହେଲ ପର । ବସନ୍ତ ଗ୍ରୀଷମ ବରଷା ଶରତ ହେମ ଶିଶିରକୁ ଧର
ଯେ । ଋତୁ ଥାଉଁ ଆନ ଋତୁ । ଯେତେହେଁ ନୁହେଁ ଋତୁ ଭୋଗ ହେବୁ
ଯେ ।୨୩। ଭବସାଗରକୁ ଭେଳା ବାନ୍ଧିଛନ୍ତି ଜଗତ ଭକତ ହିତେ ।
ଭେଳା ଦୃଢ଼ ଭବ ନଦୀରେ ପଶିଲେ ରକ୍ଷା ହୋଇବ କେମନ୍ତେ ଯେ ।
ଭସିଯିବ ଅକାରଣ । ଭବ କହେ ପାମର ନାରାଣ ଯେ । ୨୪ ।

(ମ) ମହିମାକୁ କେହି ନିନ୍ଦା ଦେବାପାଇଁ ମାରିଛନ୍ତି ଡାକ-
ଛଟି । ମନ ମନ୍ତ୍ରୁଆଳ ମହତ ସନ୍ମାନ କଳିକାଳ ଯିବ ଫାଟି ଯେ ।
ମହାମହିମାଙ୍କୁ ଧର । ମହାବ୍ରହ୍ମ ନାଦ ହେବ ପାର ଯେ । ୨୫ ।
ଯୋଗୀ ଜନମାନେ ପରୀକ୍ଷା ହୋଇବେ ଯୋଗ ନିଦ୍ରା ଗାଢ଼ ଠାରେ ।
ଜପୀ ତପୀ ନାଗାଦଣ୍ଡି ବ୍ରହ୍ମଚାରୀ ସନ୍ୟାସୀ ଜାଗ୍ରତ ଦ୍ୱାରେ ଯେ ।
ଜଣାଇବେ ଶୂନ୍ୟ ବ୍ରହ୍ମ । ଯାଚ ଦେବେ ଗୁରୁଦୀକ୍ଷା ଧର୍ମ ଯେ ।୨୬।
ରଖ ରଖ ପ୍ରଭୁ ଡାକ ହେଲବେଳେ ରଖିବେ ଶୂନ୍ୟ ଅନନ୍ତ । ଋଷି
ସାଧୁ ସିଦ୍ଧ ନାଗା ବ୍ରହ୍ମଚାରୀ ଯେ ଯନ୍ତ୍ରିକ ଧାମରଥ ଯେ । ରଗ ହଂସା
ରଜ ତମ । ସତଗୁଣ ଧରି ହେବ ସମ ଯେ । ୨୭ । ଲଭ ଲୋଭ
ମୋହମାୟା ଶେଷ ଫଳ ଭୁଅ ଶଙ୍କ ଯେତେହେଁ ଧ୍ୱନି । ଲେଖା ହିସାବକୁ
ଦେଖାନାହିଁ ତାଙ୍କୁ ହିସାବେ ଯିବେ ମଣ୍ଡଳ ଯେ । ଏଥିଉପର ରଜ
ତମ । ସତ ଗୁଣେ କାହୁଁ ହେବେ ସମ ଯେ । ୨୮ । ବାଜୁଥିବ ବ୍ରହ୍ମ
ଦୁନ୍ଦୁଭି ଶବଦ ଘାରବର ବଧୂ ବାଜା । ବାରସ୍ୱପ୍ତ ଭୁବନକୁ ଜିଣି

Digitized by srujanika@gmail.com

ଶୋଭା ବଇପେ ଅନାଦି ରାଜା ଯେ । କିବା ଦେବ ଉପଲକ୍ଷ୍ୟ । ବ୍ରହ୍ମ ଅବତୀର୍ଣ୍ଣ ଯହିଁ ସାକ୍ଷ୍ୟ ଯେ ॥ ଶ୍ରବଣେ ଶୁଣିମା ସତ୍ୟ ପରିକ୍ରମା ଶ୍ରୀଗୁରୁ ସମ୍ବାଦ ସାର । ଶ୍ରୀ ସତ୍ୟଯୁଗକୁ ଅନନ୍ତ ବେଦାଙ୍ଗ ସର୍ବେ ହୁଅ ଆଗୁସାର ଯେ । ଶ୍ରଦ୍ଧା ଚିତ୍ତେ ନୃତ୍ୟ କରି । ଶ୍ରୁତି ପଥେ ଶୁଣି ହେବୁ ଧରି ଯେ ସତ୍ୟ ଧାରସ୍ୱତ ହୋଇବ ପ୍ରାପତ ଶଙ୍ଖ ମୁଖେ ଦେଇ ଧୂଳି । ଶରଣ ସୋଦର ସ୍ୱାମୀ ଦିଗାମ୍ବର ଲୀନ ବ୍ରହ୍ମପୀଠ ଜାଳି ଯେ । ସ୍ୱୟଂ ବ୍ରହ୍ମ ଆଦିମୂଳ । ଶୂନ୍ୟ ଆଦ୍ୟନ୍ତ ଅନନ୍ତ ଖେଳ ଯେ ॥ ସ୍ୱୟଂ ଅଣାକାର ବିଜେ କରିଥିବେ ଭୁବନ ହାଟ ଉପର । ସୁବର୍ଣ୍ଣରେ ଗାଦି ବସିବେ ଅନାଦି ପ୍ରାପତ ସତ୍ୟ ନଜର ଯେ । ସର୍ବେ ନୟନେ ଦେଖିବ ସତ୍ୟଯୁଗକୁ ଯେ ରହିଥିବ ଯେ ।୩୨। ହରବର ହାନ ହୋଇବଟି ଶନି ମୀନ ରାଶିରେ ଚଳିବ । ହରିହର ବ୍ରହ୍ମା ଅନନ୍ତ ମହିମା ସାର ଧର୍ମ-ଜଣାଯିବ ଯେ । ହେବୁ ଲକ୍ଷିଥାଅ ଚିତ୍ତେ । ହୃଦେ ନାମ ଭଜ ଅହରହ ଯେ ॥ କ୍ଷମାନନ୍ଦ ସ୍ୱାମୀ ପ୍ରଭୁ ଅନ୍ତର୍ଯ୍ୟାମୀ ମହିମା ନାମ ସାହାର । କ୍ଷିତି ରକ୍ଷା ଅର୍ଥେ ଅବତାର ମର୍ତ୍ତ୍ୟେ ଅନନ୍ତ ଶୂନ୍ୟବେଦାଙ୍ଗ ଯେ । କ୍ଷମାନନ୍ଦ ଶ୍ରୀଚରଣ । ଧ୍ୟାୟୀ ଭଣେ ଅଧମ ନାରଣ ଯେ ॥

—୦—

( ୪୯ )

(କ) କୋଇଲି ଲୋ ! କଳିଯୁଗ ଲୋକ ବଡ଼ ଧନ୍ୟ । କରତା ପୁରୁଷ ସେତ୍ତ ଲୋ ଦେଖିଲେ ନୟନ । କୋଇଲି ଲୋ । ଖଟି-ଥିଲେ ଲକ୍ଷ୍ୟ ଦାସଦାସୀ । ଖେଳ କରୁଥିବେ ମର୍ତ୍ତ୍ୟେ ଲୋ ଶୂନ୍ୟବାସୀ ॥ କୋଇଲି ଲୋ । ଗୁରୁ ରୂପେ ଜ୍ଞାନ ଦେଲେ କହି । ଜ୍ଞାନତତ୍ତ୍ୱ ଦେଇଛନ୍ତି ଲୋ ଭକତଙ୍କ ପାଇଁ ॥ କୋଇଲି ଲୋ । ଘଡ଼-ଏତ ନ ରହନ୍ତି କାହିଁ । ଘନେ ବନ୍ଧୁ ପ୍ରାଏ ସ୍ୱାମୀ ଲୋ । ବୁଲୁଛନ୍ତି ମହୀ ।୪। କୋଇଲି ଲୋ । ଉଦେ କଲେ ମହିମା ଧର୍ମକୁ । ଅଣାକାର ପରବ୍ରହ୍ମ । ଲୋ ବିଜେ ଧରାକୁ ।୫। କୋଇଲି ଲୋ । ଚନ୍ଦ୍ରିକ

Digitized by srujanika@gmail.com

ପାରିଲେ ମୁକ୍ତ ଲୋକେ । ଚେତା ଥାଉଁ ଥାଉଁ ମେନ୍ତ ଲେ । ପଡ଼ନ୍ତ ନରକେ ॥ କୋଇଲି ଲେ । ଖଣ୍ଡିଯିବ ଜନ୍ମ ମୃତ୍ୟୁ ଭୟ । ଛୁଟିଯିବ ପ୍ରାଣଗୋଟି ଲେ । ବର ତାଙ୍କୁ ଲୟ । ୭ । କୋଇଲି ଲେ । ଜଗତ ଜୀବନ ସେ ଅଟଇ । ଯୋଗୀ ବେଶେ ଭ୍ରମୁଛନ୍ତି ଲେ । କୁମ୍ଭୀପଟ ଲାଇ । ୮ । କୋଇଲି ଲେ ଝଟକତ ଶିରେ ଶୁକ୍ଳ କେଶ । ଝଟକ ବିଜୁଳି ପ୍ରାୟେ ଲେ । ହେଉଥାନ୍ତି ଦୃଶ୍ୟ ।୯। କୋଇଲି ଲେ । ନର୍ବ-କାର ପ୍ରଭୁ ପୂର୍ଣ୍ଣାନନ୍ଦ । ନିତ୍ୟ ସ୍ଥଳେ ଖେଳ କଲେ ଲେ । ଘେନ ଭକ୍ତବୃନ୍ଦ । ୧୦ । କୋଇଲି ଲେ । ଟେକିଛନ୍ତି ପ୍ରଭୁ ବେନି ଭୁଜ । ଟମକ ବାଜୁଛି ଏବେ ଲୋ । ସାଧୁ ବେଶ ସାଜ । ୧୧ । କୋଇଲି ଲେ । ଠିକ୍ ଆସି ହୋଇଲା । ସତ୍ୟ ମୂର୍ତ୍ତି । ଠୁଳ ହେବେ ସବୁ ଭକ୍ତ ଲେ କହଇ ନାରଣ । ୧୨ ।

(ଡ) କୋଇଲି ଲେ । ଡର ଭୟ ଛାଡ଼ କର ଭକ୍ତି । ଡହ ଡହ ବିଷ ପାନ ଲେ । କଲେ ଉମାପତି । ୧୩ । କୋଇଲି ଲେ । ଡାକୁଣୀ ଭିତରେ ଅଛୁ ଜୀବ । ଡାଉ ଡମାଳରେ ପଡ଼ ଲେ । ନ ଜାଣିଲେ ଭବ । କୋଇଲି ଲେ । ଅଣାକାର ବାସୀ ଶୂନ୍ୟ ବ୍ରହ୍ମ । ଆଜ ଫଳ ଶ୍ରୁତି ସବୁ ଲେ । ମୂର୍ତ୍ତି ଭିନ୍ନ ଭିନ୍ନ ॥ କୋଇଲି ଲେ । ତୋଳିଲେଟି ଆସନ୍ତ ଭୁବନ । ତାଙ୍କୁ ତୋଳିବାକୁ କେହି ଲେ ନୁହନ୍ତି ସର୍ଜନା ।୧୬। କୋଇଲି ଲେ । ଅଟେ ଏକା ତୋଳିଥିଲା ବଳି । ଥାନ ଦେଇ ବସାଇଲେ ଲେ । ପାତାଳ ନଗରୀ । ୧୭ । କୋଇଲି ଲେ । ଦରଶନ କଲେ ଅନ୍ତର୍ଗତେ । ଦୋଷ ହରଣ କରିବେ ଲେ । ପ୍ରଭୁ ଜଗପତେ । ୧୮ । କୋଇଲି ଲେ । ଧର୍ମଧ୍ୱଜ ସ୍ଥାପି ଦେଲେ ଆଣି ଧର୍ମ ଦେଖି ପାପ ଭୀର ଲେ । ଜଶ୍ୱାସ ଧରଣୀ । କୋଇଲି ଲେ । ନିରାକାର ପ୍ରଭୁ ଶୂନ୍ୟବ୍ରହ୍ମ । ନିସ୍ଥାମରେ ଖେଳ କଲେ ଲେ । ଘେନ ଭକ୍ତଗଣ ॥ କୋଇଲି ଲେ । ପାହାଲଣି ଆସି କଳିଯୁଗ । ପାପ ପୁଣ୍ୟ ନ ବିଚାର ଲୋ । ଲୋକେ କଲେ ଗର୍ବ । କୋଇଲି ଲେ । ଫଗୀର

Digitized by srujanika@gmail.com

ମୂରତି ପ୍ରଭୁ ଧରି । ଫେରୁଛନ୍ତି ବ୍ରହ୍ମାଣ୍ଡରେ ଲୋ । ବକଳ ପଦ୍ଧରି ॥ କୋଇଲି ଲୋ । ବୁଦ୍ଧ ଯେ ପ୍ରବୁଦ୍ଧ ବେଶ ଧରି । ବଚଜ କଲେ ମେଦିନୀରେ ଲୋ । ରକ୍ଷାର୍ଥେ ବିପୁରୀ ॥ କୋଇଲି ଲୋ । ଭକତ ବତ୍ସଳ ଭବଗ୍ରାହୀ । ଭଣେ ନାରଣ ପାମର ଲୋ । ଗୁରୁ ପାଦ ଧ୍ୟାଇ । ୨୪ ।

(ମ) କୋଇଲି ଲୋ । ମହିମା ପ୍ରକାଶ ହେଲା ମର୍ତ୍ତେ । ମହିମା ଶବଦ ଧ୍ୱନି ଲୋ । ଶୁଭୁଅଛୁ ଜଗତେ । ୨୫ । କୋଇଲି ଲୋ । ଜଗତ ଜୀବନ ବନ୍ଧୁ ହୋଇ । ଜ୍ୟୋତି ସ୍ୱରୂପ ପୁରୁଷ ଲୋ । ରୂପ ବର୍ଣ୍ଣ ନାହିଁ ॥ କୋଇଲି ଲୋ । ରବି ତଳେ ଥିଲେ ଦେହ ବହି । ରଖିଲେ କରତା ଦେହ ଲୋ । ଭକତଙ୍କ ପାଇଁ ।୨୭। କୋଇଲି ଲୋ । ଲଭି କରି ମହିମା ଧର୍ମକୁ । ଲଭିବ ମୁକତି ପଦ ଲୋ । ନୂଆ ରଚନାକୁ ॥ କୋଇଲି ଲୋ । ବଣା ହେଲେ ଜଗତର ଲୋକ । ବଣା ହେଲେ ବ୍ରହ୍ମାଣ୍ଡରେ ଲୋ । ଅବିବେକୀ ମୂର୍ଖ ॥ କୋଇଲି ଲୋ । ଶ୍ରୀଗୁରୁ ରୂପରେ ପରକାଶି । ସତ୍ୟ ଧର୍ମ ସ୍ଥାପି ଦେଲେ ଲୋ । ସର୍ବ ପାପ ନାଶି ।୩୦। କୋଇଲି ଲୋ । ସତ୍ୟ ହେଲା ନ ଜାଣିଲେ କେହି । ସତ୍ୟ ତତ୍ତ୍ୱ ସ୍ଥାପି ଦେଲେ ଲୋ । ଭକତଙ୍କ ପାଇଁ । ୩୧ । କୋଇଲି ଲୋ । ସ୍ୱାମୀ ନାମେ ଶରଣ ବିକାଳେ । ସାଧୁଙ୍କେ କରି ନିର୍ମଳ ଲୋ । ସ୍ୱାମୀ ପାଦ ତଳେ ॥ କୋଇଲି ଲୋ । ହୃଦ ପଦ୍ମେ କରି ବ୍ରହ୍ମେ ସ୍ଥିତ । ହରକତ ନୁହ କେହି ଲୋ । ହୋଇବ ମୁକତି ।୩୩। କୋଇଲି ଲୋ । କ୍ଷମାନନ୍ଦ ପାଦରେ ଶରଣ । କ୍ଷିତି ଶର ଉଣ୍ଣାସିବେ ଲୋ । କହଇ ନାରଣ । ୩୪ ।

—୦—

( ୭୦ )

ଜୟ ଜୟ କରତା ଶ୍ରୀ ବକଳ ବିହାରୀ । ବୁଦ୍ଧି ରତନରେ ଜାଣି ଚତୁର୍ଦ୍ଦଶ ପୁରୀ । ଅବ୍ୟକତ ଯେ, ମହିମା ତିନ ଭୁବନେ ଖ୍ୟାତ

Digitized by srujanika@gmail.com

ଯେ ॥ ଦେଖି ଘୋର କଳିଯୁଗ ଅବମାର ଘର । ଏକବ୍ରହ୍ମ ବୁଦ୍ଧରୂପ ଜଗତେ ବିହର । ଭକ୍ତରକ ଯେ, ଧର୍ମ ଦେଖି ଉଚ୍ଛନ୍ତି ଲୋକ, ଯେ । ୨ । ବିଜେ କରିଛନ୍ତି ପ୍ରଭୁ ଅଖିଳ ନାମରେ । ଶୂନ୍ୟବାସୀ ବ୍ରହ୍ମ ବିଜେ ଧର୍ମ ସାରସ୍ୱତେ, ଭଜ ଚେତ ଯେ, ଯୋଗୀ ବଇଷ୍ଣବ ସାଧୁ ମୂର୍ତ୍ତି ଯେ ।୩। ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀବତ୍ସ ଲାଞ୍ଛନ । ଶ୍ରୀମନ୍ତ ପୁରୁଷ ସ୍ୱାମୀ ଭକତ ଜୀବନ । ଚିହ୍ନ ବାଛି ଯେ । ଶଙ୍ଖ ଚକ୍ର ଭୁଜମୂଳେ ଅଛି ଯେ ॥ କର ମୂଳେ ଝୁଆ ପୃଷ୍ଠେ ଦେଖ ଯତ୍ନ କରି । ମାଛି ପ୍ରାପ୍ୟ ରଖିଛନ୍ତି ବକଳ ବିହାରୀ । ଚକ୍ର ଗଦା ଯେ, କଣ୍ଠ ଚକ୍ରେ ଶୋଭେ ପଦ୍ମ ଶୋଭା ଯେ । ୪। ରନ୍ଧ୍ର କେଶ ଶିରେ ବୋଝ ବୁଲନ୍ତି ବ୍ରହ୍ମାଣ୍ଡେ । ରଖିବେ ଅଖିଳ ଜୀବ ପୃଥ୍ୱୀ ନବଖଣ୍ଡେ । ଏବେ ଶୁଣ ଯେ, ଅଚ୍ୟୁତ ମୂରତି ନାରାୟଣ ଯେ । ହରିବୋଲ ହୁଳହୁଳ ଦିଅ ସର୍ବଜନ । ବିଜେ କରିଛନ୍ତି ପ୍ରଭୁ ଧର୍ମ ନିରଞ୍ଜନ । ଗୁରୁ ରମ୍ୟ ଯେ, ଜାଣନ୍ତି ସକଳ ଧର୍ମ ନ୍ୟାୟ ଯେ ।୬। ଶୁଭ ଅନୁକୂଳ ଯେବେ ହୋଇବେ ବାହାର । ଛତ୍ର ରଥ ପୁଷ୍ପକୁ କରିବେ ରଥ ସାର । ସୃଷ୍ଟି ସାଧି ଯେ, ଆସନରେ ବସିବେ ଅନାଦି ଯେ ॥ ସୁବର୍ଣ୍ଣ ଝୁମୁଆ ଟଣା ହେବ ପ୍ରଭୁ ପାଶେ । ଚଉପାଶେ ଖଟିଥିବେ ଶ୍ରୀସିଦ୍ଧାନ୍ତ ଦାସେ । ନାମ ଧ୍ୱଜ ଯେ, ଜଗେ ନାରାୟଣ ଗୁରୁ ସ୍ୱାମୀ ଯେ ।୯। ନବ ସସ୍ତ୍ର ସାତ ମାଣ ଜମି ଦୀର୍ଘ ପ୍ରସ୍ଥ । ଏକଜାତି ହନୁ ଆଜ ନାହିଁ ବାଡ଼ବୃତ୍ତି । କର୍ଣ୍ଣିକର ହେ, ରବି ଚନ୍ଦ୍ର ହଳ ଅଟେ ଯାର ହେ । ୧୦ । ହଳଆ ନଥାଇ ଶୂନ୍ୟେ ହେଉଅଛି ଚାଷ । ପଡ଼ିଆ ହୋଇଯିବାରୁ ମାଡ଼ିଗଲା ଘାସ । ଅସତ୍ୟରୁ ହେ, ନିର୍ମଳା କରିବେ ଶ୍ରୀ ଆଜ୍ଞାରୁ ହେ । ୧୧ । କଳା ଧଳା ରଙ୍ଗ ତିନ ଜାତି ବର୍ଣ୍ଣେ ଧାନ । ବାଜୁଙ୍ଗା ମିଶି ଝାଡ଼ବେଢ଼ା ହୋଇଛି ବିହନ ଦେବେ ବାଛି ଯେ, ଖାରବାନା ଉଦେ ହୋଇଅଛି ହେ । ୧୨ । ଏ ଜମିରୁ ଜନତା କାଟିବେ ବୁ ଧାନ । ମେରୁ ମୂଳେ ନେଇ ଗଦା କରିବେ ବିହନ । ଦେଖ ତୋଳେ ହେ, ସବୁ ଗଦା ହେବ ମେରୁ

Digitized by srujanika@gmail.com

ମୂଳେ ହେ ॥ ଦକ୍ଷ ଦାଉଣୀରେ ଯୋଚ କୁଜନ ଦାମୁଡ଼ି । ସବୁ ଧାନ ମେରୁ ମୂଳେ ପକାଇବେ ଝାଡ଼ି । ସବୁ ଧାନ ଯେ, ମାପିବାକୁ ଶ୍ରୀଗୁରୁ ଗର୍ଜନ ହେ । ୧୪ । ଅନାମିକା ଗଉଣୀରେ ମାପି ପ୍ରଭୁ ଧାନ । ଜମି ଅନୁକ୍ରମେ ସିନା ରଖିବେ ଚନ୍ଦନ । ଭୁଜ ବାହେ ହେ, ଚନ୍ଦନ ଆଠ ଗଉଣୀ ପାଏ ହେ ॥ ଭଣେ ସ୍ୱାନଜନ ଦାସ ପାମର ନାରଣ । ଚନ୍ଦନ ରଖିବେ ପ୍ରଭୁ ଧର୍ମ ନିରଞ୍ଜନ । ବାଛୁ କର ହେ, ବ୍ରହ୍ମ ପୁରାତନ ଶୂନ୍ୟ ହରି ହେ । ୧୬ ।

—୦—

( ୬୧ )

ଶୁଣ ମନଦେଇ, କହିବା ବୁଝାଇ, କଳିଯୁଗ ଗୁଣ ଗାନ୍ଥ । ଆଦ୍ୟ ପ୍ରାନ୍ତ କରି, କହିବା ବିସ୍ତାରି, ଯେମନ୍ତ ହେବ ଅନ୍ତ, ହେ ଶୁଣ । ମୁଖେ ନ ଭଜିବେ ନାରାୟଣ, ମୋହ ମାୟାରେ ହେବେ ଅଜ୍ଞାନ । କେହି ନ ମାନିବେ ବଡ଼ ସାନ । ଦିନୁଦିନୁ ହେବେ କୁରୁପଣ ହେ ଶୁଣ । ୧ । ଅମାତ ଆଚାରି, ମାରିବେ ଗୋହରି, ବାଟରେ ଖୋଳିବେ ଟୋପ । ବଳିବାକୁ କଲେ, ଖଦର ଗଉଣୀ, ଉଣପା ଦେଲେଣି ମାପ, ସେ ତେଣୁ, ହୁଡ଼ି କରୁଥିବେ ଗଣ୍ଡୁ ଗଣ୍ଡୁ, ଅଳ୍ପ ଆୟୁ ହେବେ ଦିନୁ ଦିନୁ, ଠାବ ନାହିଁ କୁମ୍ଭି ନର୍କ ବିନୁ, ପାରନାହିଁ ସାଧୁ ସଙ୍ଗ ବିନୁ । ୨ । ଦିନୁ ଦିନୁ କଳି, ହେବ ମହାବଳି, ଶୂନ୍ୟ ମାର୍ଗେ ଥିବ ରହି । ଲଗାଇ ଅରସ୍ଥି, ଧରିଥିବ ଚୁଟି, କାହାକୁ ଛାଡ଼ିବ ନାହିଁ, ସେ କଳି । ସର୍ବ ଘଟେ ପଶି ଦେବ ସ୍ଥଳ, ଗ୍ରାମେ ଗ୍ରାମେ ହେବ ହାଲହୋଳ, ବୋଲୁ ଶାସ୍ତ୍ରକୁ ପାଞ୍ଚିବେ ମେଳ । କଣ୍ଟ ଜଳରେ ଦେବେ ପଖାଳ, ସେ କଳି ॥ କରିବେ ଅନ୍ୟାୟ, ହୃଦେ ନାହିଁ ଭୟ ମନ ମୋଟ ଦମ୍ଭ ପଣେ । ଅଗ୍ନି ଦେବତାକୁ, ଆହୁତି ନଦେଇ, ଘୃତ ଖାଇବେ ବ୍ରାହ୍ମଣେ, ସେ ଦ୍ୱିଜ । ବିଧବା କନ୍ୟା କରିବେ ସଜ । ଯେତୁ ଅକର୍ମ କରିବେ କାର୍ଯ୍ୟ, ତେଣେ ସାକ୍ଷ୍ୟ ଥିବେ ଚନ୍ଦ୍ର

Digitized by srujanika@gmail.com

ସୂର୍ଯ୍ୟ, କଳିଯୁଗର ଏ ନ୍ୟାୟ ବୃତ୍ତି । ୪ । ବେଦରେ ନଥିଲା, ବିଧବା ହରଣ, ବଢ଼ାଇଆ ହେଲା କାଳ । ପୋଇଲା ହସ୍ତରେ, ଧନ ଦ୍ରବ୍ୟ ଦେଇ, ବୁଡ଼ାଇଲେ ଧର୍ମକୂଳ, ସେ ସର୍ବେ । ଦୁଃଖ ସୁଖ, ଦୁଇରେ ମଜିବେ, ଆତ୍ମା ଭକ୍ତି କେହି ନ କରିବେ, ପାପ କଳଙ୍କ ଲାଗିବ ଅଙ୍ଗେ, ତେଣୁ ନ ବସିବେ ସାଧୁ ସଙ୍ଗେ ॥ ନ ଭଜିବେ ହରି, ଗ୍ରହିବ ଯେ ଶିଖା, ବ୍ରହ୍ମାଣ୍ଡ ହେବ ଅସ୍ଥିର । ବ୍ରହ୍ମଜ୍ଞାନମାନେ ଲଜ୍ୟାକୁ ରଖିବେ, ପଣ୍ଡିତେ ବିଦ୍ୟା ପାସୋରି ସେ, ଯୁଗେ । ଜଡ଼ା ମୂରୁଖ ବେଦ କହିବେ, ଜଳନ୍ତଷ ମାଞ୍ଜି ନ ଜାଣିବେ, ଲୋକେ ବ୍ରାହ୍ମଣ ଅସ୍ଥି ଗିଳିବେ । ଧନ ଲୋଭେ ଦାନ ଘେନୁଥିବେ । ୬ । ସାଧୁଙ୍କୁ ଖାତିକ ବୋଧ ନୁହେ ଚିତ୍ତ, ସୃଷ୍ଟି ନ ମାନି ରହୁଚେ । ରାଜା ଆଜ୍ଞା ପ୍ରଜା ଜନ ନ ମାନିବେ, ରାଜ୍ୟ ନ ହୋଇବ ସୁସ୍ଥ, ସେ ଯୁଗେ । ଧରି ବଳଇ ଖଣ୍ଡଣା ନେବେ, ସ୍ୱର ଭଗ୍ନୀ ହରଣ କରିବେ, ଗଧ ଗ୍ରାଗଳ ପ୍ରାପ୍ତେ ହୋଇବେ, ନଷ୍ଟେ ମାତୃ ହରଣ କରିବେ ॥ ଏ ଅନ୍ୟାୟ ଶୁଣି କମ୍ପିବ ଧରଣୀ, ମେଦିନୀ ହୋଇବ କ୍ଷାର । ଲୁହାରେ କଳଙ୍କ, ଲାଗିଲେ ଯେସନେ ବିନ୍ଦୁ ବିନ୍ଦୁ ଯାଏ ସରି, ସେ ପରି, ମର୍ତ୍ତ୍ୟଜନ୍ତୁ ଯେତେ ନରନାରୀ, କଳିକାଳଙ୍କେ ଟେପ ପିଟିବେ ସତ୍ତ, ଯୁଗ ହୋଇଲା ଶେଷ ଶବଶ । ଧର୍ମ ଚକ୍ର ଟଳିବ କାହାରି ॥ ଘୋର ଅନ୍ଧକାର, ହୋଇବ ସଂସାର, ଘୋଟିପିବ କାଳମାୟା । ବାଘ, ଚମ, ହଂସା, ବାଦ, ଛେଦେ ପଡ଼ି, କାଟିବେ ନ କରିବେ ଦୟା ସେ ନର । ତେଣୁ ହୋଇବେ କର୍ମେ ହାଜର, ବିଦ୍ୟାସିଂହ ଦେବ ବ୍ରଜନ୍ତରେ, ନଷ୍ଟେ ପଡ଼ିବ କାଳ ତାହାର, ଆଉ ନାହିଁ ଅନ୍ୟେ ପ୍ରତିକାର । ୯ । ବାହାରିବେ ହରି, ବୁଦ୍ଧ ବେଶ ଧରି, ନିର୍ବେଦ କଲୁଷା କରି । ଭକତଙ୍କ ହିତେ, ବିଜୟିବୁ ଜଗତେ ମାନବ ମୂରତି ଧରି ସେ ବ୍ରହ୍ମ । ମର୍ତ୍ତ୍ୟେ ସ୍ଥାପିବେ ନିର୍ବେଦ ଧର୍ମ, ତାଙ୍କ ଶୂନ୍ୟମଣ୍ଡଳେ ଆଶ୍ରମ, ଦୀକ୍ଷା ଦେଲେ ନିର୍ବେଦ ସାଧନ, ପ୍ରଭୁ ନୁହନ୍ତି ଯୋନି ଜନମ ॥ କଳିଯୁଗ ପୁଣି ଦଶ

Digitized by srujanika@gmail.com

ସହସ୍ରାଣୀ, ଚତୁର୍ଥ ଅର୍ଦ୍ଧେ ହେବ ଭୋଗ । ତାହେ ସବେ ଖସ୍ୱେ, ପୁଣ ହେବ ଜଣ୍ୱେ, ପାଞ୍ଚ ସହସ୍ରାଣୀ ଭୋଗ, ସେ ଯୁଗ । ଆଜ ପାଏ କଳି-ଯୁଗ ଭୋଗ, କଳିଗିଳି ତେଜକେ ହର୍ଷ ବ, କଳି ଅନ୍ତେ କଳକି ହୋଇବ ॥ କଣ୍ଟୁବନ ଅନ୍ତେ, ଭ୍ରମିବେ ଜଗତେ, ଗୁରୁ ରୂପେ ଦେବେ ଜ୍ଞାନ । କଳିଯୁଗ ଶେଷ, ହୋଇବ ପ୍ରକାଶ, କରିବେ ଧୂରୁ ଜଣ, ସେ ଲୀଳା ଭକ୍ତଜନ ହେବେ ଭେଳା ଭେଳା, ଭକତରେ ହେଉଥିବେ ଖେଳା, ବେଢ଼ି ଲାଗିଅଛି ବ୍ରହ୍ମ କଳା ।୧୨। ଶୁଣ ଏ ବ୍ୟବସ୍ଥା ଭକତଙ୍କ କଥା, ଯୁଗ ପ୍ରମାଣେ କଳଙ୍କ, ଅଲେଖ ମହିମା, ମୁଖେ ଉଚ୍ଚାରୁଥିବେ ବ୍ରହ୍ମ ତେଜ କଳା ଯେଣୁ ସେ ଭକ୍ତ, ହୃଦେ ଘୋଷିବେ ତାରକ, ଶୂନ୍ୟ ଶବଦ କରିବେ ଠିକ, ନାମ ଗଦଗଦେ ହୋଇବେ ରଙ୍କ, ଅନ୍ନ ନିମନ୍ତେ ମାଗିବେ ଭିକ ।୧୩। ଦେଖିବ ସାକ୍ଷାତେ, ନ ଯିବ ପରତେ, ଅନାମ ଅରୂପ ହରି । ଯୁଗ ଶେଷ ଅନ୍ତେ, ବିଜୟେ ଜଗତେ ପଶି କଉପିନ ମାରି, ସେ ହରି, ଭଜେ କରିଥିବେ ମର୍ତ୍ତ୍ୟ ପୁରୀ, ବୁଦ୍ଧବେଶ, ଯୋଗୀ ରୂପ ଧରି । ବାହୁନଧି ବାନା ଅଣାଖରା, ଦେହ ଅକ୍ଷୟ ମାଳା ଉପରି ॥ ଅକୁଳୀନମାନେ, କୁଳୀନ ହୋଇବେ କୁଳୀନ ହୋଇବେ ଦାସ । ବାପ ଥାଉଁ ପୁଅ, ସବୁ ଆଗ୍ରେସାରି କଳି ଯୁଗ ହେବ ଶେଷ, ଯେ ନାଶ । ଧର୍ମେ ଥିଲା ପ୍ରାଣୀ କୁଳ ନଷ୍ଟ, ଚରି ଜୀବ ହୋଇବେ ପାପିଷ୍ଠ, ଦାତା ହୋଇବେ ଦରିଦ୍ର ଅଂଶ, ଏତେ କର୍ମେ କଳିଯୁଗ ଶେଷ ॥ କେ କରିବେ ନିନ୍ଦା, କେ କରିବେ ସ୍ତୁତି, କେ ପାଞ୍ଚିବ କୁଟ ବୁଦ୍ଧି । ଶୂନ୍ୟ ପୁରୁଷଙ୍କୁ, ଚିହ୍ନି ନ ପାରିବେ, ଅଜ୍ଞାନେ ମରିବେ ଧନ୍ଦ, ଗୋ ମାନ । ରୂପ ଦେଖି ହେବେ ଆଚମ୍ବିତ ଥୋକେ ବୋଲିବେ ଏ କେସ ମତ, ଯାର ଚର୍ଚ୍ଚେ ଅଛି ସିଦ୍ଧ ସତ, ଶୂନ୍ୟବାଣୀ ଶୂନ୍ୟରୁ ସମ୍ଭୂତ । ଅଙ୍ଗେ ବ୍ରହ୍ମ ଜାଳି, ବ୍ରହ୍ମାଣ୍ଡ ସମ୍ଭାଳି ଅଖିଳ ଅରୂପାନନ୍ଦ । ଖଟ ପଟଙ୍ଗାଦି, ଚରୁ ତ୍ରୁଣ ଆଦି,କା ଠାରେ ନ ଥିବ ଛନ୍ଦ, ଶ୍ରୁତି, ନାହିଁ କୁଳ ନାହିଁ ଗୋତ୍ର ଜାତି, ଦେଖୁ ଦେଖୁ

Digitized by srujanika@gmail.com

ନପାରିବେ ଚେତି, ଭକ୍ତ ଜୀବନ ପ୍ରାଣର ପତି, ଅଶେଷ ବ୍ରହ୍ମାଣ୍ଡ ସେ ରଖନ୍ତି ॥ ଜରିବେ ଅପ୍ରତେ, ନପିବେ ପରତେ, ଦୁଷ୍ଟ ହେବେ ଖଳ ବଳ । ପାଇ ପଣ ଧନ, ହେବେ ହତଜ୍ଞାନ, ଅତିଥିଙ୍କୁ ଦେବେ ମାଡ଼, ସେ କାଳେ, ରକ୍ତ ଘୋଟିବ ସୂର୍ଯ୍ୟ ମଣ୍ଡଳେ, ଚନ୍ଦ୍ରାରୁ ପଡ଼ ରସ ତଳେ, ବୁଡ଼ି ରହିବେ ନିଗମ ଜଳେ, ଦାରୁ ଚେତ ନିଜ ରୂପ ଖେଳେ ॥ କଳ୍ପବନ ଘରେ, ହିମ୍ବର ଯାକରେ, ଶୁଭିବ ଗହଳ, ଉଠ ଦକ୍ଷିଣ ଦିଗରୁ, ଶୁଭ ଲଗ୍ନ ଘେନ, ବାହାର ହୋଇବେ ବୁଢ଼ୀ, ସେ କାଳୀ, ଖାଇଯିବ ଗୋ ମଇଁଷି ଛେଳ, ଏକ ଘଟିକରୁ ପାଞ୍ଚ ହଳ, ଧର୍ମ ସାଧୁ ତ ମରିବେ ଭଳ, ଖାଲ ଢିପ କରିଯିବ ଅଳ । ତା ପଛେ ତାରକ, ତା ପଛେ ତାଡକ, ତା ପଛେ ଲାଗିବ ବେଳ । ଶତମୁଖା ହୋଇ ବାହାର ହୋଇବେ, ଲାଗିବ କାଣ୍ଡିଆ ଖଞ୍ଜ, ସେ ନିଷ୍ଠେ, ଅପ୍ରମାଦ ପଡ଼ିଯିବ ମଞ୍ଚେ, ଏହା ନୋହିଲେ କହିବ ପଛେ, ଯାର ନାମ ଶୁଣି କାଳ ଘୁଞ୍ଚେ, ତାଙ୍କୁ ନ ଭଜିବେ ପରପଞ୍ଚେ ॥ ମିଥ୍ୟା ନୋହେ ସତ୍ୟ, ବୁଝ ଆଦ୍ୟପ୍ରାନ୍ତ, ଆସିବ ସେ ମହାବଣୀ । ଗଙ୍ଗା, ମହାନଦୀ, ଯମୁନା ସହିତେ, ଏକଧାର ହେବ ପାଣି, ସେ ଦେଖି, ତେବେ ଭସିବ ନଗ୍ର କଟକ, ସର୍ବ ହେବ ଘେନ ଦେବ ଲୋକ, ମହାବଣୀ ମାଗିବ ପତ୍ରାକ, ଶତପୁରେ ପଡ଼ିବ ଚମକ ॥ ଗ୍ରାମକରେ ଦୁଇଘର ରହିଯିବେ, ଭଯିବେ ଶୂନ୍ୟ ପୁରୁଷ । ସେହିମାନେ ହେବେ ପୃଥ୍ୱୀକ ବାହନ, ଶୁଣ ଆରତ ଭବିଷ, ସେ ଅଂଶ, ସେହୁ କରିବେ ଗୁହ୍ୟ ପ୍ରକାଶ, ନିଷ୍ଠେ ପ୍ରଭୁଙ୍କର ହେବେ ଦାସ, ନୂଆ ରଚନା କରି ପ୍ରକାଶ, ଆଜ ବହୁତ କହିବ କିସ, ସ୍ୱର୍ଗେ ଜୟେ ଜୟେ, ଶବଦ ଶୁଭିବ, ଶୁଣ ହେ ସୁଜ୍ଞାନ ଜନ । ଭଣେ ଅରକ୍ଷିତ ପାମର ନାରଣ, ପରମ ସ୍ୱାମୀ ଚରଣ, ହେ ଶୁଣ, ସର୍ବ ଅପ୍ରାଧ ମୋର ନ ଘେନ, ନାହିଁ ଭକ୍ତି ବୁଦ୍ଧି ସଦଜ୍ଞାନ, ଛପ୍ପନକୋଟି ଜୀବରୁ ଏ ହୀନ, ସୁଜ୍ଞା-ଜନଙ୍କ ପାଦେ ଶରଣ । ୨୩ ।

—୦—

Digitized by srujanika@gmail.com

(ଭକ୍ତ ମଧ୍ୟଙ୍କର)
( ୭୨ )

(କ) କଳିଯୁଗେ ଭବ ତରିଲେ ବଳଯଙ୍ଗ କରିତା । କରୁଣା କଟାକ୍ଷେ ଭକ୍ତେ କରିଥିଲେ ଚେତା । କ୍ଷମାନିଧି । କ୍ଷିତି ମଧ୍ୟେ କଲେ ସର୍ବ ସିଦ୍ଧି ॥ ଗୋଲକ ବୈକୁଣ୍ଠ ନାଥ ଗରୁଡ଼ ଆସନ । ଗୁପ୍ତ ବୁଦ୍ଧ ଅବତାରେ ପରଶିଲେ ଜନ । ଘୋଷ ମୁଖେ । ଘୋର ସଂସାରୁ ତରିବ ସୁଖେ ॥ ଉଆଁସ ନଶିରେ ଦେଖ ଉଇଅଛୁ ଗ୍ଳାନ । ଅଖଣ୍ଡିତ ବ୍ରହ୍ମ ସେ ଅନାଦି ଆଦିକନ୍ଦ । ଚେତ ଧର । ଚରଣୁ ବହୁଛି ସୁଧା ଧାର । ୩ । ଛଇଳ ନଟ ନାଗର ଅନନ୍ତ ମୂରତି । ଛପନ କୋଟି ଜୀବରେ ସେ ପୂରି ରହିଛନ୍ତି । ଜ୍ୟୋତିର୍ମୟ । ଯୋଗ ପଥେ କର ତାଙ୍କୁ ଲୟ ।୪। ଝଲରୂପ ବବଜନ୍ତ କ ଦେବ ଉପମା । ଝଳ ଶ୍ରୀମୁଖ ଦିଶଇ ଯେସନେ ଚନ୍ଦ୍ରମା । ଲକ୍ଷ ନାହିଁ । ନର ଅଙ୍ଗେ ବିଜେ ଗୁବଗାସ୍ତି । ୫ । ଟାଣ ଶୂନ୍ୟ ବାନା ଉଡେ କଣ୍ଠ ରବ ଚଳେ । ଟୈକଛନ୍ତି ତଉବାଦ୍ୟ ଭକତଙ୍କ ଛଳେ । ଠିକେ ଧର । ଠକ ମଧ୍ୟ ସେ ପାତେ କଙ୍କର । ୬ ।

(ଖ) ଡୋଳେ ଦେଖ ବଳଯଙ୍ଗ ଅନାଦି ଜଗପ୍ରାଣ । ଉର ଭୟ ଗୁଡ଼ି ପଦ୍ମପାଦେ କର ଆଶ । ଢଳିପିବ । ଢାଳିରଙ୍ଗ କେତେ କାଳ ଥିବ । ୭ । ଅଜପା ନିର୍ବେଦ ସାଧି ଅବନୀ ମଣ୍ଡଳେ । ଅଲେଖ ମହିମା ବ୍ରହ୍ମ ବିଜେ ଭବ ତଳେ । ତତ୍ତ୍ୱ କର । ତ୍ରିଭୁବନ ତ୍ରୈଲୋକ ଠାକୁର । ୮ । ଥିତ ନୁହେଁ ଅଥିତ ଅରୂପ ଅନହତ । ଥାଏ ଯା'ର ନ ପାଇଲେ କେହୁ ଆଦି ଅନ୍ତ । ଦୂର ନୋହେ । ଦିବାନିଶି ଯା ଆଜ୍ଞାରେ ଥୁଏ ॥ ଧରଣୀରେ ଧର୍ମ ସ୍ଥାପି ଦେଲେ ଆଦିମୂଳ । ଧର ଧର ବୋଲି ଧର୍ମ ଯାଚନ୍ତି ଅଖିଳ । ନଦା ସ୍ଫୁର୍ତ୍ତି । ନିଜ ଅଙ୍ଗେ ସର୍ବ ସମ୍ଭୁଛନ୍ତି । ୧୦ । ପରମ ପୁରୁଷ ସ୍ୱାମୀ ବୁଦ୍ଧ ଅବତାର । ପ୍ରତ୍ୟକ୍ଷରେ ଦେଖି ନେଇ ପାପ କର ଦୂର । ଫଣୀଧର । ଫୁଲ୍ଲୁଣାରେ ସେବ ଯା ପୟର । ୧୧ । ବ୍ରହ୍ମା ହରିହର ଯାର

Digitized by srujanika@gmail.com

ଚରଣେ ସେବନ୍ତ । ହେଜେ କଲେ ଅବମାନ ଅବଧୂତ ମୂର୍ତ୍ତି । ଭାଗ୍ୟ ବଳେ । ଭାବେ ମଧୁ ସେ ପାଦ କମଳେ । ୧୨ ।

(ମ) ମହିମା ପ୍ରକାଶ କରି ଏ ମର୍ତ୍ତ୍ୟ ମଣ୍ଡଳେ । ମ୍ଳେଚ୍ଛ ପାପୀ ଛାରି ଧର୍ମ ସ୍ଥାପିଲେ ଶମ୍ଭଳେ । ଜୀବଦାତା । ଜନ୍ମ ଯୋଗୀ ଜଗତ କରତା । ରୂପବନ୍ତ ନୁହେଁ ସେହି ଅରୂପ ବହାରି । ରଖିଲେ ଭାରତ ଭୂମ୍ନା ଧର୍ମକୁ ବିସ୍ତାରି, ଲକ୍ଷ୍ଯ କରି । ଲବଧା ଭକ୍ତିରୁ ପାଶା ସାରି ।୧୪। ବୁଦ୍ଧି ନ ଦଉଇ ପଥ ବହୁତ ଦୁର୍ଗମ । ବାଞ୍ଛା କଳ୍ପତରୁ ମନ ବାଞ୍ଛା କରି ପୂର୍ଣ୍ଣ । ଶ୍ରୀ ଆଜ୍ଞାରେ । ସତ୍ୟଧର୍ମ ସ୍ଥାପିଲେ ସଂସାରେ ॥ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ନିବୃର ହଇଲେକ । ଶରଣ ପାଦ କମଳେ ରଖ ବା ନ ରଖ । ଶୂନ୍ୟବାସୀ । ଶୋଳହତରେ ଜୀବ ଗଲ ଭାସି । ଦା ଶବଦରେ ହଜ ଯାଉଅଛୁ ଜୀବ । ହୃଦ ପଦ୍ମେ ଜାଣି ସ୍ୱାମୀ ଦୟା ରଖିଥିବ । କ୍ଷମା ସିନ୍ଧୁ । କ୍ଷମେ ଭଣେ ଅରକ୍ଷିତ ମଧୁ । ୧୭ ।

—୦—

## (ଭକ୍ତ ସୁଦର୍ଶନଙ୍କର)

### ( ୭୩ )

(କ) କଥାଏ କହୁଛୁ ମୁହିଁ କାୟା ଦେହ ତୋର ରହିବ ନାହିଁ । ସୁମନରେ । କାଳେ ଦେବେଟି ଜଳାଇ । କ୍ଷିତିରେ ଜନମ ହୋଇ, କ୍ଷମେ ସାଧୁ ସଙ୍ଗେ ବସିଲୁ ନାହିଁ । ସୁମନରେ । ଖେଳ ଘରେ ହେଲୁ ବାଇ । ୨ । ଗରବ ନକର ଚିତ୍ତେ, ଗନ୍ଧ ଲୋକମାନ ଦେଖିଛୁ ଯେତେ । ସୁମନରେ । ଟେଣ୍ଟି ବାନ୍ଧି ନେଲେ କେତେ ॥ ଘୋଟିଅଛୁ କାଳ ସର୍ପ, ଘରୁ ଘେନ ଯିବେ ଶମନ ନୃପ । ସୁମନରେ ଘଡ଼କେ ଭାଙ୍ଗିବେ ଦର୍ପ, ।୪। ଙ୍ଗଦେ ଥାଉଁ ଥାଉଁ ଅନା, ଈସ୍ତ ହେଲେ ହିନ ହୋଇବୁ ବଣା । ସୁମନରେ । ଅଜାମିଳା ପାଦେ ଜଣା । ୫ । ଚ୍ଛନ୍ନି ଚ୍ଛନ୍ନି ଜୀବ ଯିବ, ଯୌବନ ବୟସ ବୃଥା ହେବ । ସୁମନରେ । ଚିନ୍ତାମଣି ଚିତ୍ତେ ଭାବ ॥ ଛନ ଛେଳ ଛାଡ଼ ମନା, ଛାଡ଼ିବେ କ୍ଷଣକେ ପୁତ୍ର ଭାର୍ଯ୍ୟା । ସୁମନରେ । ଗୁପ୍ତ ବୃନ୍ଦାବନ ଯା, ଯା ॥ ଜଳୁଛୁ

Digitized by srujanika@gmail.com

ଶୂନ୍ୟରେ ଜ୍ୟୋତି, ଯତନେ ଚର୍ଚ୍ଚିକ ବଳାଅ ମତି । ସୁମନରେ । ଯେବେ ପାଇବୁ ସୁଗତି । ୮ । ଝରୁଛି ଶୂନ୍ୟ ରେ ଝର ଝର, ମୁଣ୍ଡେ ବସି ପିଅନ୍ତୁ ହର । ସୁମନରେ । ଝସାଇ ପଣ ସେଠାର । ୯ । ନିଷ୍ଟସ୍ୱେ କହୁଛି ମୂର୍ତ୍ତି, ନାଶ ଗଲେ ଦେହ ଛୁଇଁବେ ନାହିଁ । ସୁମ-ନରେ । ନାମଟି ଅଲେଖ ବାଇ । ୧୦ । ଟେକ ସ୍କନ୍ଧା ସପ୍ତ ଦଳ, ଟାକ ବସିଥିବୁ ସଙ୍କୁନ ନାଳ । ସୁମନରେ । ଟାଳିବୁ ଯେମନ୍ତେ କାଳ ॥ ଠିକଣାରେ ଧର ଭୃଙ୍ଗ, ଠୂଳ ଖସିଗଲେ ରହିବୁ ନାହିଁ । ସୁମନରେ । ଠିକେ ସୁଦର୍ଶନ କହ୍ନ । ୧୨ ।

(ଡ) ଡୋଳାରେ ଡୋଳା ମିଶାଇ, ଡୋଳା ଟେକ ସ୍କନ୍ଧ ସହାସ ଭୂଇଁ । ସୁମନରେ । ଡର ତ ରହିବ ନାହିଁ । ୧୩ । ଯମଗଣ ଛୁଡ଼ିପିବ, ଡାକୁଣୀ ଯୋଡ଼ାଇ ରହିଛି ଜୀବ । ସୁମନରେ । ଜାଳିଲେ ପ୍ରମାଦ ହେବ ॥ ଅନାହତପୁରେ ସ୍ଥିତି, ଅନାହ ଯନ୍ତ୍ରରେ ହୋଇଛି ଶକ୍ତି । ସୁମନରେ । ଏକଅଙ୍ଗ ଷଡ଼ମୂର୍ତ୍ତି । ୧୫ । ତୁ ତୋତେ ଚିହ୍ନି ପାରିଲେ, ସ୍ୱପ୍ନ ତାପ ତୋତେ ନ ଲାଗେ ଭଲେ । ସୁମନରେ । ତତ୍ତ୍ୱ ତାରକେ ଘୋଷିଲେ ॥ ଥିବକ ଏ ହେଉଛି ତୋର, ଝରିବେ ଦେଖିଲେ ଯମ ଡଗର । ସୁମନରେ । ସ୍ଥାନ ଥାଉ ସ୍ଥାନ କର । ଦଗ୍ଧ ପଟଳେ ପଡ଼ି, ଘନବନ୍ଧୁ ପାଦପଦ୍ମକୁ ଛାଡ଼ି । ସୁମନରେ । ଦାରସୁତ ସ୍ନେହେ ଜଡ଼ି ॥ ଧରି ଯେନୁ ତୋ ମନରେ, ଧରି ଜପୁଥା ଅଜପା ମନ୍ତ୍ରରେ । ସୁମନରେ । ଧ୍ୟାନ ତୋ ଧୂନ ଦୁଆରେ ॥ ନର ଦେହେ ନୁହେଁ ଥିର, ନିଦାନ କାଳେ ତେଜିବେ ଭ୍ରମର । ସୁମନରେ । ନ ଯିବେ କେହି ସଙ୍ଗର । ୨୦ । ପାରିଲେ ଘରତେ ହୁଅ, ପରାପର ବୁଦ୍ଧି ହୃଦରୁ ଥୁଅ । ସୁମନରେ । ପଦ୍ମ ମକରନ୍ଦ ପିଅ । ୨୧ । ମୁକା ବନ୍ଧକର ଆଣ, ଫିଟିଲେ ସରିବ ତୋର ମୂରଚ୍ଛ । ସୁମନରେ । ଫେଡ଼ିବେ ଅଶେଷ କଷ୍ଟ । ୨୨ । ବଟ ମୂଳେ ହାଟ ସ୍ଥାନ, ବାଢ଼ିଛନ୍ତି ନାନା ପସରା ମାନ । ସୁମନରେ । ବେନି ଧାଡ଼ି ହୋଇ ଜାଣ ।୨୩।

Digitized by srujanika@gmail.com

ଭାବ ଭଜ ଭଗବାନ, ଭାବ ନ ପାଇଲ ସୁଦରଶନ । ସୁମନରେ ।
ଭକତ ପ୍ରାନ ଦୁର୍ଜନ । ୨୪ ।

(ମ) ମଳ ମଳ ବୋଲି ଜପ, ମରନାହିଁ ବୃଲିଗଲି ଗାବନ ସୁମନରେ । ମିଳ ପରମ ସଙ୍ଗେଣ । ୨୫ । ଜ୍ୟୋତିକୁ ଜାଳି ଲୁ ଦେଖ, ଯହିଁ ପଞ୍ଚଆତ୍ମା ଦ୍ୱଅନ୍ତ ଠିକ । ସୁମନରେ । ଜାଣି ଭଜିଲେ ଗୋରେଖ ॥ ରାଧା ଅଙ୍ଗ ଜୀବ ବନ୍ଧୁ, ରାଧିକା କାନ୍ତ ପରମ ଅଟଇ । ସୁମନରେ । ଦ୍ୱିତ ଥିବା ତାଙ୍କ ନାହିଁ । ୨୭ । ଲହରିକ କର ଓଣା, ଲହରି ଜଳେ ଭୁ ନୋହିବୁ ବଣା । ସୁମନରେ । ଲେଉଟି ପଶ୍ଚିମେ ଅନା । ୨୮ । ବଙ୍କୁନାଳେ କର ଠଣା । ବାନ୍ଧି ଘାଟରେ ନୋହିବୁ ଓଣା । ସୁମନରେ । ବିବେକ ବୁଦ୍ଧି ରେ ମିନା । ୨୯ । ଫଣସୁ ମନେ ନକର, ସଚ୍ଚିଦାନନ୍ଦଙ୍କୁ ଆଶ୍ରୟ କର । ସୁମନରେ । ସର୍ପଟି ହାଟ ଦୁଆର ॥ ଶିବ ବ୍ରହ୍ମାଦି ଇନ୍ଦ୍ରାଦି, ମୋ ସ୍ଥାନରେ ସବେ ହୋଇଲେ ହାଢ । ସୁମନରେ । ଶକ୍ତି ଲହିଛୁ ଅନ୍ତାଦି । ସବୁଆ ମନ ଯାହାର ସେ ହାଟେ ସେପାରେ ବେପାର କର । ସୁମନରେ । ସବୁ କଣେ ହରି ହରି ॥ ହୃଦେ ପ୍ରଭୁ ନାମ ରଟ, ହରଷ ଚିତ୍ତରେ ଚରଣେ ଖଟ । ସୁମନରେ । ହତ ହୋଇଯାଉ କଷ୍ଟ । ୩୩ । କ୍ଷୋଭ ସମୁଦ୍ରରେ ପଡ଼ି, ସ୍ଥିର ସୁଦର୍ଶନ ମରୁଛୁ ବୁଡ଼ି । ସୁମନରେ । ସ୍ୱାମୀ ନାମ ହୃଦେ ଘୁଡ଼ି ॥

—୦—

## (ଭକ୍ତ ପ୍ରେମାନନ୍ଦଙ୍କର)

## ( ୭୪ )

(କ) କହୁଛିରେ ମୂର୍ଖ ବାଇ ମୂର୍ଖେ ନାମ ରଟ । କଳି କଲୁଷ ପାତକ ରେ ବଢ଼ିଲ । ନଷ୍ଟ ହୋଇବଟି କାଟ ରେ ॥ ଖେଳଘର ଅଟଇ ଯେ ଏ ମାୟା ସଂସାର । ଖେଳ ଆସି ସରିଗଲେ ରେ ବଢ଼ିଲ । କେହି ନୋହିବେ କାହାର ରେ । ଗହନ ବନରେ ଭ୍ରମି ବ୍ୟର୍ଥ ହୋଇଲୁ, ଗୁରୁ ପଦାମ୍ବୁଜ ଛାଡ଼ିରେ, ବଉଳ । ବୃଦ୍ଧାବରେ ପଡ଼ିଲୁ ରେ । ୩ । ଘରଦ୍ୱାର ବନ୍ଧୁ ଭାର୍ଯ୍ୟା ବୋଲୁ ମୋର ନିତ ॥

Digitized by srujanika@gmail.com

ଘଟୁ ପ୍ରାଣ ଗୁଡ଼ଲେ ରେ, ବଉଳ । କେହି ନ ଯିବେ ତୋ ସାଥୀ ରେ । ୪ । ଅନ୍ଧ ରୂପ ବୋଲି ଫିଙ୍ଗି ରୂପଟି ଅଟଇ । ଅଡ଼ନଣି ମାତ ହେଲେ ରେ, ବଉଳ । ଅଳପକେ କ୍ଷୟ ଯାଇ ରେ । ୫ । ଚନ୍ଦ୍ର ପ୍ରୀତ ଯେଉଁ ବନ ପଦ୍ମ ଫୁଟିଥିବ । ଚଳାଇବ ତେବେ ମନ ରେ, ବଉଳ । ଗୁହ ଅମ୍ବର ରହିବ ରେ ॥ ଛନ୍ଦ ହୋଇ ମଲା ପଦ୍ମ ପୁଷ୍ପରେ ଭ୍ରମର ଛନ୍ଦ ବନ୍ଧ ହୋଇ ମଲ୍ଲ ରେ ବଉଳ । ମୂର୍ଖ ପ୍ରେମାନନ୍ଦ ଗୁର ରେ । ଜହର ଅମୃତ ଏକାପାଶେ ଅଛି ରହି । ଜାଣି ଅମୃତକୁ ଗୁଡ଼ରେ ବଉଳ । ବଷ ରଖିଅଛୁ ଭୁଞ୍ଜିବରେ ॥ ଝଟକ ବଜୁଳ ପ୍ରାୟ ପ୍ରାଣ ଗୁଡ଼ଗଲେ । ଝାଡ଼ିକାରେ ସବୁ ନେଇ ରେ, ବଉଳ । ନଦୀ ଘରେ ଦେବେ ଚଳେ ରେ ॥ ନାହିଁକ ତୋ ଚଉ ଶଙ୍କା ଏହି କଥାମାନ । ନମି ଗୁରୁ ପାଦପଦ୍ମ ରେ, ବଉଳ । ଏବେ ପଣ ଯା ଶରଣରେ ॥ ଝଳଗଲେ ପିଣ୍ଡ ହାଡ଼ ମାଂସ ଜଉଯିବ । ଟେକ ହେଉଥିଲା କଥା ରେ ବଉଳ । ସେହି ବନରୁ ସଉବ ରେ ॥ ଠକ ଗଲୁ ବୋଲି ମାତା କାନ୍ଦୁଥିବ ନିତି । ଠିକେ କହେ ପ୍ରେମାନନ୍ଦ ରେ, ବଉଳ । ଗୁତ ହେଉଛୁ କରତ ରେ ॥

(ଡ) ଡାଳକୁ ଧରିଛୁ ମନ ମୂଳକୁ ଗୁଡ଼ଣ । ଡାଳ ବୋଲି ଯାହା କହିରେ, ବଉଳ । ମାୟା ମଦଟି ପ୍ରମାଣରେ ॥ ଢାଳ କରିଥିବୁ ମୂଳ ଅଟେ ପ୍ରଭୁ ନାମ । ଢଳିଗଲେ ପିଣ୍ଡ ପ୍ରାଣରେ, ବଉଳ । ଶ୍ରୀଅଙ୍ଗରେ ହେବୁ ଲୀନ ରେ । ଅନ୍ତମୁଖେ ନ ପଡ଼ିବୁ ରଖିଥିଲେ ସତ୍ୟ । ଅନ୍ତ ବୋଲି ଯାହା କହିରେ, ବଉଳ । ଯମଦ୍ୱାରଟି ବଦତ ରେ । ତୁ ବଦ୍ଧରୁ ଘରଦ୍ୱାର ବନ୍ଧୁ ଭାର୍ଯ୍ୟା ମୋର । ତୋହ ଥାଇଁ ଭାର୍ଯ୍ୟା ପୁଣିରେ, ବଉଳ । ଲୁଣ ପ୍ରୀତି କରେ ପର ରେ । ୬। ଥିଲୁ ଯେତେ ବେଳେ ବାବୁ ମାତା ଗର୍ଭେ ତୁହି । ଥୟ ନ ଲଭିଲି ଏବେ ରେ ବଉଳ । ଗର୍ଭ ଖସିଣ ଏ ମର୍ତ୍ତ୍ୟରେ ॥ ଦେଖୁ ଦେଖୁ ଅବଶ୍ୟରେ ଏହି ଜୀବ ଯିବ । ଦାନ ଧ୍ୟାନ ସାଧୁ ସଙ୍ଗରେ ବଉଳ । ଏହି ମାନବ

Digitized by srujanika@gmail.com

ରହିବରେ ॥ ଧନ ଜନସମ୍ପଦ ଏ ନଶ୍ୱର ଜାଣ । ଧିକାର ଧିକାର ତାହାରେ, ବଉଳ । ତା'ଇଆ ପ୍ରେମା ନେହୁଁ ରେ ॥ ଦାସ୍ୟ ଯୋଗୁଁ ସେତ ମଲ୍ଲ ଲଙ୍କାର ରାବଣ । ମୋ ମନ ଗୁଣ୍ଡିଚାଘର ରେ, ବଉଳ ଉଚ୍ଚରେ କର ଗମନ ରେ । ୨୦ । ପ୍ରକାଶ କରଣ ଉଚ୍ଚ ମାଳ ସ୍ୱର୍ଗ ଜାଳ । ପଞ୍ଚ ମନ ସ୍ଥିର କରନ୍ତରେ, ବଉଳ । ପ୍ରଭୁ ନାମ ଆଶ୍ରେ କର ରେ । ୨୧ । ପୃଥିଅନ୍ଥି ଫଳ ଝଡ଼ିବ ଜନ୍ତୁଗଣେ । ଫଳ ମଧ୍ୟ ଝଡ଼ି ଯିବରେ, ବଉଳ ॥ ନ ଭଜନ୍ତେ ପ୍ରଭୁ ନାମରେ ।୨୨। ବାରବ୍ରତ କୋଟି ତୀର୍ଥ ଗଙ୍ଗା ଗୟା ଆଦି । ବିଷ୍ଣୁଗୁରୁ ପାଦଗତ ରେ, ବଉଳ । ସବୁ ରହିଅଛି ଭେଦରେ । ୨୩ । ଭ୍ରମ ଜୋତ୍ସ୍ନା ନୁହଇ ସେ ନ ହେବ ସେ ବୋଲ୍ଲ । ଭଣି ପ୍ରେମାନନ୍ଦ ଦାସରେ, ବଉଳ । ଶୂନ୍ୟବାସୀ କର ସାଙ୍ଗ । ୨୪ ।

(ମ) ମତ ଗଜକୁ ଅଙ୍କୁଶ ଘେନି ଲଗାଇବୁ । ମାନ ସୂକ୍ଷ୍ମରେ ଚଳିବୁ ରେ, ବଉଳ । ଚିତ୍ତ ମୁକ୍ତ ଲଭିବୁ ରେ । ୨୫ । ଜାଣୁ ନା କି ଯେତେ ଲୋକ ଗଲେ ଦେହ ବହି । ତେଜେ ଧନ ଦ୍ରବ୍ୟ ଥିଲ ରେ, ବଉଳ । ସଙ୍ଗେ ନ ନେଲେ ତ କେହିରେ । ୨୬ । ରାବଣ ସାହାକୁ ଜନ୍ମ ସାଗ ଅଷ୍ଟ ଯେତ । ସଗତମ ବଂଶ ନାଶ କଲେରେ, ବଉଳ । କୁମ୍ଭୀ ନର୍କ ପରପତରେ ॥ ନାନ୍ଦ ଚତ ଦୁଅ ଭକ୍ତ ଆଉ ଟେକ ନୁହ । ଲହରି ଘାତରେ ଯିବୁରେ, ବଉଳ । ଅକାରଣ ହେବ ଦେହରେ । ୨୮ । ବିଧାତା କରତା ଭାଇବନ୍ଧୁ ପିତାମାତା । ବନ୍ଧୁ ସୋଦର ଇତ୍ୟାଦି ରେ, ବଉଳ । ପ୍ରଭୁ ଅନ୍ତେ ସର୍ବଥା ରେ । ୨୯ । ଶ୍ରୀ ପଦ ପଙ୍କଜ ଆଶ୍ରେ କର ନିତ । ଶୀଘ୍ରେ ପାପ ହତ ହେବ ରେ, ବଉଳ । ଲୟ କଲେ ଶୂନ୍ୟ ମୂର୍ତ୍ତିରେ । ୩୦ । ସାଧୁ ସଜ୍ଜନ ସଙ୍ଗେ ବସି କର ଗାନ । ଶରଣ ପଞ୍ଜର ବାନାରେ, ବଉଳ । ହେଉ ଇଚ୍ଛା ଉଦଯନରେ । ୩୧ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏହାର ହୃଦୁ ଜାତ । ସରଣ ମଣିଚନ୍ଦ୍ର ତହିଁରେ, ବଉଳ । ସ୍ୱର୍ଗ ସ୍ଥାନ

Digitized by srujanika@gmail.com

ପଗପଗରେ । ୩୨ । ହେତୁକରି ଦୃଢ଼ ବନ୍ଧେ ସେତୁ ଧରିଥିବ । ହଜାର ଯମ ଯେ ହେଲେ ରେ, ବଉଳ । ତାକୁ ନେଇ ନ ପାରିବ ରେ । ୩୩ । କ୍ଷୟ ସେ ନୁହନ୍ତି ପ୍ରଭୁ ଅକ୍ଷୟ ପୁରୁଷ । କହେ ପ୍ରେମାନନ୍ଦ ଧ୍ୟାନ ରେ, ବଉଳ । ପ୍ରଭୁ ପାଦେ କରି ଆଶରେ । ୩୪ ।



( ୬୫ )

## (ସିଦ୍ଧସାଧୁ ରାମାନନ୍ଦ ବାବାଙ୍କର)

ତତ୍ତ୍ୱାୟୁ ନାମ ରୂପାଣି, ନିତ୍ୟବ୍ରହ୍ମଣି ନିଶ୍ଚଳେ ।
ପରିନିଷ୍ଠ ଭକ୍ତ୍ୟୋ ଯଃ, ସ ମୁକ୍ତୋ ନାତ୍ର ସଂଶୟଃ ॥
କର୍ଣ୍ଣୌ ପାଦଯୁକ୍ତେ ଦ୍ୱାରେ, ତପୋଗ୍ନୌନେଃତ୍ର ଦୁସ୍ତରେ ।
ନିସ୍ତାର ବୀଜମନ୍ତ୍ରୋବକ୍ତ୍ର, ବ୍ରହ୍ମ ମନ୍ତ୍ରସ୍ୟ ସାଧନମ୍ ॥

( ରାଗ—ରାମକେରୀ )

(କ) କର୍ଣ୍ଣ ମନ ସ୍ଥିର କରି ଶୁଣ ହେ ସୁଜ୍ଞଜନ । କହୁଅଛୁ ବଦ୍ଧ ଜୀବର ଏକ ମୋକ୍ଷ ନିଦାନ ।୧। କର ଭକତି ଶ୍ରୀ ଅଲକ୍ଷ ବ୍ରହ୍ମ ନିରଞ୍ଜନକୁ । କର ନିଗମନ [illegible]ଣି ଅନ୍ତ ଚକ୍ଷୁସ୍ଥସ୍ୱକୁ । ୨ । ଖଳ ଛନ୍ଦ ବାଦ, କୁତର୍କ, ପିଶୁନ, ଶଠ, ବ୍ୟାଜ । କ୍ଷୁଦ୍ର, ବୁଦ୍ଧି ପାଷାଣ୍ଡ ମତ ମନ୍ଦ ଭାବକୁ ତେଜ ।୩। ଖେମ ମଣ୍ଡଳରେ ଜନମ ହୋଇଛୁ ଭାଗ୍ୟ-ବଳେ । ଷୀବର୍ଣ୍ଣିବ ବାର୍ଯା ପ୍ରଭୁଙ୍କ ଆଶ୍ରା କର ସକଳେ । ୪ । ଗରବ ଗଞ୍ଜନ, ଦାମ୍ଭିକ, କୌଟିଲ୍ୟାଦି ଦୁର୍ବୁଦ୍ଧି । ଗରିଷ୍ଠ ଗୁଣ, ରଜ, ତମ ଦୂର କର ତଡ଼ିତ । ୫ । ଗୁଣ ଲୁଗ୍ନ ନାମ ଉପାଧି, ଜପ ରୂପେ ବଳଗ । ଗୁରୁଜ୍ଞାନ ଉପଦେଶରେ ଦୃଢ଼େ ତାହାଙ୍କୁ ଭଜ । ୬ । ଘନ ତମସା ପ୍ରାପ୍ତ କାଳ, ମାୟା ବ୍ୟାପି ଜଗତ । ଘଟେ ଘଟେ ପଶି ସଦ୍‌ଜ୍ଞାନ, ବୁଦ୍ଧି କରୁଛି ହତ । ୭ । ଘୋଷ ନିରତେ ବ୍ରହ୍ମ ମନ୍ତ୍ର ତତ୍ତ୍ୱ

Digitized by srujanika@gmail.com

ମଣ୍ଡ ଲଗାଇ । ଘୁଞ୍ଚ ପଳାଇ ଯିବ କାଳ ମାୟା ପ୍ରଣାମ ଦେଇ ।୮। ଙନମନ୍ତ୍ର ନୁହ କଦାଚ ସଂସାରୈଶ୍ଵର୍ଯ୍ୟ ଭୋଗେ । ଙରଗ ହର ପ୍ରେମ ତଥା ଦୁଷ୍ଟ କାଳ ଉଦ୍‌ଭୋଗେ । ୯ । ଙଲ୍ଲାସ କର ହୃଦପଦ୍ମ ବ୍ରହ୍ମ ଭକ୍ତିରେ ରସ । ଙପୂର୍ଣ୍ଣ ହେଉ ଜ୍ଞାନ ଜ୍ୟୋତି, ଭସ୍ମ ହୋଇବ ନାଶ ।୧୦। ଚଞ୍ଚଳା ସମ ଧନ ଜନ, ଯଉବନ ଆୟୁଷ । ଚାତୁର୍ଯ୍ୟ ପଣରେ ହରଣ, କରେ କାଳ ପୁରୁଷ । ୧୧ । ଚଞ୍ଚଳ ନ କର ଚିତ୍ତକୁ ସୃଷ୍ଟି ର ଭବେ ଭସ । ଚିଦାନନ୍ଦ ପରଂବ୍ରହ୍ମରେ ଚିତ୍ତ କର ଛନ୍ୟାସ । ୧୨ । ଛଉନଟ୍ୟ କରୁଅଛନ୍ତି କାଳମାୟା ନରତେ । ଛନ୍ଦ ନିର୍ଭଙ୍ଗି, ହିଗୁଣରେ ସୃଷ୍ଟି ରଖି ଆସ୍ଥତେ । ୧୩ । ଛାଡ଼ ଛାଡ଼ ସର୍ବେ ସଂସାର ଲୋଭ ମୋହ ବାସନା । ଛଉିଂଶ ତତ୍ତ୍ୱ ପତିଙ୍କୁ ହୃଦେ କରି ଭଜନା । ୧୪ । ଜଳରେ କଣ୍ଟକ ଯେସନ ଅଟଇ ଦଳ-ମାନ । ଜୀବାତ୍ମାକୁ ଜଞ୍ଜାଳ ନାନା ବଧ ବୋଲ ତେସନ । ୧୫ । ଯମ ବାହ୍ୟାନ୍ତର ଇନ୍ଦ୍ରିୟ, ପ୍ରକୃତି ପଞ୍ଚବଂଶ । ଜାଗ୍ରତବସ୍ଥାର ତୂର୍ଯ୍ୟରେ ନେଇ ଆତ୍ମା ନବେଶ । ୧୬ । ଝସାଇ ନ ପଶ ସଂସାର କର୍ମ ଜାଲର ଫାନ୍ଦେ । ଝଟତ ଧରି ଗ୍ରାସିବାକୁ କାଳ ଜଗିଛୁ ବାଦେ ।୧୭। ଝଟକୁଛି ପ୍ରଭ ଯାହାର ନଖିଳ ଭୁତାନ୍ତରେ । ଝିମିଟେ ହେଲା ଯେ ନ କରି ରଖ ତାଙ୍କ ଧ୍ୟାନରେ ॥ ନଶି ଦିବା ଜଗତେ କାଳଚକ୍ର ଫେରୁ ଅଛଇ । ନଧିତ କର୍ମ ଯେହୁ କରେ, ତାକୁ ପ୍ରାଣେ ନାଶଇ ।୯ । ନଂଯୋଜିତ ଦୁଃଖ ନରତେ ଜୀବ ମୋକ୍ଷ, ଧରମେ । ନରବଦ୍ୟ ବ୍ରହ୍ମଙ୍କୁ ଭକ୍ତି କର ନତିଧ୍ୟାସନେ । ୨୦ । ଟଳଲେ ଦେହ ଦୁଃଖ ରୋଗ ଦେଖିକୁ ଚରମରେ । ଟଳ ନୁହଁ ଏଷଣା ଛନ୍ଦ ଅସ୍ଥାୟୀ ଆନନ୍ଦରେ । ୨୧ । ଟଙ୍କଧର ଯାହାଙ୍କୁ ଧ୍ୟାନେ ଧ୍ୟାଇ ଛେଦିଲେ ପାପ । ଟାଣେ ଆଶ୍ରୟ କର ତାଙ୍କୁ ଜୀବ ହୋଇବ ମୁକ୍ତ । ୨୨ । ଠାପୁଆ ବୁଦ୍ଧି ନ ଧର ହେ, ଏହି ମର୍ତ୍ତ୍ୟେ ଜନମି । ଠକପଣ କଲେ ମନରେ ପଛେ ହୋଇବ ହାନ । ୨୩ । ଠାକୁର ଅଟନ୍ତି ସକଳ

Digitized by srujanika@gmail.com

ଜୀବ ଉପରେ ଯେତୁ । ଠିକଣାରେ ଭକ୍ତି କର ହେ, ଭବୁ ତାରିବେ ସେତୁ । ୨୪ ।

(ଡ) ଉଗର ମରୁଛୁ ଧରଣ କାଳ ବିକଟ ରୂପ । ଡାକ-ହାକ ଦେଇ ଭକ୍ଷୁଛି ତିନ ଭୁବନ ଲୋକ । ୨୫ । ଉର ନାହିଁ ଦେଖି ଧମକ, ରୂପ ଚମକ ତାର । ତାକୁ ଡରେ ପରଂ ବ୍ରହ୍ମଙ୍କୁ ଭଜ ହେବ ନିବାର । ୨୬ । ଡିମ ଡିମାଳିଆ ମାୟା ଯେ ଶିବପଟ ଦେଖାଇ । ଡୋଳୁଛି ମରମ ଧନକୁ ମୋହ ବାଣ ଲଗାଇ । ୨୭ । ଡିଲା ନପଡ଼ ହେ ମୋହରେ ଦେଖି କାଳ ପ୍ରଭାକୁ । ଡାକି ରଖ ବ୍ରହ୍ମ କବଚେ ଦେହ ଜୀବ ଧନକୁ । ୨୮ । ଅନ୍ଧକାର ପଣେ ମାତୁଛି ଜୀବ ସଙ୍ଗତେ କାଳ । ଅଧର୍ମ ପଥରେ ଚାଲିଲେ କରେ ସେ ନାରଖାର । ୨୯ । ଆଲୋଚନା କର ବେଦାନ୍ତ-ଧର୍ମ ସାଧୂଙ୍କ ସଙ୍ଗେ । ଅପ୍ରତ୍ୟକ୍ଷ ବ୍ରହ୍ମ ପ୍ରତ୍ୟକ୍ଷ କର ଆତ୍ମାର ଯୋଗେ । ୩୦ । ତରନ୍ତ କରାଇ ଅଛନ୍ତି କାଳ ମାୟା ଜୀବକୁ । ତ୍ରିଗୁଣ ଯନ୍ତ୍ରରେ ପକାଇ ଆନନ୍ଦେ ରଖିବାକୁ ॥ ତରକ ରହ ନିକରଣ, ଶୋଧି ସାବଧାନରେ । ତଳେ କର ଭଜ ବ୍ରହ୍ମକୁ ତତ୍ତ୍ୱ ନିଷ୍ଠି ହୃଦରେ ॥ ଥୟ ହୋଇ ରହୁ ନାହାନ୍ତି କେହି ତିନି ଭୁବନେ । ଥାନମାନ ଛୋଡ଼ି ପଡ଼ନ୍ତି କାଳଚକ୍ର ଦଣ୍ଡନେ ।୩୩। ଥାଉଁ ଥାଉଁ ପିଣ୍ଡେ ପବନ, ଭକ୍ତି କର ସାଧନ । ଥୋଇ ମନକୁ ଜ୍ଞାନ ସ୍ଥିରେ ବ୍ରହ୍ମ ପଣ ଶରଣ । ୩୪ । ଦର୍ପ କାହି ଯେତୁ ମନରେ ସେତୁ କର୍ମ ଅର୍ଜଇ । ଦୁଷ୍ଟ କାଳବନ୍ଧ ହସ୍ତରେ ନାନା ଶାସ୍ତି ବହଇ । ଦୟା କ୍ଷମା ଶାନ୍ତି, ଅହିଂସା ମତ ଉଦାସ ଧର । ଦେହ ବ୍ରହ୍ମରେ ମଜ୍ଜାଇଲେ ନଷ୍ଟେ ହୋଇବ ପାର ॥ ଧନ ନୁହଁ ଜାଣେ ନଶ୍ୱର ବିଷୟରେ ବନ୍ଧୁତ । ଧର ଯୋଜନେ ପଳାଇବେ ଜୀବଙ୍କୁ କାଳ ଦୂତ । ଧର୍ମ ତତ୍ତ୍ୱ ବୁଝି ଧଇର୍ଯ୍ୟ ଚିତ୍ତରେ ଅନୁସର । ଧ୍ୟାନ ଲଗା ଅଣ ସାଧନେ ଶୂନ୍ୟ ଅରୂପ ହର ॥ ନାଶ ମଦମାଂସ ଦ୍ୟୂତରେ ମଦମତ୍ତେ ମଜ୍ଜିଲେ । ନରକରେ ନଷ୍ଟେ ନିବାସ ଘଟରୁ ପ୍ରାଣ ଗଲେ । ୩୯ । ନରଦେହ ସାର ସଂସାରେ

Digitized by srujanika@gmail.com

ନ୍ୟାସ୍ତ ପଥରେ ସ୍ଥଳ । ନମସ୍କାର ନିରଞ୍ଜନଙ୍କୁ ସର୍ବେ ଆଶ୍ରୟ କର । ୪୦ । ପଞ୍ଚଶ ପ୍ରକୃତି ଏଗାର ଇନ୍ଦ୍ରିୟଙ୍କ ସ୍ନେହରେ । ପଡ଼ିଲେ ପ୍ରବେଶ ହୋଇବ ଜନ୍ମ ମୃତ୍ୟୁ ଯୁଗରେ । ୪୧ । ପରିତ୍ୟାଗ କର କୁସଙ୍ଗ କଦାଚର ଯେ ଗୁଣ । ପରମେ ପରତେ ହୁଅସି, ହେବ ଆତ୍ମା କାରଣ । ୪୨ । ଫୁଲବାସ ପ୍ରାପ୍ତ ଅଟଇ ଜାଣ ସଂସାର ଧନ୍ଦା । ଫୁଟି ନ ମର ଫଳ ଲୋଭେ ପଛେ ପାଇବ ଦଗା । ୪୩ । ଫନ୍ଦା କର ସାଧୁ ସଙ୍ଗତେ ଧର୍ମର ଯଶ ଗୁଣ । ଫଣୀ-ଶିଖି-ବାସୀ ପ୍ରତ୍ୟକ୍ଷେ ନିତି କର ଭଜନ । ୪୪ । ବାତୁଳ ପରାୟେ ନ ହୁଅ ଜଗତରେ କୌତୁକେ । ବୁଦ୍ଧ ଭ୍ରଷ୍ଟ ହେଲେ ପଡ଼ିବ କାଳ କରାଳ ମୁଖେ । ୪୫ । ବିବେକ ଧୀର ଆତ୍ମଜ୍ଞାନେ ମତି ସୁଶୀତଳ ରସି । ବସ୍ତୁ-ପତି-ପତିଙ୍କୁ ହୃଦେ ଧ୍ୟାନ କର ନିତ୍ୟେ ବସି । ୪୬ । ଭ୍ରଷ୍ଟାଚାରୀ ନୁହଁ କଦାଚ ଭୂମଣ୍ଡଳେ ଜନମି । ଭ୍ରମିଲେ ଅଜ୍ଞାନେ ସଂସାରେ କାଳ ଦଣ୍ଡିବ ଜାଣି । ୪୭ । ଭକ୍ତି ଚେତନ ଭାବ ଲଗାଅ ସିଦ୍ଧଗଣଙ୍କ ସାଥେ । ଭକ୍ତି କର ବିଶୁଦ୍ଧ ମନେ ପରଂବ୍ରହ୍ମଙ୍କୁ ନିତ୍ୟେ । ୪୮ ।

(ମ) ମନ ଚଞ୍ଚଳରେ ସାଧନ, ସର୍ବ ହୁଏ ଅସାର । ମଣିକୁ କର୍ମରେ ଦେଖିଲ ଯେ, ଦଣ୍ଡେ ଭବ କୁମର । ୪୯ । ମନାଇଁ ଶ୍ରୀ ଗୁରୁଙ୍କ ଆଜ୍ଞା, ମନ ନିଶ୍ଚଳ ରଖ । ମନ ମରତ ଲୟ ଯହିଁ, ହୁଏ ସେହି ସ୍ୱରୂପ । ୫୦ । ଯତନେ ଯେ ସାର ଧରମ, ନ କରିଲେ ପାଳନ । ଯାତନା ଜାଳ ପୁରୁଷର, ହେବ ନିଶ୍ଚୟ ଜାଣ । ୫୧ । ଯଥାର୍ଥ ଅଟେ ଶଯ୍ୟାବସ୍ଥା ଜ୍ଞାନର ଯେ ମଣ୍ଡପ । ଜାଗତେ ରହିଣ ତୂର୍ଯ୍ୟରେ ହୁଅ ତହିଁରେ ଗୋପ୍ୟ । ୫୨ । ରଙ୍ଗ ପସର ଏ ସଂସାର, ରଜ ତାମସ ବୃତ୍ତି । ରସିଲେ ମନ ପ୍ରାଣ ଦେଇ ହୃଦେ ଦୁଃଖ ନିବୃତ୍ତି । ୫୩ । ରତି ହେବା ଦଣ୍ଡେ ନିମିଷେ, କର କୃଷ୍ଣର ଗୀତ । ରହି ସାଧୁ ସଙ୍ଗେ ନିରତେ, ବ୍ରହ୍ମେ ଲଗାଅ ମତି ॥

Digitized by srujanika@gmail.com

ଲୋଭ ମୋହ କାମ କ୍ରୋଧରେ, ମଜାଇଲେ ମନକୁ । ଲୁପ୍ତ ହେବ, ଦେହ ଜୀବନ ଲାଗି ଗଲେ ଧର୍ମକୁ ।୫୬। ଲବ୍ଧ କର ସତ୍ୟ ଶଉଚ, କ୍ଷମା ଦୟା ସନ୍ତୋଷ । ଲଭୁ ଚିତ୍ତେ ଚିଦାନନ୍ଦକୁ, ଭକ୍ତି ଦେଇଣ ତୋଷ । ୫୭। ବନ୍ଧୁ ଏ ଦୁର୍ଲ୍ଲଭ ଶରୀର, ନ କଲେଟି ଭକତି । ବଡ଼ମାପଣରେ ମଜ୍ଜିଲେ ନିଶ୍ଚିତ ଅଧୋଗତି ॥ ବ୍ରହ୍ମଧର୍ମ ବ୍ରତ ପାଳନ କର୍ମ କର ସରବେ । ବ୍ରହ୍ମଙ୍କୁ ଆତ୍ମାରେ ଶରଣ କର ଭକ୍ତି ବିଧେ ।୫୮। ଶକ୍ତି ସନାତନୀ ଗର୍ଭରେ ଅଛୁ ଏକୋଶପୁର । ଶରଣ ରକ୍ଷଣେ ସମର୍ଥ ନାହିଁ ଏମାନଙ୍କର । ୫୯ । ଶରୀର ଇନ୍ଦ୍ରିୟ ନଷ୍ଟକଲେ ମନ ବୁଦ୍ଧିକୁ ରଖି । ଶାଶ୍ୱତେ ଶରଣ ଯାଅ ହେ ସର୍ବ ଲୋକ ସାକ୍ଷୀ ।୬୦। ଷଡ଼ରସ ଭୋଗ ଜାଗ୍ରତେ କର ହେ ଧର୍ମ ରକ୍ଷୀ । ଷଡ଼ରିପୁ ନପଶି ହରୁଛୁ ଆୟୁ କାଳ ବଇରୀ । ୬୧ । ଷଟଚକ୍ର ଷୋଳ ଉମ୍ବରୁ ଭେଦ ଉର୍ଦ୍ଧ୍ୱେ ଗମିଲେ । ଶତ୍ରୁଗଣ ତେବେ ହାରିବେ ଯୋଗାସନେ ରହିଲେ ସର୍ବଦା ସର୍ବସ୍ୱ ଘୋଟିଛି କାଳ ପିଶାଚ ରୂପେ । ସଶଙ୍କ ଦେଖାଇ ମାରୁଛି ପ୍ରାଣୀଙ୍କୁ ଅଦଭୂତେ । ୬୩ । ସର୍ବଦା ବିଷୟ ବାସନା ଚିତ୍ତୁ ରଖ ଦୂରରେ । ସଂଯମି ଇନ୍ଦ୍ରିୟ ପ୍ରକୃତି, ରହ ଆତ୍ମା ଧ୍ୟାନରେ ।୬୪। ହଜାଇ ଇଷ୍ଟ ଧର୍ମ ଧନ ହେୟ କର୍ମେ ମାତିଲେ । ହଠ ଚମ୍ପଟ କରି କାଳ ବାନ୍ଧି ନେବ ହଠରେ ॥ ହୃଦପଦ୍ମେ ହୃଷ୍ଟ ମନରେ ବ୍ରହ୍ମେ ଭକତି କର । ହଟି ପଳାଇ ଯିବ କାଳ, ମାୟା ଯେ ଯାହା ପୂର ।୬୬। କ୍ଷାଳନ କର ଜ୍ଞାନାଗ୍ନିରେ ମନର ଯେ ମାଳିନ୍ୟ । ଷେଧଣ କର ଜୀବାତ୍ମାର ବନ୍ଧ ଯେ କର୍ମମାନ । ୬୮ । ଷେଦଞ୍ଚ ସୁଧାତ୍ମା ଯେ ହୟ, ବ୍ରହ୍ମେ ବିଳୟ ଯେବେ । କ୍ଷମେ ସ୍ୱାନନ୍ଦ ଅବଧୂତ, କହେ ମୋକ୍ଷଟି ତେବେ ।୬୮।

—୦—

Digitized by srujanika@gmail.com

## ସିଦ୍ଧ ସାଧୁ ଅନନ୍ତ ବାବାଙ୍କର

### (୭୭)

(କ) କରୁଣାକର ବାରେ ଗୁରୁ ଅଲେଖ । କାଳୁସ୍ତେ
ଜଣାଉଛୁ ସ୍ଥାନ ନ ରେଖ ହେ । କର ସୁଦୟା । କରେ ରଖାଅ
ହୃଦେ ନ ରଖି ମାୟା ହେ ।୧। ଖଚମ ହେଉଅଛୁ ଏ
କଳିକାଳେ । ଷଦ୍ର ବୁଦ୍ଧିରେ ପଡ଼ି ଅଜ୍ଞାନ ଭୋଳେ ହେ ॥ ଖିଳ
ଗୋସାଇଁ । ଖଣ୍ଡିଣ ଏହ୍ନ ଦୋଷ କଉନ୍ତୁ ସ୍ୱାନ୍ତ ହେ ॥ ଗାରିମା ଶ୍ରବ
ହୃଦେ ବାସ କରିଣ । ଗୌରବ ଶ୍ରବେ ଥୟ ନ ରୁହେ ଜାଣ ଯେ ।
ଗୁରୁ ମହିମା । ଗତ୍ୟନ୍ତର ନ କର ମାଗୁଛୁ କ୍ଷମା ହେ ।୩।
ଘୋଟି ଆସଇ ବେଳୁ ବେଳ ଅଜ୍ଞାନ । ଘାଣ୍ଟି ହେଉଛୁ ହୃଦ କରି
ବିପାର୍ଶ୍ୱ ହେ । ଘୋର ସଂସାରେ । ଘୂମାଇ ଯାଉଅଛୁ ମାୟା
ମୋହରେ ଯେ ।୪। ଅଣଆୟତ ହୋଇ ଭାସୁଛୁ ଜଳେ ।
ଅକୂଳ ଲୋଭ ମାୟା ସିନ୍ଧୁ ଆଥଳେ ହେ । ଅରୂପ ହରି । ଉଦ୍ଧାର
କର ଏଥୁ ସୁଦୟା କରି ଯେ ।୫। ଚିତ୍ତ ଚୈତନ୍ୟ, ଦେଖୁ
ଦେଖୁ ମୋହର । ଭୁଲିଯାଉଛୁ ଦେଖି ଏ ପାରାବାର ଯେ । ଚପଳ
ହୋଇ । ଚଉଦ୍ଦଗକୁ ସାବଧାନ ହୁଅଇ ଯେ ।୬। ଛୁଡ଼ ନ
ପାରି ଏହ୍ନ ମାୟା ସଂସାର । ଛାରଖାର ହେଉଛୁ ପଡ଼ି ଚହିଁର ଯେ ।
ଛନ୍ଦ ଫାଶକୁ । ଛେଦନ କର ଗୁରୁ ବହ୍ନ ଦୟାକୁ ଯେ ।୭। ଜାଣି
ଜାଣି ହାରିଲି ବୁଦ୍ଧି ମୋହର । ଜଞ୍ଜାଳ ଜାଲେ ପଡ଼ିଣ ମୁଁ ନିରନ୍ତର
ଯେ । ଜଗତପତି । ଯଗତେ ଏବେ ରଖ କରେ ଭଜନ୍ତି ହେ ।୮।
ଝୁଙ୍କି ପକାଉଅଛୁ ଏ ମାୟା ମୋହ । ଝିମିଟି ଚଢ଼ ପାରେ ନ
ହୁଏ ଥୟ ଯେ । ଝୋଲ ମାରିଣ । ଝୁଡ଼ ଯାଏ ମୋ ହୃଦୁ
ସୁବୁଦ୍ଧିମାନ ଯେ ।୯। ନରକେ ଶାନ୍ତ ପରେ ଦଗ୍ଧ ହୋଇଣ ।
ନରକ୍ଷ ଜନ ପ୍ରାୟେ ଭ୍ରମୁଛୁ ଜାଣ ହେ । ନ ହୋଇ ସ୍ଥିର । ମାର
ସ୍ରୋତରେ ଭାସିଗଲି ଏଥର ହେ ।୧୦। ଟଳମଳ ଜୀବନ

Digitized by srujanika@gmail.com

ହୋଇଅଛୁ ନଷ୍ଟ । ଝିଙ୍କେ ତବ ପଦୁରେ ନ ରହେ ମନ୍ତ ଯେ । ଝଳ ଯାଉଛୁ । ଝୋପେ ପଡ଼ି ଗ୍ରମୁରେ ଜଣାଉଅଛୁ ଯେ ।୧୧। ଠାକୁର ପାଦପଦ୍ମେ ନ ଦେଇ ମନ । ଠକ ସଙ୍ଗତେ ପଡ଼ି ହେଲୁ ଅଶାନ୍ତ ଯେ ଠଣମୁରତ । ଠିଆ ହୋଇ ଅନନ୍ତ କରଇ ସ୍ତୁତି ହେ । ୧୨ ।

(ଡ) ଡର ମାଡ଼ୁଛି ଦେଖି ମାୟା ସଂସାରେ । ଡରେ ଶରଣ ପଶେ ତବ ପଦ୍ମରେ ଯେ । ଡାକେ ଗୃହିଣୀ । ଡର ଭୟ ମୋହର କର ଛେଦନ ଯେ । ୧୩ । ଢଙ୍ଗ ରଙ୍ଗ ସଂସାର ମୋହେ ଜଡ଼ିତ । ଢଳ ଯାଉଛୁ ଦେଖି ହୋଇ ମୋହିତ । ଢୋକାଇ ମୋହେ । ଢେଜ ବାଣରେ ଗ୍ରସ୍ତେ ଥୟ ନ ହୁଏ ଯେ । ୧୪ । ଅନ୍ତର୍ଯାମୀ କରତା ହୃଦେ ବସ୍ତିର । ଅନୁବ୍ରତ ରଖାଅ କଙ୍କର କର ଯେ । ଅହର୍ନିଶିରେ । ଏହା ମାଗୁଛି କର ଯୋଡ଼ି ଗ୍ରମୁରେ ଯେ । ତତ୍ତ୍ୱପଥ ଦେଖାଅ କର ସୁଦୟା । ତିନ ତୈଲୋକ୍ୟ ନାଥ ନ କର ମାୟା ଯେ । ତୁମେ ମୋହର । ତାରଣ କର୍ତ୍ତା ପିଣ୍ଡ ପ୍ରାଣ ଠାକୁର ଯେ ।୧୬। ଥରକୁ ଥର କାଳ ଦେଖାଏ ଭୟ । ଥର ଥର ଜୀବନ ହୁଏ ଅଥୟ ଯେ । ଥିର ଭାବରେ । ଥୟ କରାଅ ତବ ପାଦ ଯୁଗରେ ଯେ ।୧୭। ଦରିଦ୍ରନାଥ ତୁମେ ଅଟ ଆପଣ । ଦୀନ ଦୁଃଖୀଙ୍କ ଏବେ କର କାରଣ ଯେ । ଦୟା କରଣ । ଦୁଷ୍ଟ ମାୟା ବନ୍ଧନୁ କର ମୋଚନ ଯେ ।୧୮। ଧନ୍ଦ ହୋଇ ଧରମେ ନ ଦେଇ ଚିତ୍ତ । ଧାରଣା ବୁଡ଼ାଉଛି ହୋଇ ମୋହିତ ଯେ । ଧକ୍କା ଦେଇଣ । ଧରିନେଇ ହୃଦରେ ଦିଅ ସୁଜ୍ଞାନ ହେ ।୧୯। ନୟନ ଅଛେ ତୁମ୍ଭେ ଲୀଳା କରୁଛ । ନକର ଅନୁକମ୍ପା କମ୍ପା ନ ଶୁଣୁଛ ହେ । ନରକ ଜୀବେ । ନ ରଖ ହୃଦେ ମାୟା କହୁଛି ଏବେ ଯେ ।୨୦। ମୂର୍ତ୍ତିମାନଦ ପୁରୁଷ ହେ ଅଣାକାର । ପର କରିଲେ ମୁକ୍ତି ହେବ କାହାର ହେ । ପରମବ୍ରହ୍ମ । ପରତେ ଦର ନେଇ ମୋକ୍ଷ ଭୁବନ ହେ । ୨୧ । ଫୁଟାବନ୍ଧ ଉପରେ ବାସ ତୁମ୍ଭର । ଫଳାଫଳ ବସ୍ତିର କର ମୋହର ଯେ । ଫିଙ୍ଗି ନ ଦିଅ । ଫେଡ଼ିଣ

Digitized by srujanika@gmail.com

ସର୍ବ କ୍ଲେଶ ସଙ୍କଟେ ନଅ ହେ । ୨୨ । ବନ୍ଧୁ ଗଣମାନରେ ଗୁଣ୍ଡି ହେଉଛୁ । ବିଷୟ ହ୍ରଦେ ପଡ଼ି ସରିଯାଉଛୁ ହେ । ବୁଦ୍ଧି ବିବେକ । ବଣା ହୋଇ ଗଲ୍ଣି ମୋହର ଦେଖ ହେ ।୨୩। ଭକ୍ତ ବତ୍ସଳ ନାଥ ସୁକୃପା କର । ଭବ ଭୟ ଦୁଃଖରୁ କରନ୍ତୁ ପାର ଯେ । ଘଟେ ଅନନ୍ତ । ଭବେ ଉପୁ ନ ରହୁ ଜଗତ ତାତ ହେ ।୨୪।

(ମ) ମହତ ପୁରୁଷ ତୁମ୍ଭେ ହେ ମହାବ୍ରହ୍ମ । ମହିମା କେ ତୁମ୍ଭର କରେ ବର୍ଣ୍ଣନ ହେ । ମହୀ ଉପର । ମଲେଣି କେତେ କେତେ ବନ୍ଧୁ ଶରୀର ଯେ ॥ ଜାଣିତ ନପାରିଲେ ନିଜ ସ୍ୱରୂପ । ଯତନେ କେତେ ଜ୍ଞାନୀ ଧ୍ୟାନୀ ସେବକ ହେ । ଯଜ୍ଞ ବ୍ରତରେ । ଯାଇଅଛନ୍ତି ଭ୍ରମି ନ ଚିହ୍ନିବାରେ ଯେ ।୨୫। ରଙ୍ଗରସରେ ପଶିକରି ସରବେ । ରହି ନ ଚିହ୍ନି ଭ୍ରମୁଛନ୍ତି ଗରବେ ଯେ । ରସି ରୂପରେ । ରହି ପାରୁଛନ୍ତି ତବ ଭକ୍ତିରେ ଯେ । ୨୬ । ଲକ୍ଷ ଦେବାକୁ ଜନ୍ମୁରେ କେ କାହିଁ । ଲାବଣ୍ୟ କାନ୍ତ ସ୍ୱାମୀ ସେ ଶୂନ୍ୟଦେହୀ ଯେ । ଲଟେ ବିଶ୍ୱେଶ୍ୱ । ଲୟ ଆଶ୍ରିତ ରଖ ଲଳିତ କରି ଯେ ॥ ବିଶ୍ୱବ୍ୟାପକ ତୁମ୍ଭେ ହେ ଅଣାକାର । ବିଜେ କରି ରହିଛ ସଚରାଚର ହେ । ବହୁତ ପରେ । ବ୍ରହ୍ମଜ୍ଞାନୀ ତୁମ୍ଭଙ୍କୁ ଜାଣେ ଅନ୍ତରେ ଯେ । ୨୯ । ସମ ସନ୍ତୋଷ ହୃଦ ହୋଇ ଯେ ଜନ । ସବୁବେଳେ ତୁମ୍ଭଙ୍କୁ କରଇ ଧ୍ୟାନ ହେ । ସାହା ତାହାକୁ । ଶ୍ରୀକରେ ରଖ ନେଇ ବନ୍ଧୁ ଦୟାକୁ ଯେ । ୩୦ । ସଂସାର ସାଗରରେ ହେ ପରଂବ୍ରହ୍ମ । ସାହାପକ୍ଷ ହୋଇଣ କର କାରଣ ଯେ । ଶ୍ରୀଗୁରୁଦେବ । ଶରଣ ମାଗେ ତବ ଶ୍ରୀ ପାଦଯୁଗ ଯେ । ୩୧ । ସଦା ସର୍ବଦା ନେଇ ରଖ ସହସ୍ରଙ୍କ । ଶ୍ରୀମୁଖେ ଜଣାଣ କରୁଛି ଏବେ ଯେ । ସନ୍ତାପ ସ୍ରୋତକୁ । ସନ୍ତରଣ କରିଇବାଅ ସୁହୃଦ୍‌କୁ ଯେ ।୩୨। ହରତା କରତା ତୁମ୍ଭେ ହେ ବିଶ୍ୱେଶ୍ୱର । ହୀନଳଭ ଜଣାଏ ତବ ପୟର ହେ । ହର ଦୁରନ୍ତ । ହଠାହଠ ନ କର ଜଗତ ତାତ ହେ ।୩୩।

Digitized by srujanika@gmail.com

କ୍ଷମା ମାଗୁଛି ମୁହିଁ ପଡ଼ି ସମ୍ମୁଖରେ । କ୍ଷମ ଅପରାଧ ସ୍ୱାମୀ କୃପା ନେତ୍ରରେ ହେ । କ୍ଷମାସାଗର । କ୍ଷମେ ଅନନ୍ତ କହେ କର ଉଦ୍ଧାର ହେ ।୩୪।

—୦—

(୭୭)

(କ) କହୁଅଛି ମନ ଶୁଣ । କର ବ୍ରହ୍ମେ ଭକ୍ତି ଦେଇଣ ମନ । ସୁମନରେ । କଳୁଷ ହେବ ଖଣ୍ଡନ ।୧। କ୍ଷମାସାଗର ନାମକୁ । ଖଳ ଛାଡ଼ି ଭଜ ନେତ୍ରଜ ଭସ୍ମକୁ । ସୁମନରେ । ଖଣ୍ଡି ଦେବେ ସେ ଦୁଃଖକୁ ।୨। ଗୁରୁ ପିତାମାତା ହେବ୍ବ । ଗହନ କାନନୁ ନେବେ ବଞ୍ଚାଇ । ସୁମନରେ । ଗତିପଥ ଦେବେ ନେଇ ।୩। ଘୋଷ ନାମକୁ ନିରତ । ଘାରି ନୁହ ଆଉ ମାୟାରେ ଲୁଚ । ସୁମନରେ । ଘାତେ ନ ହୋଇବୁ ହତ ।୪। ଅଖିଳନାଥ ଅଚ୍ୟୁତ । ଅନ୍ତର୍ଗତେ ଭଜ ଦିବସ ରାତ । ସୁମନରେ । ଅନୁସର ତାଙ୍କୁ ନିତ ।୫। ଚୌରାଶୀ ନର୍କ ତରିବୁ । ଚର୍ମ ଦେହେ ଆଉ ଜନ୍ମ ନ ହେବୁ । ସୁମନରେ । ଚରଣେ ଚନ୍ଦନ ପାଇବୁ ।୬। ଛାଡ଼ି ଚନ୍ଦ ପଦରେ ବାସ । ଛାଡ଼ି ମନ ଭ୍ରମ ସେ ପାଦେ ରସ । ସୁମନରେ । ଛନ୍ଦ ତୋ ହୋଇବ ନାଶ ।୭। ଜଗତନାଥ ଅଚ୍ୟୁତ । ଯତଦେ ସୁପ୍ରେମେ କର ଭଜନ । ସୁମନରେ । ଜନ୍ମ ନ ହେବ ଧରଣୀ ।୮। ଝଗଡ଼ା ତେଜ ମନରୁ । ଝଟତି ଆଶ୍ରେ କର ସଦଗୁରୁ । ସୁମନରେ । ଝଞ୍ଜଟ ଯିବ ମନରୁ ।୯। ନୟନାଭ୍ୟନ୍ତରେ ବାସ । ନବୀନ ମୂରତି ରୂପ ପ୍ରକାଶ । ସୁମନରେ । ନର ଦେହେ ହେବେ ଦୃଶ୍ୟ ।୧୦। ଟାଣ ନ ବାନ୍ଧ ହୃଦରେ । ଟଳି ନ ପଡ଼ ଏ ମାୟା ଫସାରେ । ସୁମନରେ । ଟାକ ରୁହ ନିଷ୍କାମରେ ।୧୧। ଠଣ ସୁନ୍ଦର ମୂର୍ତ୍ତିଙ୍କୁ । ଠକପଣ ଛାଡ଼ି କର ଭକ୍ତିକୁ । ସୁମନରେ । ଠିକେ ଧର ସେ ପାଦକୁ ।୧୨।

Digitized by srujanika@gmail.com

(ଡ) ଡର ଭୟ କର ଦୂର । ଡେର ସ୍ୱର୍ଗେ ନେବେ କରଣ ସ୍ଥିର । ସୁମନରେ । ଦଣ୍ଡ ହେବ ତୋ ନିବାର । ୧୩ । ଢୋକ ନ ପିଅ ପୀୟୂଷ । ଢଙ୍ଗ ରଙ୍ଗେ ସର୍ବେ ହେଉଛ ନାଶ । ସୁମନରେ । ଢଙ୍ଗ ଗୁଡ଼କର ଆସ । ୧୪ । ଅଣହେଳା ନ କରଣ । ଅନ୍ତର୍ଗତେ ତାଙ୍କୁ କର ଭଜନ । ସୁମନରେ । ଅବଶ୍ୟ ହେବ ଉତ୍ତୀର୍ଣ୍ଣ । ୧୫ । ତୁରିତେ ତତ୍ତ୍ୱ ପଥକୁ । ତରିବ ଯେମନ୍ତେ ଧର ତାହାକୁ । ସୁମନରେ । ତେବେ ନ ଭଜ ଅନ୍ୟକୁ । ୧୬ । ଥାଉଁ ଥାଉଁ ପିଣ୍ଡେ ପ୍ରାଣ । ଥିବରେ ଧର ବେଳକୁ ଜାଣିଣ । ସୁମନରେ । ସ୍ଥିର ଭାବ କର ମନ ।୧୭। ଦୁଃଖମୟ ଏ ସଂସାର । ଦମ୍ଭ ମନ ତହିଁ କେଭେ ନ କର । ସୁମନରେ । ଦୁଃଖ ପାଇବ ଅପାର ।୧୮। ଧର ଧର ଧର୍ମ ପଥ । ଧନ୍ଦା ଲେଜ ମନୁ କର ଆଶ୍ରିତ । ସୁମନରେ । ଧରଣୀରୁ ହେବ ମୁକ୍ତ ।୧୯। ନଶୀ ବଦନ ହୃଦୟରେ । ନକର ବିଳମ୍ବ ଜପ ମନରେ । ସୁମନରେ । ନଯିବ ଯମର ପୁରେ ।୨୦। ପୂର୍ଣ୍ଣାନନ୍ଦ ପାଦ ଗତେ । ପ୍ରୀତି ଲଗାଅ ତୁ ଅନବରତେ । ସୁମନରେ । ପରାପର ତେଜ ଶତ୍ରେ ଫଳ ଫଳିବ ଅବଶ୍ୟ । ଫଳ ଭୋଗେ ତୁ ତ ହୋଇବ ତୋଷ । ସୁମନରେ । ସୃଷ୍ଟି ନ ହେବୁ ବିଧ୍ୱଂସ ॥ ବସି ଲଗା ଏବେ ଧ୍ୟାନ । ବାଇ ନର୍କରେ ଯହିଁକି ଗମନ । ସୁମନରେ । ବୈକୁଣ୍ଠପୁର ତା ମନ ଭବସାଗରୁ ତରିବ । ଭବରେ ଆଉ ଯେ ଜନ୍ମ ନହେବ । ସୁମନରେ ଭାବ କରିଲେ ପାଇବ ।୨୪।

(ମ) ମନ ମାତଙ୍ଗର ପରି । ମାୟାରେ ପଡ଼ିଣ ହେଉଛ ଘାରି । ସୁମନରେ । ମାର ତ୍ରିରୁ ସୂକ୍ଷ୍ମ ଧରି । ୨୫ । ଜାଣୁ ଜାଣୁ ଏତେବେଳେ । ଜାଣି ନ ପାରିଲେ ଏ ଭବ ଜଳେ । ସୁମନରେ । ଯଶାରେ ପଡ଼ିବୁ ଡାଳେ ॥ ରଙ୍ଗରେ ରହିଛୁ ମାତି । ରସୁ ନାହୁଁ ରଜନୀ କର୍ ଭକତି । ସୁମନରେ । ରଙ୍ଗେ ଲଗାଇଛୁ ପ୍ରୀତି ।୨୬ ।

Digitized by srujanika@gmail.com

ଲୟ ପରଂବ୍ରହ୍ମ ପାଦେ । ଲବେ ନ କରୁ ପଡ଼ିବୁ ପ୍ରମାଦେ । ସୁମନରେ । ଲଗିଛୁ ମାୟା ସମ୍ପଦେ । ୨୮ । ବାତୁଳ ପରାୟ ହୋଇ । ବାରଆଡ଼େ ଚଞ୍ଚଳ ଭ୍ରମନ୍ତୁ ଭ୍ରମ୍ୱ । ସୁମନରେ । ଈଶ୍ୱର ଚେତା ହୃଦେ ନାହିଁ । ୨୯ । ଶ୍ରୀଗୁରୁଙ୍କ ଶ୍ରୀଚରଣ । ସେବା କରି ଏବେ କର ଭଜନ । ସୁମନରେ । ଶରଣ ପଶି ବନ୍ଦନ । ୩୦ । ସୁହଙ୍ଗରେ ନ ଯା ଭାସି । ସାର ବ୍ରହ୍ମକୁ ଏବେ ଚଉ ଉଲ୍ଲସି । ସୁମନରେ । ସୁଖ ମିଳିବ ଯେ ଆସି । ୩୧ । ଷଡ଼ ବୈରୀ ବଶେ ରହି । ସ୍ୱରୂପ ଚୋହର ଚହ୍ନିଲୁ ନାହିଁ । ସୁମନରେ । ଷଡ଼ରସେ ହେଲୁ ବାଇ । ୩୨ । ହତ ପ୍ରକୃତି ବନ୍ଧନ । ହଇରାଣ ହେଉ ମଦେ ମାତିଣ । ସୁମନରେ । ସ୍ଥିତରେ ନ ଦେଉ ମନ । ୩୩ । କ୍ଷମାନନ୍ଦ ଶୂନ୍ୟ ଦେହୀ । କ୍ଷୟ ହେବ ଦୁଃଖ ଭଜ ଚରଣେ ଇ । ସୁମନରେ । କ୍ଷମେ ଅନନ୍ତ କହଇ । ୩୪ ।



( ୭୮ )

(କ) କରୁଅଛୁ ମୁଁ ପାଦେ ପ୍ରଣତି । କୃପାକର ହେ ଜଗତ ପତି । କଳିଯୁଗେ ମୁହିଁ ଜାତ ହୋଇକରି ବହୁ କଷ୍ଟ ପାଏ ଦିବା ରାତି । ହେ ଶ୍ରୀଗୁରୁ । ୧ । କ୍ଷମା ସାଗର ତୁମ୍ଭେ ବୋଲାଅ । କ୍ଷମା କର ମୋ ଦୁଃଖ ସଂଶୟ । କ୍ଷୀରସିନ୍ଧୁ ବାସୀ ବୋଲାଅ । ଆପଣ, ଖଣ୍ଡିଦିଅ ମୋର ଦୁଃଖଭୟ । ହେ ଶ୍ରୀଗୁରୁ । ୨। ଗୁରୁ ପିତା ମାତା ତୁମ୍ଭେ ମୋର । ଗଣିବର ପ୍ରତି କୃପା କର । ଗହନ ମାୟା ବନ୍ଧନୁ ପାରିକରି ଗତି ପଥେ ରଖ ନିରନ୍ତର । ହେ ଶ୍ରୀଗୁରୁ ।୩। ଘଟେ ତୁମ୍ଭେ ରହିଅଛ ପୂରି । ଘଟ ବାହାରେ ଅଛ ଆବୋରି । ଘୋଟି ରହିଅଛ ତ୍ରିପୁର ଜଗତ, ଘଟଣ ମୂରତି ରୂପ ଧରି । ହେ ଶ୍ରୀଗୁରୁ ।୪। ଅନ୍ତର୍ଯ୍ୟାମୀ ନାମ ଯେ ତୁମ୍ଭର । ଅନ୍ତର୍ଗତେ ଜାଣି

Digitized by srujanika@gmail.com

କୃପା କର । ଅନୁସର ଅଛୁ ତବ ପାଦଗତେ ଅନୁରାଗ ଦାରେ ମାଗ କର । ହେ ଶ୍ରୀଗୁରୁ । ୫ । ଶଦାନନ୍ଦ ପୂର୍ଣ୍ଣ ବ୍ରହ୍ମ ମୂର୍ତ୍ତି । ଶଦ୍ଭେ ପ୍ରସନ୍ନ ହୋଇ ୠଂତ । ଶର ଦୁଃଖ ମୋର କର ନିବାରଣ ତରଚାଥ କର ଦେଇ ଗତ । ହେ ଶ୍ରୀଗୁରୁ ।୬। ଛଡ଼ଚନ୍ଦ ଊର୍ଦ୍ଧ୍ୱ ତବ ବାସ । ଘୁର ବୃତ୍ତି ମୋହର ନାଶ । ଛନ୍ଦ କପଟ ମୋ ହୃଦୟୁଁ ଯାଉ ଛନ୍ଦ ରହୁ ନାମେ ଅହର୍ନିଶ । ହେ ଶ୍ରୀଗୁରୁ । ୭ । ଜଗତରେ ଯେତେ ଜୀବ ଜନ୍ତୁ । ଯାତାୟତ ଆଣ୍ଡରେ କରନ୍ତୁ । ଦୂର ହିପାପ ଅଙ୍ଗକୁ ନ ଲାଗଇ, ଯତନେ ଯେ କରେ ତବ ଭକ୍ତି । ହେ ଶ୍ରୀଗୁରୁ । ୮ । ୠଂ ୠଂ ଭ୍ରମର ସ୍ୱରୂପ । ୠଳ ବିରାଜଛୁ ଏ ତ୍ରୈଲୋକ୍ୟ । ୠାଡ଼ ବନେ ପଶି ନ ଚିହ୍ନି ପାରନ୍ତି, ୠାଙ୍କ ମାୟାରେ ହୋଇ ବିଲୁପ୍ତ । ହେ ଶ୍ରୀଗୁରୁ । ୯ । ନୟନାଭ୍ୟନ୍ତରେ ତବ ବାସ । ନର ତନୁରେ ନୁହ ଯେ ଦୃଶ୍ୟ । ଜଣିହେନ ଯେହ୍ନ ଭାବଇ ହୃଦରେ, ନର ଦେହ ନୁହେଁ ତାର ବାସ । ହେ ଶ୍ରୀଗୁରୁ । ୧୦ । ଟାଣ ପଣରେ ନାମ ଭ୍ରମର । ଟେକ ନ ଛାଡ଼ ଯେ ମୂଢରେ । ଟାଣ ମାୟା ସ୍ରୋତେ ଦେହ ହରାଇବ, ଟୋପେ ଚଢ଼ ହୁଏ ନାରଖାର । ହେ ଶ୍ରୀଗୁରୁ । ୧୧ । ଠକପଣ ଗ୍ରନ୍ଥି ହୃଦୟରୁ । ଠିକେ ଆଶ୍ରେ କରି ସଦଗୁରୁ । ଠଣ ମୂରତିଙ୍କ ପାଦେ କରି ଭକ୍ତି, ଠିକେ କହେ ଅନନ୍ତ ଦୁର୍ମତି । ହେ ଶ୍ରୀଗୁରୁ । ୧୨ ।

(ଡ) ଡର ମାଡୁଛୁ ଅନ୍ତର୍ଗତେ । ଦେଖି ସଂସାର ଅନ୍ୟାୟ ନେତ୍ରେ । ଡଙ୍ଗାରେ ବସାଇ ପାରି କରିନିଅ, ଡେରି ରଖାଅ ତବ ନିକଟେ । ହେ ଶ୍ରୀଗୁରୁ । ୧୩ । ଢମାଳିଆ ପଣେ ମାତିକରି । ଢଙ୍ଗରଙ୍ଗରେ ହୋଇଣ ଘାରି । ଢେଉ ସ୍ରୋତେ ଘାତେ ଭସିଣ ଯାଉଛୁ ଢାଳେ ତବ ନାମକୁ ନ ଧରି । ହେ ଶ୍ରୀଗୁରୁ । ୧୪ । ଅଣ ଅନ୍ଧାରେ ହେବେ । ହଳାଳେ ନାମ ନ ସୁମରି । ଅନୁକ୍ଷଣେ ମୋହେ ଘାରି ଚହଲୁଅଛୁ ଅଣ ବିଶ୍ୱାସ

Digitized by srujanika@gmail.com

ହବା ଶଙ୍କା ଶ୍ରୀଗୁରୁ । ୧୫ । ଚଞ୍ଚ ଫଣେ ନ ଚଳୁଛୁ ମନ । ତିନଗୁଣେ ହୋଇ ବର୍ଦ୍ଧମାନ । ତରିବା ପଥକୁ ଛାଡ଼େ ନ ସୁମର ତରଙ୍ଗରେ ନେଉଅଛୁ ହନ । ହେ ଶ୍ରୀଗୁରୁ । ୧୬ । ସ୍ଥିର ସ୍ୱଭାବ ମୋହର ନାହିଁ । ଥରଥର ହେଉଅଛୁ ରହି । ଥରକୁ ଥର ବିପତ୍ତି ପଡ଼ୁଅଛୁ, ସ୍ଥାନ ସ୍ଥିତି ନ ମିଳୁଛୁ କାହିଁ । ହେ ଶ୍ରୀଗୁରୁ । ୧୭ । ଦଣ୍ଡ ପଡ଼ୁଅଛୁ ବେଳୁବେଳ । ଦାଣ୍ଡେ ଉଜଡ ଗଲା ସକଳ । ଦୁରୁଦାନ୍ତ ଦେବ କଷ୍ଟ ପଡ଼ୁଅଛୁ, ଦୟା କର ଆଦମୂଳ । ହେ ଶ୍ରୀଗୁରୁ ।୧୮। ଧର୍ମ ଧଣ ହେଉଅଛୁ ଘାରୁ । ଧାରଣାରେ ରହି ସେ ନ ପାରୁ । ଧର୍ମ ଧର ଧନଳ ହେଉଅଛୁ ପ୍ରବଳ, ଧନ୍ଦା ଲାଗିଛୁ ହବା ଶଙ୍କା । ହେ ଶ୍ରୀଗୁରୁ । ୧୯ । ନୟନାଗ୍ରେ ଘୂର୍ଣ୍ଣିଣ ଝଟକ । ନାଶ କର ଏ ସବୁ ବିପତ୍ତି । ନକର ଅନ୍ତ ଦୁଃଖ କର ଦୂର ନନ୍ଦା ବୃନ୍ଦ ହେ ଜଗତ ପତି । ହେ ଶ୍ରୀଗୁରୁ । ୨ । ପର ଅପର ଭାବଣ ଛାଡ଼େ । ପାପେ ଦଗଧି ହେଉଛୁ ନତ୍ୟେ । ପରମ ପୁରୁଷ ବୋଲାଅ ଆପଣ, ପାର କର ଏବେ ଦୟା ଚିତ୍ତେ । ହେ ଶ୍ରୀଗୁରୁ । ୨୧ । ଫିସାଦଅ ବୁଦ୍ଧି ଏବେ କର । ଫାନ୍ଦେ ପଡ଼ ହେଉଅଛୁ ଘାରୁ । ଫଳ ଆଣେ ନାନା କର୍ମ ଯେ ଆଚରି, ଫୁଟି ମରୁଛୁ ହବା ଶଙ୍କା । ହେ ଶ୍ରୀଗୁରୁ । ୨୨ । ବୁଦ୍ଧି ବିବେକ ଯାଉଛୁ ହଜ । ବିଷୟାରେ ରହିବାକୁ ମଜି । ବଣା ହୋଇ ନା ଅପଥେ ଗମନ, ବଳେ କରୁଛୁ ନ ପାରି ହେଜ । ହେ ଶ୍ରୀଗୁରୁ । ୨୩ । ଭକ୍ତ ଭୟ ନାଶନ ଆପଣ । ଭବେ ଉଦ୍ଧାର କର ବନ୍ଧନ । ଭରସା କେବଳ ତବ ପାଦଗତେ, ଭାବ କହଇ ଅନନ୍ତ ସ୍ୱାନ । ହେ ଶ୍ରୀଗୁରୁ । ୨୪ ।

(ମ) ମନ ମାତଙ୍ଗ ସେ ଅନୁକ୍ଷଣ । ମାତିଅଛୁ ବିଷୟାରେ ଜାଣ । ମହତ ପଥରେ ଚଳୁ ନ ଦେଇଣ, ମରୁଅଛୁ ହୋଇ ଘାନମାନ । ହେ ଶ୍ରୀଗୁରୁ । ୨୫ । ଯମ ଯାତନାରେ ଅଛୁ ପଡ଼ । ଯାଉଅଛୁ ମୁଁ ଭବରେ ବୁଡ଼ । ଜଗତ କରତା ହୃଦରେ ବିସ୍ତର,

Digitized by srujanika@gmail.com

ଜଗତରୁ ବଅ ମୋତେ ପଡ଼ି ହେ ଶ୍ରୀଗୁରୁ । ୨୭ । ଘଗ ଈର୍ଷାରେ ନ ହୋଇ ମତ୍ତ । ରହୁ ଔଦାର୍ଯ୍ୟ ଭାବ ଧରିତ । ରମ୍ୟ ପଦାର୍ଥ ଯେତେକ ଏ ସଂସାରେ, ରସି ନ ଚଳାଅ ଆଉ ଚିତ୍ତ । ହେ ଶ୍ରୀଗୁରୁ । ୨୭ । ଲସୁ ତୁମ୍ଭର ପାଦ ପଦ୍ମରେ । ଲଗି ରହୁ ଯେ ଅନୁବ୍ରତରେ । ଲୋଭ ମୋହ ଅହଂ କାମ କ୍ରୋଧ ଯେତେ, ଲଭେ ନ ରହୁ ଏ ଅନ୍ତରେ । ହେ ଶ୍ରୀଗୁରୁ । ବଣ ବଷସ୍ୱାକୁ ମଣି ଚଉେ । ବିବିଗରେ ରହୁ ଯେ ଜିରତେ । ବହୁଗ ମିଥ୍ୟାବ ସମଭାବ କରି, ବୁଲୁ ଏ ଆଜ୍ଞା ହେଉ ତୁରିତେ । ହେ ଶ୍ରୀଗୁରୁ । ୨୯ । ଶିରୋମଣି ତୁମ୍ଭେ ଯେ ମୋହର । ଶରଣ ପଶେ ମୁଁ ତବ ଠାର । ସୁହୃଦରେ ଦୟା କରିବ ଏହାକୁ, ଶାନ୍ତ ପଥେ ରଖି କର ସ୍ଥିର । ହେ ଶ୍ରୀଗୁରୁ । ୩୦ । ସତପଥେ ଅନୁବ୍ରତେ ନାହିଁ ସଂସାରରେ ଯେ ମୋହତ ନୋହୁ । ଶୟନ ଭୋଜନେ ସଦାବେଳେ ତବ, ସାର ନାମକୁ ମୁଖରେ ଗାଉ । ହେ ଶ୍ରୀଗୁରୁ । ୩୧ । ସିଦ୍ଧ ଉପଦେଶ ପାଳକର । ସେହି ପଥେ ରହୁ ଅନୁସରି । ସଦା ସର୍ବଦା ସାକ୍ଷୀ କରି ତାଙ୍କୁ, ସୁସ୍ଥେ ଭ୍ରମୁ ଏ ବିଶ୍ୱ ନଗରୀ । ହେ ଶ୍ରୀଗୁରୁ । ୩୨ । ହୃଦେ ବିଗ୍ରହ ଏ ଆଜ୍ଞା ହେଉ । ହତ ପ୍ରକୃତି ମୋହର ଯାଉ । ହର ବର କେଭେ ବିଷୟ ପ୍ରମାଦେ, ହଇବଣ ଆଉ କେଭେ ନୋହୁ । ହେ ଶ୍ରୀଗୁରୁ । ୩୩ । କ୍ଷମା ସାଗର ତୁମ୍ଭେ ମୋହର । ଖଣ୍ଡ ପ୍ରକୃତି ମୋ କର ଦୂର । କ୍ଷମେ ଜନ ସ୍ଥାନ ଅନନ୍ତ କହଇ, କ୍ଷମା ହେଉ ମୋ ଦୁଃଖ ଏଥର । ହେ ଶ୍ରୀଗୁରୁ । ୩୪ ।

— ୦ —

( ୭୯ )

(କ) କରଯୋଡ଼ି ଶ୍ରୀଗୁରୁମୁରେ । କରତାଙ୍କ ଠାରେ ବିନତି କରେ । ଶ୍ରୀଗୁରୁ ହେ । କୃପାକର ମୋତେ ବାରେ । ୧ । କ୍ଷମାନନ୍ଦ ହେ ମାର୍ଗଣ । ଖଣ୍ଡ ଖଣ୍ଡ ମୋର ପାତକ ମାନ । ଶ୍ରୀଗୁରୁ ହେ ।

Digitized by srujanika@gmail.com

କ୍ଷଣେ ସୁସ୍ଥ ନାହିଁ ପ୍ରାଣ । ୨ । ଗୁରୁ ପିତା ମାତା ତୁମ୍ଭେ । ଶରଣ ଆଗତଙ୍କେ ଡାକୁଛୁ ଭାବେ । ଶ୍ରୀଗୁରୁ ହେ । ଗୋ ମଧ୍ୟେ ପଢ଼ୁଣ ଏବେ । ୩ । ଘାଣ ହୋଇ ଦବା ଗ୍ରନ୍ଥ । ଘୁର୍ଣ୍ଣିତ ବାତରେ ଭ୍ରମୁଛୁ ନିତ । ଶ୍ରୀଗୁରୁ ହେ । ଘାଏ ଖଣ୍ଡ ଏ ଦୁର୍ଗତି । ୪ । ଅନ୍ତର୍ଯାମୀ ଅଣାକାର । ଅଗତିର ଗତି କରୁଣାକର । ଶ୍ରୀଗୁରୁ ହେ । ଅଶେଷ ଜୀବ ଠାକୁର । ୫ । ଚୌବର୍ଗ ଦାତା ଆପଣ । ଚିଦାନନ୍ଦ ପୂର୍ଣ୍ଣାନନ୍ଦ ନିର୍ଗୁଣ । ଶ୍ରୀଗୁରୁ ହେ । ଚମତ୍କାର ଅଟେ ଗୁଣ । ୬ । ଛନ୍ଦି ଚନ୍ଦ ପରେ ସ୍ଥିତ । ଛନ୍ଦ ପାଶେ ପଡ଼ି ଭ୍ରମୁଛୁ ନିତ । ଶ୍ରୀଗୁରୁ ହେ । ଛଡ଼ାଅ ଭବ ବନ୍ଧନ ।୭। ଜୟ ଜଗତ ତାରଣ । ଜୟ ଘାନବନ୍ଧୁ କୃପା ନିଧାନ । ଶ୍ରୀଗୁରୁ ହେ । ଜଗତେ ଅଛ ବ୍ୟାପିଣ । ୮ । ଝଟିତି ବୁଝ ଗୁହାରି । ଝଗଡ଼େ ପଡ଼ି ଯାଉଅଛୁ ମରି । ଶ୍ରୀଗୁରୁ ହେ । ଝାମ୍ପୁଅଛି କାଳ ଧରି । ୯ । ନିରାମୟ ବ୍ରହ୍ମ ଜ୍ୟୋତି । ନିଶି ଦିବସେ କରୁଅଛୁ ସ୍ତୁତି । ଶ୍ରୀଗୁରୁ ହେ । ନାହିଁ ଅନ୍ୟେ ମୋର ମତି । ୧୦ । ଟାଣ ସ୍ୱଭାବରେ ପଡ଼ି । ଟଣାଟଣି ହୋଇ ମରୁଛୁ ଗଡ଼ି । ଶ୍ରୀଗୁରୁ ହେ । ଟାଣେ ଧର୍ମ ପଥ ଛାଡ଼ି । ୧୧ । ଠାକୁର ଅଲେଖ ବ୍ରହ୍ମ । ଠିକେ ପାଦ ପଦ୍ମ କରିବ ଜଣାଣ । ଶ୍ରୀଗୁରୁ ହେ । ଠାବ ନାଅ ଶୂନ୍ୟ ବ୍ରହ୍ମ । ୧୨ ।

(ଡ) ଡାକୁଛୁ ଦିବସ ରାତି । ଡୋଳେ ସ୍ୱାମି କୃପା କର ଝଟିତି । ଶ୍ରୀଗୁରୁ ହେ । ଡରେ ଥୟ ନୋହେ ମତି । ୧୩ । ଢମାଳରେ ଅଛୁ ମାତି । ଢାଙ୍କି ଉର୍ଦ୍ଧ୍ୱେ କାଳଚକ୍ର ଫେରୁଛୁ । ଶ୍ରୀଗୁରୁ ହେ । ଢାଳ ରଖ ଜଗଜ୍ୟୋତି ॥ ଅରୂପ ଶୂନ୍ୟ ବିହାରୀ । ଅଶେଷ ଭୁବନେ ଅଛ ଆବୋରି । ଶ୍ରୀଗୁରୁ ହେ । ଅଟଳେ ଚଳେ ଯେ ପୂରି । ୧୫ । ତୈଲୋକ୍ୟ ନାଥ ଆପଣ । ତତ୍ତ୍ୱା ନଲେ ମୋର ପାତକ ମାନ । ଶ୍ରୀଗୁରୁ ହେ । ତୁରନ୍ତେ କର ଦହନ ।୧୬। ଥୟ ନ ହେଉଛୁ ମନ । ଥରୁଅଛୁ ନିଶି ଦିବସ ଜାଣ । ଶ୍ରୀଗୁରୁ ହେ । ଥୟ

Digitized by srujanika@gmail.com

କର ଦେଇ ଜ୍ଞାନ । ୧୮ । ଦଇବ କର୍ତ୍ତା ଆପଣ । ଦୁଃଖ ଦୁରୁଦଶା କର ଖଣ୍ଡନ । ଶ୍ରୀଗୁରୁ ହେ । ଦରବନ୍ତ୍ର ଭଅ ଦର୍ଶନ । ୧୮ । ଧର୍ମେ ନ ଦେଇଣ ଚକ୍ଷୁ । ଧାଇଁ ମାୟା ମୋହେ ହୋଇ ମୋହିତ । ଶ୍ରୀଗୁରୁ ହେ । ଧନ୍ଦ ହୋଇ ହେଲି ହତ । ୧୯ । ନର କଳେବର ବନ୍ଧ ନରକରେ ମୁର୍ଖ ହେଉଛି ବାଇ । ଶ୍ରୀଗୁରୁ ହେ । ଦଶଦ୍ୱେ ଭଅ ବଧାଇ । ୨୦ । ପୂର୍ଣ୍ଣାନନ୍ଦ ପୂର୍ଣ୍ଣରୂପୀ । ପରମ ଆତ୍ମା ପରମ ସ୍ୱରୂପୀ । ଶ୍ରୀଗୁରୁ ହେ । ପରାପରେ ଅଛ ବ୍ୟାପୀ । ୨୧ । ଫୁକାବନ୍ଧ ପରେ ବାସ । ଫର ଫର ବାନା ଜନ୍ମେ ହିଦଶ । ଶ୍ରୀଗୁରୁ ହେ । ଫାନ୍ଦେ ପଡ଼ି ହେଲି ନାଶ । ୨୨ । ବିଷମ ମାୟା ଜାଲରେ । ବନ୍ଧନ ଲଭିଲି ପାପ ଜନ୍ମରେ । ଶ୍ରୀଗୁରୁ ହେ । ବାଟରେ ବାହ୍ନ କର ମୋରେ । ୨୩ । ଭବ ମାୟା ମୋହ ସ୍ଥଳେ । ଭରଷା ନପାଇ ଅଗାଧ ଜଳେ । ଶ୍ରୀଗୁରୁ ହେ । ଭାସିଗଲି ଅବହେଳେ । ୨୪ ।

(ମ) ମିଛ ମାୟା ମୋହ ବଣେ । ଉନ୍ମତ ହୋଇ ଭ୍ରମେ ଅନୁକ୍ଷଣେ । ଶ୍ରୀଗୁରୁ ହେ । ମତ୍ତ ମାତଙ୍ଗ ଯେସନେ । ୨୫ । ଜଗ-ଜ୍ୟୋତି ଶୂନ୍ୟବ୍ରହ୍ମ । ଜାଣିଲେ ପଡ଼ ନଚହ୍ନି ବଦନ । ଶ୍ରୀଗୁରୁ ହେ । ଜାଣି ହୋଇଲି ଅଜ୍ଞାନ ॥ ରସି ମାୟା ସଂସାରେ । ରହି ନ ପାରେ ଜାଗତ ଚିତ୍ତରେ । ଶ୍ରୀଗୁରୁ ହେ । ରହ ହୃଦୟ ଅନ୍ତରେ ୨୭। ଲୟ ନାହିଁ ମନ ମଧ୍ୟେ । ଲାଗି ରହିଅଛି ବିଷୟ ମଦେ । ଶ୍ରୀଗୁରୁ ହେ ଲକ୍ଷ୍ୟ ନାହିଁ ପଦୁପାଦେ । ୨୮ । ବିଷୟରେ ମତ୍ତ ହୋଇ । ବିଭୁ ପଦ୍ମପାଦେ ଚିତ୍ତ ନ ଦେଇ । ଶ୍ରୀଗୁରୁ ହେ । ବଣା ହୋଇ ହେଲି ବାଇ । ୨୯ । ସଦଗୁରୁ ଯେ ଆପଣ । ସ୍ୱଦକ୍ଷ ନଗରେ ଗଲି ଭାସିଣ । ଶ୍ରୀଗୁରୁ ହେ । ସମ୍ଭାଳ ରଖ ଆପଣ ।୩୦। ସଙ୍ଗ ଗହଳରେ ପଡ଼ି ସାର ବ୍ରହ୍ମ ପଦ ଦେଉଛି ଛାଡ଼ି । ଶ୍ରୀଗୁରୁ ହେ । ସନ୍ତାପେ ମଲି ମୁଁ ବୁଡ଼ି । ୩୧ । ସୀମା ନାହିଁ ଯେ ବ୍ରହ୍ମର । ସର୍ବ ବ୍ୟାପୀ ବ୍ରହ୍ମ ହେ ଅଣାକାର । ଶ୍ରୀଗୁରୁ ହେ । ସୁଦୟାକର ପାର । ୩୨ ।

Digitized by srujanika@gmail.com

ହରତା କରତା ବ୍ରହ୍ମ । ହର ହର ମୋର ଅପଭିମାନ । ଶ୍ରୀଗୁରୁ ଦେ । ଦେଉଅଛୁ ସ୍ଥାନମାନ । ୩୬ । କ୍ଷମାନନ୍ଦ ଶୂନ୍ୟଦେଷ୍ଟା । କ୍ଷାନ୍ତ ଅପ୍ରାଧ ଅନନ୍ତ କହଇ । ଶ୍ରୀଗୁରୁ ଦେ । କ୍ଷମା ମାର୍ଗେ ପାଶେ ରଖ । ୩୪ ।

–୦–

( ୨୦ )

(କ) କର ବ୍ରହ୍ମେ ପ୍ରେମ ଭକ୍ତି । ମନକୁ କର ଆମ୍ଭଙ୍କନେ ସ୍ଥିତ । ସୁମନରେ । କାମ୍ୟମନେ ନଷ୍ଟ ପ୍ରଷ୍ଟ । ୧ । ଖଟକର ସେବା ନତ । କ୍ଷମା ଦେବ ଦୋଷ ଦେବ ସୁଗତ । ସୁମନରେ । ଷିତରେ ରଖବ ଜାଣି । ୨ । ଗୁରୁ ନାମ ହୃଦେ ଗୁଣ । ଗରବ ମନରୁ ଦୂରେ ଚେଡଣ । ସୁମନରେ । ଗୁଣ ଗୁରୁ ନଜ ନାମ । ୩ । ଘଟଣା ମୂରତ ଧର । ଘୋଟି ରହିଛନ୍ତି ଏ ଜନପୁଷ୍ଟ । ୮ ସୁମନରେ । ଘନେ ଆବଚ୍ୟ ଯେପର । ୪ । ଙ୍ଗଦେ ହୋଇଛନ୍ତି ଦେଖ । ଅନା ଜ୍ଞାନ ନେଷେ କର ବବେକ । ସୁମନରେ । ଉପାଧି ହୃଦେ ନ ରଖ । ୫ । ଚଞ୍ଚ ଚଞ୍ଚଳ ନଜର । ଚଞ୍ଚଳ ମାୟାମୟ ସଂସାର । ସୁମନରେ । ଚଦା–ନନ୍ଦେ ଭକ୍ତି କର । ୬ । ଛୁଡ଼ ଛନ୍ଦ କୁଟ ବାଦ । ଛଉଚନ୍ଦ ଛେଦି କର ଯେ ଭେଦ । ସୁମନରେ । ଛନ୍ଦ ଧର ସେ ନବେଦ । ୭ । ଜଗତ ତାଙ୍କ ତେଜରେ । ଜାତ ହୋଇଅଛି ଜାଣ ମନରେ । ସୁମନରେ । ଜଣାନନ୍ଦଙ୍କ ଆଖିରେ । ୮ । ଝଟତ ଆଶ୍ରୟ କର । ଝଡ଼ପିବ ସ୍ୱର୍ବ କଳୁଷ ଭର । ସୁମନରେ । ଝଗଡ଼ା ପଥ ନଧର । ୯ । ଞିଷ୍ଟି ବନ ଆମ୍ଭାଯୋଗେ । ନିଷ୍ଠାରେ ବସ ଯେ ମନ ସରାଗେ । ସୁମନରେ ॥ ଲୀଳା ଦେଖ ନସ୍ପୃହାଗ୍ରେ । ୧୦ । ଟୋକା ବୁଦ୍ଧି କର ଦୂର । ଟେକ ସ୍ପର୍ଦ୍ଧା ଏବେ ନିକୃଷ୍ଟ ପର । ସୁମନରେ । ଟଳିଲେ ନ ପାଇ ସାର । ୧୧ । ଠକ ଭାବ ନ ଧରଣ । ଠାକୁରଙ୍କ ପାଦେ ଲଗାଅ ଧ୍ୟାନ । ସୁମନରେ । ଠୁଳ କର ପଞ୍ଚମନ । ୧୨ ।

Digitized by srujanika@gmail.com

(ଡ) ଡଗର ପରମ ପକ୍ଷୀ । ଡୋଳା ଉର୍ଦ୍ଧ୍ୱେ ସେତ ଲୀଳା କରୁଛି ॥ ସୁମନରେ । ଡେଉରି ଲାଗି ନାହିଁ ମଣ୍ଡ । ୧୩ । ଢୋକ ନାହିଁ ମାସ୍ୱା ଢକ । ଢାଳ ରଖି ଚଉ ପରମ ପାଣ୍ଡି । ସୁମନରେ ଢାଉ ରଙ୍ଗରେ ନ ରସ । ୧୪ । ଅନାହତ ଘାଟଣାରେ । ଅଜପା ଭଜନ ହୁଏ ସେଠାରେ ସୁମନରେ । ଅନାମ ବ୍ରହ୍ମ ମନ୍ତ୍ରରେ ।୧୫। ତତ୍ତ୍ୱ ପଦ ତଳେ କର । ତାକୁ ଶିଖରେ ଧାମ ତାହାର । ସୁମନରେ । ତତ୍ତ୍ୱରେ ଯାଇ ଗୋଚର । ୧୬ । ଥରର ଶବ୍ଦ କରଣ । ସ୍ଥୂଳ ସୂକ୍ଷ୍ମ କାରଣରୁ ଯେ ଭିନ୍ନ । ସୁମନରେ । ସ୍ଥିରେ କର ତାଙ୍କୁ ଧ୍ୟାନ । ୧୭ । ଦେଖ ତୁ ନୟନେ ଯେତେ । ଦଗ୍‌ଧ ହେବ କାଳତସ୍କର ଘାତେ । ସୁମନରେ ॥ ଦେଖି ତୁହ ତୁ ସୁଚେତେ ॥ ଧନ୍ଦାପଥେ ଏ ସଂସାର । ଧନ୍ଦେ ପଡ଼ ଜ୍ଞାନ ହୁଏ ଅନ୍ତର । ସୁମନରେ । (ଧଣ) ଭକ୍ଷିବ କାଳ ଏଥର । ନମାନ ଧର୍ମ ନାବରେ । ନ ବସିଲେ ଜନ୍ମ ହେବୁ ମର୍ତ୍ତ୍ୟରେ । ସୁମନରେ । ନାନାଦ ଜୀବ ଯୋନିରେ । ୨୦ । ପାର ନୁହେଁ କେଉଁ-ମତେ । ପରଶୀଳନରେ ପାର କୁହତେ । ସୁମନରେ । ପରମ ପଦ ଜଗତେ । ୨୧ । ଫୁରୁଣା ଚଉ ଫକୀର । ଫେଡ଼ ଦେଖି ଗୁରୁ ସୂତ୍ରକୁ ଧର । ସୁମନରେ । ଫଣି ମଣି ଶିଖେ ଢର । ୨୨ । ବ୍ରହ୍ମ-ଙ୍କର ସ୍ଥାନ ପଛି । ବାଇ ଗମି ତାକୁ ପାରଇ ନାହିଁ । ସୁମନରେ । ବର୍ଣ୍ଣି ନ ପାରନ୍ତି । କେହି । ୨୩ । ଭକ୍ତି ବ୍ରହ୍ମ ପାଦେ କର । ଭାବରେ ତାହାଙ୍କୁ ବାନ୍ଧ ଯେ ପାର । ସୁମନରେ । ଭବରୁ ସେ ଯିବ ତର । ୨୪ ।

(ମ) ମହାପୁରୁଷ ଅଟନ୍ତି । ମୁହୂର୍ତ୍ତରେ ଆସି ଦର୍ଶନ ଦିଅନ୍ତି । ସୁମନରେ । ମନର ଭାବ ଜାଣନ୍ତି ।୨୫। ଯାହା ବାଞ୍ଛା ଯେବା କରେ । ଯତନେ ଚୌବର୍ଗ ଦିଅନ୍ତି ତାହାରେ । ସୁମନରେ । ଯେବେ ସେ ମଜ୍ଜେ ନାମରେ । ୨୬ । ରହିଲେ ଗୁରୁଙ୍କ ଧର୍ମେ । ରାଗ ଲୋଭ ମୋହେ ପଡ଼ ନ ଭ୍ରମେ । ସୁମନରେ । ରଖନ୍ତି ନେଇ ଯତନେ ।୨୭।

Digitized by srujanika@gmail.com

ଲସ୍ତି ସୁବ୍ରହ୍ମ ଧ୍ୟାନରେ । ଲଗାଇଲେ ପ୍ରତିଦିନ ପ୍ରେମରେ । ସୁମନରେ । ଲକ୍ଷ ନ ହେବେ ସଂସାରେ ॥ ବଡ ସାନ ନାହିଁ ତହିଁ । ବଢ଼ିବା ଛିଡ଼ିବା ସେ ପୁରେ ନାହିଁ । ସୁମନରେ । ବସ୍ତୁର ଅଛନ୍ତି ସେହି ।୨୯। ସୁଷୁମ୍ନା ଊର୍ଦ୍ଧ୍ୱେ ଘର । ଶୂନ୍ୟେ ଅଛ ଦେଖ ସେହି ରନ୍ଧ୍ରର । ସୁମନରେ । ଶକ୍ତି ଜଗିଅଛୁ ଦ୍ୱାର । ୩୦ । ଷଡ ବ୍ରହ୍ମବାସୀ ଜତି । ଷୋଳ ପରକାରେ ପୂଜା କରନ୍ତି । ସୁମନରେ । ସାଷ୍ଟାଙ୍ଗେ ପଡ଼ି ଧରଣି । ୩୧ । ସଦା ସର୍ବଦା ସେ ପୁରେ । ସିଦ୍ଧେ ଛନ୍ତି ଜାଗି ପ୍ରେମ ରସରେ । ସୁମନରେ । ସଧୀରେ ଜଣ ଗ୍ରାମରେ ॥ ହୃଦସ୍ଥ କର ଉଲ୍ଲାସ । ତୁଅ ସେହି ପୁରେ ସର୍ବଦା ବାସ । ସୁମନରେ । ହୋଇ ନାମେ ସଦା ହର୍ଷ ॥ କ୍ଷପୁ ହୋଇ ଜୀବ ନାହିଁ । ଖେଳିବା ସର୍ବଦା ସଙ୍ଗରେ ରହି । ସୁମନରେ । ନାମେ ଅନନ୍ତ କହଇ । ୩୪ ।

—o—

( ୭୧ )

(କ) କହୁଅଛୁ ଶୁଣ, ଦେଇ ମନକର୍ଣ୍ଣ, ମହିମା ସ୍ୱାମୀଙ୍କ ଚରିତ । କଳି ପାପ ଯୋଗେ, ଧର୍ମ କେଉଁ ଭାବେ, ହୋଇଥିଲେ ଶୂନ୍ୟ ସମ୍ଭୂତ । କୃପା କରିତ । ଭକତଙ୍କୁ ସଙ୍ଗେ ଘେନିତ । କଲେ ଯେଉଁ ଖେଳ, କେ କହେ ସକଳ, ଶୁଣିଲେ ହୋଇବ କୃତାର୍ଥ କ୍ଷିତରେ ସେ ଆଦ୍ୟେ, ଧର୍ମେ ଜମ୍ବୁ ଦ୍ୱୀପେ, ହେଲେ ଉତ୍ତମ ପ୍ରଦେଶରେ । ଖଳ ନାଶିବାର୍ଥେ, ହିମର ପର୍ବତେ, ରହିଲେ ଆତ୍ମାର ଯୋଗରେ । ଖାନ୍ତ ପରିଏ । ଶ୍ରୀଙ୍କେ ରହିଲେ ସମାଧିରେ । କ୍ଷଣିକ ସଂସାର ରଖିବା ଅର୍ଥରେ, ଭାବିଲେ ତାହା ହୃଦୟରେ । ୨ । ଗୁରୁ ରୂପେ ଧର୍ମେ, ହେଲେ ଗୁରୁ ଦେବ, ଗତିପଥ ଦେଲେ ଭକ୍ତଙ୍କୁ । ଗାଢ଼ ଭକ୍ତି କରି, ଗୁରୁଙ୍କୁ ସୁମରି, ଗଲେ ଭକ୍ତେ ମୋକ୍ଷ ପୁରକୁ । ଗୁରୁ ସନ୍ଥରେ । ଗରିଷ୍ଠ ଅଟନ୍ତି ଜଗତେ । ଗାଇ ତାଙ୍କ ଯଶ, ଗର୍ବ ତେଜି ବସ, ଶୁଣି ଗୁରୁ ନାମ ଜପତେ । ୩ । ଘଟଣେ ମୂରତି, ରୂପ ସେ

Digitized by srujanika@gmail.com

ହସନ୍ତି, ଦେଖାଦ୍ୟନ୍ତି ଜ୍ଞାନ ନୟନେ । ଘରର ବାହାରେ, ପୂର୍ବ ସଙ୍କଟରେ, ଅଛନ୍ତି ଏ ତିନ ଭୁବନେ । ଘଟ ମଧ୍ୟରେ । ଭାବ ସ୍ଥିରେ ବସି ଏକାନ୍ତେ । ଘଟେ ଘଟେ ସେତ ପୂର୍ଣ୍ଣ ରହିଛନ୍ତି ଦେଖ ଗୁରୁଙ୍କ ଆଜ୍ଞାମତେ । ୪ । ଅଶେଷ ଭୁବନେ ଅନ୍ତର ବାହାରେ ଅଛନ୍ତି ରହି ସେ ନିରତ । ଆଶ୍ରମ ଭାବରେ ରୁହ ନିରନ୍ତରେ ଅଭୟ ପୁରେ ହେବ ସ୍ଥିତ । ଅନ୍ତର୍ଗତରେ । ଭାବ ତାଙ୍କୁ ଅନବରତ । ଅମନ ମତରେ, ଦେଖ ଅନୁମାନେ, କର ଏଭ ମନ୍ତ୍ର ଆଯୁତ ॥ ତନ ଭେଦ ଦେଖ, ନାହିଁ ନିଜ ରୂପ, ବଜେ ଉର୍ଦ୍ଧ୍ୱେ ଶୂନ୍ୟ ଶିଖରେ । ଚରଣ ସେବାରେ, ରହ ନିରନ୍ତରେ, ତରମେ ଜୀବ ନିତ୍ୟ ପୁରେ । ତଳ ସନ୍ତରେ । ଚଞ୍ଚଳ ନ କର ମନରେ । ଚତୁର୍ଦ୍ଦିଗ ସେତୁ ଚସ୍ଥିରରେ ଛନ୍ତି, ଦେଖ ସୁବିବେକ ବଳରେ ।୬। ଛାଡ଼ ମାୟା ମୋହ, ଛନ୍ଦନ୍ଦରେ ରୁହ, ଛନକା ଚେତଜ ହୃଦପୁରୁ । ଛାର ବଶପଣେ, ନ ରସ ଚର୍ମିରେ ଛଦ ପ୍ରେମ ଭକ୍ତି ଭାବରେ । ଛାର ସଂସାରରେ । ଛାଡ଼ି ମାୟା ପାଶ ପୁଞ୍ଜରେ ଛନକା ମନକୁ ଚେତନ ଦୁରକୁ, ସେବ ଶ୍ରୀଗୁରୁଙ୍କ ପାଦରେ । ୭ । ଜୀବ ଜୀବେ ସେତ, ପୂରଣ ସତତ ଅଛନ୍ତି ନିର୍ଲିପ୍ତ ଭାବରେ । ଯାଇ ଆସୁଛନ୍ତି, କେହି ନ ଦେଖନ୍ତି, ପଡ଼ି ମାୟା ମୋହ ଜାଲରେ । ଯତ୍ନେ ଲଗାଅ । ନିର୍ଗୁଣ ତତ୍ତ୍ୱ ଭାବ ଛାଡ଼ି । ଜଗତରେ ତବ, କରଣ ରହିବ, ଭାବ ଅନୁଭବେ ନିରେଖ ॥ ଝଡ଼ ପ୍ରଚଣ୍ଡ ନରେ, ଏ ମିଥ୍ୟା ସଂସାରେ, ଝଟତି ଆଶ୍ରେ କର ନାମ । ଝଗଡ଼ା କଥାରେ, ନ ଭୁଲ ସଂସାରେ, ଝାମ୍ପି ନେବ କାଳ ଶମନ । ଝଞ୍ଜା ବାତରେ । ଝଡ଼ିଲେ ହୋଇବ ପତନ । ଝସାଇ ନ ପଶ, ହେବ ଧୂଳି ପାଶ ଝଟତି ଧର ଗୁରୁ ନାମ । ୯ । ନିଜ ନାମ କଣ୍ଠେ, ଜପୁ ଥାଅ ଆଣ୍ଠେ, ନ ଡରଣ ଲୋକ ନିନ୍ଦାକୁ । ନୟନ ଗୋଚରେ, ଥାଇଁ ଅଭ୍ୟନ୍ତରେ, ଲୀଳା କରେ ଛନ୍ତି ତାହାଙ୍କୁ । ନାଶ ହୋଇବ । ପୂର୍ବର ଦୁଷ୍କୃତ ସକଳ । ନିଷ୍ଠା ଶାନ୍ତି ଅନୁବରତେ ଡାକିଲେ ପ୍ରସନ୍ନ ହେବେ

Digitized by srujanika@gmail.com

ଆଦ୍ୟମୂଳ । ୧୦ । ଝାଣ ନ କରଣ, ଝିକେ କର ଧ୍ୟାନ, ତତ୍ତ୍ୱ ପଦ ଭାବ ହୃଦୟରେ । ଝାଳ ରହ ନିତ୍ୟ, ତରିବ ଯେମନ୍ତେ, ଝଲ ଭ ପଲ୍ଲବ ସଂସାରେ । ଝୋପ ଖାଉରୁ, ଝାଣି ନେବେ ନିଶ୍ଚେ ଶ୍ରୀଗୁରୁ । ଝଲମଲ ନୁହ, ହୁଅ ତେଷ ନିର୍ଭୟ, ଝିକେ ପିଅ ସୁଧା ପଦ୍ମରୁ । ୧୧ । ଠାକୁର ଅଟନ୍ତି, ଠାବ କର ନିତ, ଠଣ ମୁରତିଙ୍କ ପାଦରେ । ଠିକେ ଲୟ କର, ଠକ ନ ବସ୍ତୁର, ଠିକାଅ ମନ ନିରନ୍ତର । ଠିଆ ହୋଇଣ । ଠାକୁରଙ୍କୁ କର ଦର୍ଶନ । ଠାପୁଆ ଅନନ୍ତ, କନ୍ଧୁଅଞ୍ଜୁ ସତ, ଠୁଳ ବ୍ରହ୍ମ ହେବେ ପ୍ରସନ୍ନ । ୧୨ ।

(ଡ) ଡର ନାହିଁ ଆଉ, ଡାକ ମହାବାହୁ, ନେଉର ଶୂନ୍ୟ ଶରେ ଶରୀରୁ । ଡହ ଡହ ଜ୍ୟୋତି, ଜଳୁଅଛି ନିତି, ଡର ଗ୍ରନ୍ଥି ଧରି ତାହାଙ୍କୁ ଡଙ୍ଗା ଉପରେ । ଡ଼ଙ୍ଗର ଚେତଣ ମନରେ । ଡର ନେଇ ବସ ଡୋଳେ ହେବ ଦୃଶ୍ୟ, ଡାକ ଉଚ୍ଚେ ପ୍ରେମ ଭକ୍ତିରେ । ୧୩ । ଢଙ୍ଗ ରଙ୍ଗ ମତ, ଢାଳଅଛି ନିତ, ଢୋକୁଅଛ ନାଗ ଗରଳ । ଢାକିଲ ହେଲେ ଶରୀର, ନ ଭାବୁଛ ନିତ୍ୟ, ଢମେ ପଡ଼ି ହୁଅ ପାଗଳ । ଢଙ୍ଗ କଥାରେ । ଢାଳଅଛ ମନ ଚରଣ । ଢାକୁଣୀ ଫେଡ଼ିଣ, ଦେଖ ସୂର୍ଯ୍ୟ ଦେହେଣ, ବିଜୟେ ସ୍ୱୟଂ ପରଂ ବ୍ରହ୍ମ । ୧୪ । ଅଣାକ୍ଷରେ ଧ୍ୟାନ, ଅନୁବ୍ରତେ ମନ, ଅହଂ ଚେତନ କର ନିତ । ଅଶେଷ ଭାବରେ, ଅନା ବିବେକରେ, ଅଛନ୍ତି ସେ ଗୁରୁ ମୂରତି । ଅନୁସରଣ । ଅନୁବ୍ରତେ ଦେଖ ସୁଜନ । ଅନେକେ ଜନ୍ମର, ଅଘ ହେବ ଦୂର, ଅମୃତ ପୁରରେ ହେବ ସ୍ଥାନ । ୧୫ । ତତ୍ତ୍ୱରେ ଚାହିଁଲେ, ତରିବୁ ତୁ ଭବ, ତ୍ରିଗୁଣ ହୋଇବ ଛେଦନ । ତତ୍ତ୍ୱ ତାରକଙ୍କୁ, ତେଲକର ତାଙ୍କୁ, ତରଳ ବୁଦ୍ଧିକୁ ଚେତନ । ତାଙ୍କ ଭଜନ । ତତ୍ତ୍ୱେ କର ଗୁରୁ ଚରଣ । ତିନି ତ୍ରୈଲୋକ୍ୟରେ, ତୋର ନାମ ନରେ, ତତ୍‌ବେ ଶୁଣି ବେଦ କଣ୍ଠ । ଥକାଅ ମନରେ, ସ୍ଥିର ସ୍ୱଭାବରେ, ଥାଉଁ ଥାଉଁ ବୁଦ୍ଧି ଶୋଧରେ । ଥୟ ସୂକ୍ଷ୍ମ ଧର, ସ୍ଥାନକୁ

Digitized by srujanika@gmail.com

ଆବୋର, ଥୋଷ୍ଟ ପଣ କର ନିବାର । ସ୍ଥିତି ପାଇବ । ସ୍ଥିର ଭୁବନରେ ରହିବ । ଥର ଥର ପୁଣି ସ୍ଥିତିରେ ଜନମ, ନୋହି ବକଭବ ମଜ୍ଜିବ । ୧୭ । ଦୁଃଖ ତାପ ଦାଉ ଦଣ୍ଡ ନୋହି ଆଉ, ଦୟାରେ ସେ ପୁରେ ରହିବ । ଦୋଗଧା ସ୍ୱଭାବ, ଦୂର ହୋଇଯିବ, ଦୁର୍ଦ୍ଦଣ୍ଡ ଆଉ ନ ପଡ଼ିବ । ଦୟା ପୋତରେ । ଦଣ୍ଡକେ ତରିବ ସଂସାରୁ । ଦାଉ ଦାଉ ରୂପ, ବିରାଜ ଦଶିବ, ଦୂର ହେବ ଦୁଃଖ ହୃଦରୁ । ୧୮ । ଧର ଦୃଢ଼ କାରି, ଧନ୍ଦାରୁ ନିବାରି, ଧାରଣ ପଥରେ ରହିଣ । ଧନ୍ୟ ଧନ୍ୟ ଯଶ, ଧରଣୀ ଅବଶ୍ୟ, ଧରି ରହୁଥିବ ବଦନ । ଧର୍ମ ନାବରେ, ଧୀରେ ବସ ଏବେ ସଧୀରେ । ଧରିଥା ସମ୍ଭାଳ, କରି ରତ୍ନମାଳୀ, ଧନ୍ୟ ହେବ ନିଶ୍ଚେ ଶିପୁର ।୧୯। ନକର ନିଷ୍ଠୁର, ନତ୍ୟେ ଲୟ କର, ନାଶି କାମ କ୍ରୋଧ ହୃଦରୁ । ନାଶୀ ଧନ ଭାବ ନ ହୋଇ ବିଭବ, ନହି ରୂପେ କାଳ ଆଦ୍ୟରୁ । ନଶ୍ୱ ଭିତରେ । ନିର୍ଭୟରେ ତହିଁ ରହିଛି । ନରେହି ସମସ୍ତ, ନାଶିବ ସବସ୍ତ, ଲୁଚି କାରବାର କରୁଛି ॥ ପୂର୍ଣ୍ଣାନନ୍ଦ ପାଦ, ପ୍ରେମ ହୃଦେ ବାନ୍ଧ, ପରଚେ ହୋଇଣ ଜ୍ଞାନରେ । ପ୍ରୀତି କର ପ୍ରେମେ, ପଶି ସେ ଭୁବନେ, ପବନ ହୋଇବ ସମାନରେ । ପାର ହୋଇବ । ପର ଭୁବନେ ରହିବ । ପରାପର ଜାବ, ହୃଦପୁରୁ ଜାବ, ପୀରତ ପୂନେହରେ ମଜ୍ଜିବ । ୨୧ । ଫୁକା ବନ୍ଧ ହେରେ, ଦା ଶିର ଊର୍ଦ୍ଧ୍ୱରେ, ଫଳଚନ୍ଦ୍ର ରହି ସେଠାରେ । ଫାନ୍ଦ ଗୁରୁ ସୂକ୍ଷ୍ମ ଫେଡ଼ିଣ ତୁରିତ, ଫିଟାଇ ପଣ ସେ ପୁରରେ । ଫଳ ପାଇବ । ଫଳ ଉପେ ବୁଡ଼ି ରହିବ । ଫଳ ଯଣ କାର୍ତ୍ତି, ଫରଫର ନାଦ, ଫୁତ୍କାର ଶବ୍ଦ ଉଡ଼ିବ ।୨୨। ବସ ମନ ସୂତ୍ରେ, ବନ୍ଧି ଯୋଗ ମନ୍ତ୍ରେ, ବଳାତ୍ କଲ୍ୟାଣକୁ ମାରି । ବଙ୍କୁନାଳ ପଥରେ, ବଜେ ସେ ଠାବରେ ବବେକରେ ଦେଖ ବିସ୍ତରି । ବଶୀ ହୋଇବ । ବିଜ୍ଞାନ ସଙ୍ଗ ରହିବ । ବ୍ରହ୍ମାନନ୍ଦ ମଗ୍ନ, ବଧିରେ ହୋଇଣ, ବିଶ୍ରାମ ହେବ ତମ ଆସିବ । ୨୩ । ଭବ ସଂସାରରେ,

Digitized by srujanika@gmail.com

ଗୁରୁଙ୍କ ଚରଣରେ, ଆଉ ନ କରନ୍ତି ବିଚାର । ଶୁଦ୍ଧ ଭକ୍ତି କରି, ଭକ୍ତ ପଥ ଧରି, ଭବରୁ ହୋଇବ ଉଦ୍ଧାର । ସ୍ୱାର୍ଥି ନ ଥିବ । ଭକ୍ତରେ ମୁକତି ମିଳିବ । ଭାବ ଜ୍ଞାନ ଧ୍ୟାନ ଅନନ୍ତ କହଇ ଭାବ ବିନା ପାପ ହୋଇବ ।

(ମ) ମହିମା ନାମକୁ ମନରେ ତାହାଙ୍କୁ ଧ୍ୟାନରେ କରି ଦେଖ ଭଜନ । ଅହିତ ମନରେ ମଳିନ ଚିତ୍ତରେ ମିଥ୍ୟାରେ ଆଉ ହେବ ନ ଭ୍ରମ । ମନ ଜାଣିଣ । ମହିମା ହୋଇବେ ପ୍ରସନ୍ନ । ମରଣରେ ଲକ୍ଷ୍ୟ ମାନେ ହେବ ଜନ୍ମ ମନୋଯୋଗ ଥିବ ଭୁବନ ।୨୫। ଜାଣୁ ଜାଣୁ ପୁଣି ନ ଜାଣୁଛି ଜାଣ, ଯମଦଣ୍ଡ ନଷ୍ଟ ହୋଇବ । ଜଗତେ ରକ୍ଷିବ ଯତନରେ ଅଛି ଜାଗ୍ରତରେ ବାଧା ନ ଥିବ । ଜୀବ ଜୀବନ । ଜଗତେ ଜାଣିବ ସୁଜନ । ଜୀଇବା ମରିବା ସମାନ ଅଟଇ ଯତନେ ଏହାକୁ ଦେଖ ଭେଦ । ୨୬ । ରଙ୍ଗମୟ ଏହି ସଂସାର ଅଟଇ ଯତନେ ଦେଖ ହୃଦୟରେ । ରସ ନାହିଁ କେବେ ରଙ୍ଗ ମାୟା କେଲିରେ ରତ୍ନ ଖୋଜ ଗୁରୁ ମୂରତିରେ । ଦୂର ତମକୁ । ରକ୍ଷ ବାକ୍ୟ ଦୁର କରିଣ । ରଖ ବ୍ରହ୍ମ ପ୍ରେମ ଭକ୍ତି ଭାବେ ମନ ନିରିତରୁ ହୋଇବୁ କାରଣ ।୨୭। ଲାଗି ରହିଛନ୍ତି ଲବେ ନ ଦିଶନ୍ତି ଲବ୍ଧ ଲୋକେ ଦୁର୍ଲଭ ହୁଅନ୍ତି । ଲକ୍ଷ୍ୟ କରିଲେ ମନେ ଲୋକ ଧାଇଁଲେ ଲାଗି ପାଖେ ଆସି ରହନ୍ତି । ଲଭ ହୁଅନ୍ତି । ଲକ୍ଷ ଭୁବନରେ ଥାଆନ୍ତି । ଲକ୍ଷ ଲକ୍ଷ ଜନେ ଲାଗି ସେବା ଯେବେ ଲକ୍ଷଣରେ ପୂର୍ଣ୍ଣ କରନ୍ତି ।୨୮। ବୃଦ୍ଧ ବେଶ ଧରି ବ୍ରହ୍ମାଣ୍ଡ ବିହରି ବାଣ୍ଟୁଛନ୍ତି ଧର୍ମ ସଂସାରେ ॥ ବୁଦ୍ଧି ବିବେକରେ ବିଳାସ ବଳରେ ବାଛି ଧରି ଏବେ ସତ୍ତ୍ୱରେ । ବିଷ ବିଷୟ । ବିଳଗ କରି ମୋହ ମାୟା । ବ୍ରହ୍ମାଣ୍ଡରେ ଜାଣ ନିଜେ ମହାବ୍ରହ୍ମ ବିଷୟରେ ନୁହ ବାଇଆ ।୨୯। ଶ୍ରୀଗୁରୁଙ୍କ ନାମ ଶ୍ରଦ୍ଧାରେ କୀର୍ତ୍ତନ ଶୟନେ ସ୍ୱପନେ ସୁମନ । ଶରୀରେ ଜୀବନ ଯାଏ ଅଟେ ଜାଣ ଯାଉ ଶ୍ରମେ ହୁଅ ସ୍ଥିର । ଶାନ୍ତ ହୋଇବ । ଶରୀରେ ଇନ୍ଦ୍ରିୟ ସକଳ ।

Digitized by srujanika@gmail.com

ସାଧନରେ ଯାହା ସାଧ ହୁଦେ ଏହା ସାଧିଲେ ହୋଇବ ନିର୍ମଳ ॥ ଷଡ଼ରିପୁ ଭେଦ ସୁଧୃତି ରେ ମନ୍ତ୍ର ଶରମ ହୋଇବ ସଫଳ । ସଦା-ବେଳେ ମନ୍ତ୍ର ଶାସ୍ତ୍ର ବାକ୍ୟ ବୁଝି ଶକ୍ତିକ ନ କର ବିଫଳ । ସାର ପାଇବ । ସଂସାରେ ଜାଗ୍ରତ ରହିବ । ଶ୍ରୀଗୁରୁ କୃପାରୁ ସଂସାର ସାଗରୁ ସୁସ୍ଥ ଭାବରେ ତରିଯିବ । ୩୧ । ଶ୍ରୀଗୁରୁଙ୍କ ଠାରେ ଶରଣ ଶ୍ରଦ୍ଧାରେ ସନ୍ତୁରେ ଯାଅ ନେଯ ନିକାଳେ । ସଦଗୁରୁ ନାମ, ସର୍ବଦା ଗାୟନ ସଧୀରେ ଗୁଣଗାନ କାଳେ । ସଙ୍ଗ ହୋଇବେ । ଶେଷବେଳେ ସଙ୍ଗେ ଚଳିବେ । ସଂସାରରେ କେହି ସଙ୍ଗ ହେବ ନାହିଁ ସର୍ବେ ଅତି ଦୂରେ ରହିବେ । ୩୨ । ହିତ ହୋଇଯିବ, ହିତପଥ ଭାବ ହତ୍ୟାରେ ନ ହୁଅ କାରେଣ । ହରବର ନୁହ ହୁଦେ ଭାବ ରୁହ ହରଣ ହେବ ପାପ ଖଣି । ହଠ କଥାରେ, ହାଜର ମନକୁ ନ କର । ହିତ ବିବେଚନା ହୁଦେ ଭାବ ଜନା ହିତରେ ଚଳ ନିରନ୍ତର ।୩୩। କ୍ଷମା ହେବ ଦୋଷ କ୍ଷଣକେ ଅବଶ୍ୟ ଖଣ୍ଡି କଲେ ସେବା ଭକତି । କ୍ଷିତି ମଣ୍ଡଳରେ ଖରାପ ବୁଦ୍ଧି ରେ କ୍ଷଣେ ନ ବଅ ଆଉ ମତି । କ୍ଷମା ହୋଇବ । ଖଣ୍ଡି ହେବେ ଭକ୍ତି କରିବ । କ୍ଷେମେ କହେ ଦୀନ, ଅନାମ ନନ୍ଦନ, କ୍ଷିତିରେ ସୁଯଶ ପାଇବ । ୩୪ ।

—୦—

## ପ୍ରାର୍ଥନା

( ଅଲେଖ ବ୍ରହ୍ମ )

( ୨୧ )

(କ) କରୁଛି ଆର୍ତ୍ତେ ଜଣାଣ । କୃପା କର ମୋତେ କର କାରଣ । ଅଲେଖ ବ୍ରହ୍ମ । କଅଁଳେ ଗଲି ଶରଣ । ୧ । କ୍ଷୀର ସିନ୍ଧୁ ବାସୀ ତୁମ୍ଭେ । ଯିତିରେ ମୂରତିମନ୍ତ ଲୀଳା ଭାବେ । ଅଲେଖ ବ୍ରହ୍ମ । କ୍ଷୟ ବୁଦ୍ଧି ନୁହ କେବେ ଗର୍ବ ଗୁମାନେ ମୋ ମତି । ଗୌରବ

Digitized by srujanika@gmail.com

ହୋଇ ନ ରହେ ଏ ଛିତ । ଅଲେଖ ବ୍ରହ୍ମ । ଗାଏ ନାହିଁ ତବ ଗୀତ । ୩ । ଘଟେ ଘଟେ ତୁମ୍ଭେ ଅଛ । ଘଟନେ ବଦ୍ୱ୍ୟ ପ୍ରାପ୍ତେ ଲୀଳା କରୁଛ । ଅଲେଖ ବ୍ରହ୍ମ । ଘଟରେ ସର୍ବ ଭୁଲୁଛ । ୪ । ଅନୁସରୁଛି ମୁଁ ନିତ । ଅନାଥ ଭାବରେ ମତ୍ତଧରନ୍ତ । ଅଲେଖବ୍ରହ୍ମ । ଅନ୍ତ ନ ପାଇ ଭ୍ରମୁଛି । ୫ । ସଦାନନ୍ଦ ପ୍ରଭୁ ତୁମ୍ଭେ, ଚରାଚର ପୂର୍ବ ରହିବ ଭବେ । ଅଲେଖ ବ୍ରହ୍ମ । ଶବ୍ଦାଟରେ ଡାକେ ମୁଁ ଏବେ । ୬ । ଛନ୍ଦ ମାୟା ମୋହେ ପଡ଼ି । ହ୍ରଡ଼ ନ ପାରୁଛି ମାୟା ଜଡ଼ । ଅଲେଖ ବ୍ରହ୍ମ । ଛଛନ୍ଦେ ଯାଏ ମୁଁ ବୁଡ଼ି । ୭ । ଜଗତ ଜୀବନ ନାଥ । ଜଗତରେ ତବ ଆଶ୍ରା ଉଦିତ । ଅଲେଖ ବ୍ରହ୍ମ । ଯାଅ ଆସ ଯେ ନିରତ ।୮। ଝଟନ୍ତି ବୁଝି ଗୁହାରି । ଝଗଡ଼ା ସଂସାରୁ ନିଅ ଉଦ୍ଧାରି । ଅଲେଖ ବ୍ରହ୍ମ । ଝୁଲି ରଖ ନିଜ ପୁରୀ ।୯। ନିତ୍ୟ ନିରଞ୍ଜନ ବ୍ରହ୍ମ । ନିତ୍ୟାନନ୍ଦ ଭାବେ ଅଛ ରହିଣ । ଅଲେଖ ବ୍ରହ୍ମ । ନିରନ୍ତରେ ଗାଏ ଧ୍ୱନି । ୧୦ । ଟଳମଳ ଶରୀରେ ମୁହିଁ । ଟଳି ଯାଉଅଛି ଏ ଭବେ ଥାଇ । ଅଲେଖ ବ୍ରହ୍ମ । ଟାଣେ ରଖ ଦୟା ବହି । ୧୧ । ଠାକୁର ତିନି ଭୁବନେ । ଠିକେ ଭାବେ ବ୍ୟାପୀ ଅଛ ଯତନେ । ଅଲେଖ ବ୍ରହ୍ମ । ଠକାନନ୍ତ ଭାବେ ମନେ ।୧୨।

(ଢ) ଡରୁଛି ଭବେ ଜନ୍ମି ଣ । ଡରଭୟ ମୋର କର ବାରଣ । ଅଲେଖ ବ୍ରହ୍ମ । ଡାକେ ମୁଁ ଆର୍ତ୍ତ ହୋଇଣ ।୧୩। ଢଳ ଢଳ ତବ ଜ୍ୟୋତି । ଢଳୁଅଛି ମୁଁ ହେ ଏ ନବ ଛିତି । ଅଲେଖ ବ୍ରହ୍ମ । ଢାଳେ ରଖ ତବ କତି । ୧୪ । ଅନୁକ୍ଷଣେ ଶରୀ ପରେ, ଅଶେଷ ଭାବେ ଅଛଇ ସଂସାରେ । ଅଲେଖ ବ୍ରହ୍ମ । ଅଙ୍ଗ ଦୁର୍ବଳ ଭାବରେ । ୧୫ । ତତ୍ତ୍ୱ ପଦ ତୁମ୍ଭେ ପୁଣ । ତିନି ତ୍ରିଲୋକ୍ୟରେ ଅଛ ରହିଣ । ଅଲେଖ ବ୍ରହ୍ମ । ତୁରତେ ଦିଅ ଦର୍ଶନ । ୧୬ । ଥରୁଛି ଦେବମ୍ୟ ବିତ । ଥୟ ହେଉନାହିଁ ମୋ ଶରୀର ମତ । ଅଲେଖ ବ୍ରହ୍ମ । ଥୟ କର ଦେଇ ଭକ୍ତି । ୧୭ । ଦୁଃଖିଜନ ବନ୍ଧୁ ହୋଇ । ଦୁଃଖ ନ ଶୁଣୁଛ ମୋର

Digitized by srujanika@gmail.com

କମାଇଁ । ଅଲେଖ ବ୍ରହ୍ମ । ଦୟା କର ଦେହ ଦେଖାଇଁ । ୧୮ । ଧର୍ମ ପୁରୁଷ ତୁମ୍ଭେ ତ । ଧରଣୀରେ ଏବେ ହୋଇ ଉଦିତ । ଅଲେଖ ବ୍ରହ୍ମ । ଧର୍ମ କଲ ସ୍ଥାପିତ ॥ ନର ଦେହେ ଏବେ ବନ୍ଧ ନ ରହୁଛି ତବ ମାନେରେ ଧାଇ । ଅଲେଖ ବ୍ରହ୍ମ । ନାନା ପଥରେ ଗମଇ ।୨୦। ପୂର୍ଣ୍ଣାନନ୍ଦ ଚରଣରେ । ମୁକ୍ତି ରହିଅଛି ସତବରରେ । ଅଲେଖ ବ୍ରହ୍ମ । ପ୍ରୀତି ତବ ସବଠାରେ । ୨୧ । ଫାନ୍ଦେ ମାୟା ଜାଲେ ଥାଇଁ । ମୃତ୍ୟୁଣା ଶରେରେ ଭ୍ରମଇ ମହୀ । ଅଲେଖ ବ୍ରହ୍ମ । ଫେଡ଼ ମୋ ଦୁଃଖକୁ ଗୃହିଁ । ୨୨ । ବ୍ରହ୍ମାଣ୍ଡେ ତୁମ୍ଭେ ବ୍ୟାପିଛ । ବଳେଗ ରହଣ ସବ ଦେଖୁଛ । ଅଲେଖ ବ୍ରହ୍ମ । ବଧରେ ସର୍ବ ଗୃଲୁଛ ।୨୩। ଭକ୍ତି ତବ ଠାରେ ମୋର । ଭୟେ ନ ରହୁଛି ହୋଇ ଅସ୍ଥିର, ଅଲେଖ ବ୍ରହ୍ମ । ଭାବଇ ଅନନ୍ତ ସ୍ଥୂର । ୨୪ ।

(ମ) ମହତ ମହିମା ଯାଇଁ । ମହୀ ମଣ୍ଡଳରେ ଉଦୟ ହୋଇ । ଅଲେଖ ବ୍ରହ୍ମ । ମହତଙ୍କୁ କଲ ସାହି । ୨୫ । ଜାଣି ମୁଁ ଏହା ଅନ୍ତରେ । ଜଣାଉଛି ଏଣୁ ତବ ଛାମୁରେ । ଅଲେଖ ବ୍ରହ୍ମ । ଯତନେ ରଖ ଚାଣରେ ।୨୬। ରସରେ ରସ ହୋଇଛ । ରସ ମାୟା ନଶ୍ରେ ନଳ ବ୍ରତ ଅଛ । ଅଲେଖ ବ୍ରହ୍ମ । ରସାକୁ ପଡ଼ ଭୁଞ୍ଜ ।୨୭। ଲୟ ମୁଁ ଏଣୁ କରଣ । ଲୟାଙ୍ଗ ତୁମ୍ଭଙ୍କୁ କରିଣ ଧ୍ୟାନ । ଅଲେଖ ବ୍ରହ୍ମ । ଲୟ କର ଦେଇ ଜ୍ଞାନ । ୨୮ । ବରଜ କରିଛ ଯେଣୁ । ବୈରାଜ ପୁରୁଷ ନାମଟି ତେଣୁ । ଅଲେଖ ବ୍ରହ୍ମ । ବଧିରେ ଜଣାଏ ଏଣୁ । ୨୯ । ଶିଥିଳ ମୋହର ମନ । ଶାନ୍ତ ବୁଦ୍ଧି ଧରି ନ ରହେ ପୁଣ । ଅଲେଖ ବ୍ରହ୍ମ । ସ୍ନେହଦୟା କର ଆପଣ । ୩୦ । ସନାତନ ଭାବେ ଅଛ । ନଧରେ ସର୍ବ ଜୀବକୁ ଗୃହୁଛ । ଅଲେଖ ବ୍ରହ୍ମ । ସୂକ୍ଷ୍ମରେ ସୂକ୍ଷ୍ମ ହୋଇଛ ।୩୧। ଷଡ଼ ଅରି ମୋତେ ଚଡ଼ । ସଧାର ତୁମ୍ଭଙ୍କୁ ଦେଇଣ ଛାଡ଼ । ଅଲେଖ ବ୍ରହ୍ମ । ସନ୍ତାପେ ଯାଏ ମୁଁ ବୁଡ଼ ।୩୨। ହରବା କରବା ତୋହର । ହୃଦେ ଥାଇ ପୁଣି ବଳାଓ

Digitized by srujanika@gmail.com

ହୋଇ । ଅଲେଖ ବ୍ରହ୍ମ । ହରଷ ବରମ ନାହିଁ । ୩୩ । କ୍ଷମା ହେଉ ମୋର ଦୋଷ । କ୍ଷଣିକ ସୁଖ ମୋ ନୋହୁ ବଶ୍ୟାନ । ଅଲେଖ ବ୍ରହ୍ମ । ଅନନ୍ତର ଏହୁ ଆଶ । ୩୪ ।

—o—

( ପୈଢସାଧୁ ବାମନ ବାବାଙ୍କର )

( ୭୩ )

( ରାଗ—ନୈରୂଖ )

(କ) କୃପାମୟ ଅପାକାର, କ୍ଷମା ନର୍ଦ୍ଧୟ ମୋ ଠାର, କାକୁସ୍ଥରେ ଜଣାଉଛି ତବ ପୟରେ । କୁଧା ନୋହିଲ ଭୂମ୍ଭର, କେ ଖଣ୍ଡିବ ଦୁଃଖ ଭାର, କଷଣ ପଡ଼ିଲା ନେବକୁଁ ବେଳ ହୃଦରେ । କାନ୍ଦ କାକୁସ୍ଥରେ ଡାକୁଛି କରୁଣା ସାଗର ବୋଲି ହୃଦରେ ଇଚ୍ଛି । କ୍ଷିତ ପତ୍ତ ଉଦେ ଥାଇ, ଖଳ ଦୁର୍ବଳ ମୋ ଦେଖି, ଖିନ କରୁଅଛି ଭାଙ୍ଗ ତପ ସମାଧି । ଖଣ୍ଡିବାକୁ ଶ୍ରୀପୟର, କ୍ଷମତା ନାହିଁ ମୋହର, ଖୋଜି ନପାରୁଛି ଶତେ ଅବଧୂନଧି । ଖଣ୍ଡନ ନକଲେ ଦ୍ରଷ୍ଟ । କ୍ଷୟ ହେବ ଜୀବ ସଦା ମାୟାରେ ମାତ୍ତ ॥ ଗୁରୁ ରୂପ ଧରି ଅଛ, ଗୁହାରି ମୋ ନ ଶୁଣୁଛ, ଗୋଲୋଖ ବୈକୁଣ୍ଠ ନାଥ ହେ ଶୂନ୍ୟବାସୀ । ଗହନ ମାୟା ସାଗରୁ, ଜ୍ଞାନମୟ କଳ୍ପତରୁ, ଗତ ନାଥ ନେଇ ରଖ ଯାଉଛି ଭାସି । ଗତମୁକ୍ତ ଦାତା ଶ୍ରୀଗୁରୁ । ଗୁହାରି ନ ଶୁଣ କ୍ଷମା ମହିମା ମେରୁ ।୩। ଘୋର ସନ୍ତାପରେ ପଡ଼ି, ସୁଜ୍ଞାନ ଦେଇଛି ଛାଡ଼ି, ଘାରି ହୋଇ ନରନ୍ତରେ ମାୟା ମୋହରେ । ଘେନଣ କରୁଣା ନାବପାରି କର ଭବାର୍ଣ୍ଣବ, ଘୋର ବପତ୍ତିରୁ ତାର ତୁମ୍ଭ ଦୟାରେ । ଘେନ ବାରେ ଦୁଃଖ ଜଣାଣ । ଘଟେ ପୂରିତ ନାଥ ହେ ପରବ୍ରହ୍ମ । ୪ । ଉଦ୍ଧାର ନ କଲେ ଗୁରୁ, ଅଜ୍ଞାନ ମାୟା ଜାଲରୁ, ଏ ତିପୁର ଜଗତରେ ନାହିଁ ମୋ ବାସ । ଆଶ୍ରୁ ଜୀବ ଉଦ୍ଧାରଣ, ବୋଲି ପଶିଛି ଶରଣ ଅନ୍ତର୍ଯାମୀ ମୋ ଅନ୍ତରବେଦନା ନାଶ । ଅକଳ୍ପିତ ମହିମା

Digitized by srujanika@gmail.com

ମେରୁ, ଉଦେ ହୋଇଅଛ ପ୍ରଭୁ ମନ୍ଦା ନତ୍ୟରୁ ।୫। ଚିନ୍ତାମଣି ନାଥ ଥାଇ, ଚିନ୍ତା ନ ହୋଇଲା ଦନ୍ଧେ ଚିର କାଳ ଗଲା କନ୍ଧେ ଚିନ୍ତା ସ୍ରୋତରେ ଚରଣେ ଶରଣ ରଖ, ହେ ଗୁରୁ ବ୍ରହ୍ମ ଅଲେଖ, ଚିତ୍ତକ ଚରଏ ଚୁହିଁଛୁ ନିରନ୍ତରେ । ଚେତାହେଜୁ ଯାଉଛି ବୁଡ଼ି । ଚିରକାଳ ମାୟା ମୋହେ ଜନ୍ମୁଛି ଚଢ଼ି ।୬। ଛନ୍ନ ଛନ୍ନ ହୋଇ ମନ, ଛନକା ମୋହେ ଉଛନ୍ନ, ଛବ ଚୁଭୁସରେ ମାତିଅଛି ନିରତ । ଛୁଡ଼ି ତବ ନାମାମୃତ, ଛଦ କପଟରେ ଲିପ୍ତ, ଛନ୍ଦ ହୋଇ ରହିଅଛି ଜୀବ ସ୍ୱତନ୍ତ୍ର । ଛେଦନ କର ହେ ସ୍ୱାମୀ ଗୁରୁ । ଛଡ଼ି ରିପୁ ତାନମାନ ମନ ହୃଦରୁ ।୭। ଜୀବ ନଟକୂଟେ ପଡ଼ି, ଯାଉଅଛି ବ୍ୟର୍ଥ ଯିଡ଼ି, ଜାଣି ନ ପାରୁଛି କିଛି ମୋହେ ମଜିଛି । ଜଗତକର୍ତ୍ତା ଅଲେଖ, ଜଣାଉଛି ଜାତେର ରଖ, ଯାଉଅଛି ଭବେ ଭ୍ରମି ଅପ୍ତୁ ନୋହୁଛି । ଯେମନ୍ତେ ଜନ୍ମୁହୁଁ ନୋହିବ । ଜୀବ ଅଜ୍ଞାନରେ ପଡ଼ି ନାଶ ହୋଇବ ।୮। ଝାଡ଼ର ଭିତରେ ପଡ଼ି, ଝଞ୍ଜାକାରେ ଗଲା ଜଳି, ଝାମ ମାୟା ବାତ ଝାଡ଼େଡ଼େହେଲା ଅଥୟ । ଝଟକରେ ଦୟାବନ୍ଧ, ଝଞ୍ଜାକାରୁ ତାରିନିଅ, ଝାଙ୍କ ନାମ ଘରେ କୃପା ହୃଦୟରେ ଥୁଅ । ଝଡ଼ପଡ଼ୁ କଳୁଷ ବାତ । ଝଟକରେ ବୁଝ ଆହେ ଜଗତ ପତି ।୯। ଞେଉଅଛି କାଳ ହାତ, ଞଟକୂଟ ମାୟା କରି, ନୟନ ଗୋଚରେ ରହି ଚଉକୁ ହରେ । ଞବାର କର ହେ ସ୍ୱାମୀ, ନାଥ ପୂର୍ଣ ଅନ୍ତର୍ଯାମୀ, ନିରନ୍ତରେ ତବ ଞାଦେ ଗୁହାରି କରେ । ନୋହିଲେ କରୁଣା ସ୍ୱାମୀରୁ । ନାହିଁ ଟେକ୍ୟ ତରିବାକୁ ଭବ ସାଗରୁ ।୧୦। ଟାଣି ମୋହଜ୍ଞରେ ପଡ଼ି, ଟଳି ଯାଉଅଛି ବୁଡ଼ି, ଟିକେକ ମାତ୍ରକେ ଟାଣ ନାହିଁ ତା ହୃଦେ । ଟିକେକ ମାନ ଦୟା କରି ଆହେ ଗୁରୁ ଶୂନ୍ୟଦେହୀ, ଟୋପୁ ଉଦ୍ଧାରଣ ରଖ ଅଭୟ ପାଦେ । ଟଳ ଯାଉଅଛି ଅଜ୍ଞାନେ । ଟାଳ ନ ପାରୁଛି ଜୀବ ତୁମ୍ଭ ଚରଣେ ।୧୧। ଠକ ନେଉଅଛି କାଳ, ନ ମିଳୁଛି ଥଳକୂଳ, ଠୁଳ ଶୂନ୍ୟବାସୀ ଉଦେ ଥାଇଁ ଜଗତେ । ଠିକଣାରେ ଦୟାବନ୍ଧ,

Digitized by srujanika@gmail.com

ଗୁରୁ ବ୍ରହ୍ମ ଶୂନ୍ୟଦେଖି, ଠାବ ନୋହିଲ ରଖି ତୁମ୍ଭ ଶ୍ରୀପାଦ ଗତେ । ଟିକେ କଲେ ବାମନ ଧ୍ୟାନ । ଠାକୁର ଅନ୍ଧାପୁ ପାଲେ କାହାଣ ଧ୍ୟାନ । ୧୨ ।

(ଙ) ଉର ମାତ୍ର ଅଛି ଦେଖି ଏ ଅମାନ୍ତ ଘୋର କଳିକାଳ ଯୁଗରେ । ଡାକ ଡାକ ହୃଦେ ଜମ୍ମ ନ ରହୁଛି ଦିବସ ରଜନୀ କାତରେ । ଗୁରୁ ହେ । ଭକ୍ତର ଭୟରୁ ଉଦ୍ଧାର । ଉଠି ଉଠି କରି ଏ ମହୀ ମଣ୍ଡଳ କି ରୂପେ ହେବ କାରବାର ।୧୩। ଭ୍ରମଣ କରି ଭକ୍ତମାନଙ୍କର ମାତ୍ର ରହିଲେଣି ନିପୁର ଜନେ । ଚିତ୍ତାକୁଳନ୍ତି ବାଷ ନ ମଣିଣ ପ୍ରାୟ ଆନନ୍ଦ ମନେ ଅନୁକ୍ଷଣେ । ଗୁରୁ ହେ, ତାଳେ ଯେବେ ଦୟା ନୋହିବ । ତାଉ ଦୁର୍ଗେ ପଡ଼ି ସବେ ନାଶ ଯିବେ ଏ ବ୍ରହ୍ମାଣ୍ଡ କେହୁ ରଖିବ । ୧୪ । ଉଦ୍ଧାର କରିବା ପାଇଁ ଏ ଜଗତ ଉଦେ ହୋଇଛ କଳିଯୁଗେ । ଉତପାତ ହୋଇ ନବଖଣ୍ଡ ମହୀ ସରିଲାଣି ଅନ୍ୟାୟ ଭାବେ । ଗୁରୁ ହେ । ଆଉ ଜଣାଇବ କାହାକୁ । ଅଖିଳ କରତା ବୋଲି ମହାପ୍ରଭୁ ଆଶ୍ରୟ କରିଛୁ ତୁମ୍ଭଙ୍କୁ ।୧୫। ତୁମ୍ଭ ପିଣ୍ଡ ପ୍ରାଣ ତୁମ୍ଭର ବ୍ରହ୍ମାଣ୍ଡ ରକ୍ଷା ନ କଲେ ସଦ୍ଗୁରୁ । ନିର୍ଗୁଣ ବନ୍ଧନେ ପଡ଼ିକରି ଜୀବ କ୍ଷୟ ହେବ କାଳ ବଳରୁ । ଗୁରୁ ହେ । ଭଲେ ମାଣ ଦୟା ନୋହିଲେ । ତୃଣ ପ୍ରାୟ ହୋଇ କାଳାଗ୍ନିରେ ଦଗ୍ଧ ହୋଇବ ନେତ୍ରେ ନ ଚାହିଁଲେ ॥ ଥର ଥର ହୋଇ କମ୍ପୁଅଛି ମହୀ ଘୋର କଳିକାଳ ପାପରେ । ଥୟ ହେଉ ନାହିଁ ପିଣ୍ଡେ ପ୍ରାଣ ମୋର ପଡ଼ିଣ ନିବିଧ ତାପରେ । ଗୁରୁ ହେ । ଥାନ ଥିତ ନାହିଁ ମିଳୁଛି । ଥାଉଁ ଥାଉଁ ଗୁରୁ କାଳ ମାୟା ମୋହ ବଅର୍ଥରେ ହରି ନେଉଛି ।୧୭। ଦୟା ବନ୍ଧା କରି ଦୁଃଖ ମହାଘୋରୁ ନ ରଖିବ ଯେବେ ଜୀବକୁ । ଦୁଃଖି ଜନ ବନ୍ଧୁ ବୋଲି ମହାପ୍ରଭୁ ଡାକନ୍ତି ଭକତେ ତୁମ୍ଭଙ୍କୁ । ଗୁରୁ ହେ । ଦୁଃଖ ସାଗରେ ଭାସିଗଲି । ଦିବା ନିଶି ପାଦପଦ୍ମ ଆଶ୍ରେ କରି ଅନାଥ ପ୍ରାୟେ ଏବେ ହେଲି ।୧୮। ଧନ୍ଦ ହେଉଛନ୍ତି ଧରଣୀରେ

Digitized by srujanika@gmail.com

ପଡ଼ ହୃଦେ ସୁବୁଦ୍ଧି ପଶୁନାହିଁ । ଧର୍ମଧାମ ପ୍ରଭୁ କରୁଣା କରଣ ଉଦ୍ଧରଣ କର ଏ ମହୀ । ଗୁରୁ ହେ । ଧ୍ୱଂସକର ପାପ ଗଣଙ୍କୁ । ଧର୍ମ ଉଦେ କର ଧରଣୀ ଉଶ୍ୱାସି ରଖ ତୁମ୍ଭ ଭକ୍ତବୃନ୍ଦଙ୍କୁ । ୧୯ । ନବ-ଖଣ୍ଡ ପୃଥ୍ୱୀ ହେଲଣି ଅନ୍ତ କେମନ୍ତ ଉଦ୍ଧାର ଜଗତ । ନଶି ଦବମରେ ମାତ୍ର ଅଜ୍ଞାନରେ ଧର୍ମ ଏଥିରୁ ହେଲେ ଚ୍ୟୁତ । ଗୁରୁ ହେ । ନତ୍ରାଣ ନ କରଣ ସ୍ୱାମୀ । ନାମ ଅନଳରେ ଭସ୍ମ କରିଦିଅ ସର୍ବ ଦୁରିତ ଅନ୍ତର୍ଯ୍ୟାମୀ । ୨୦ । ପାପକ ସାଗରେ ଭାସିଯିବ ମହୀ ସୁଦୟା ନୋହିଲେ ତୁମ୍ଭରୁ । ଭ୍ରମସ୍ତ ଜଳରେ ପଡ଼ି ଭାସୁଅଛୁ ନାହିକର ଆହେ ଶ୍ରୀଗୁରୁ । ଗୁରୁ ହେ । ପିଣ୍ଡ ପ୍ରାଣ ତବ ମଧ୍ୟରେ ମାର ତାର ସ୍ୱାମୀ ଯେ ତୁମ୍ଭର ଇଚ୍ଛା ଅନ୍ୟ ଶରଣ ନାହିଁ ମୋତେ ।୨୧। ଫାନ୍ଦ ପାତି କାଳ ଧରି ନେଉଅଛୁ ନବ ଗୃତ୍ତିକ ଦେଖାଇ । ଫୁଲ ପଣେ ମାତ୍ର ରହିଲେଣି ସର୍ବେ କାହାରି ହୃଦେ ଜ୍ଞାନ ନାହିଁ । ଗୁରୁ ହେ । ଫାନ୍ଦ ଫାଶେ ପଡ଼ି ଜଗତ । ଫଣା ନାବେ ବସି ଯାଉଅଛୁ ଭାସି ବାରେ ରକ୍ଷାକର ଅନନ୍ତ । ୨୨ । ବଳକତ ଚଉ ଅଶେଷ ଜଗତ ହୃଦେ ଦମ୍ଭ ନାହିଁ କାହାର । ବେକୁନ୍ଦବଳ ପାପ ଭାର ଘୋଟୁଅଛୁ ଉଦ୍ଧର ଧର ଅଣାକାର । ଗୁରୁ ହେ । ବୁଝାମଣା ଯେବେ ନୋହିବ । ବଅର୍ଥେ ସର୍ବେ ନବଖଣ୍ଡ ମହୀ ତୁମ୍ଭ ବିନା କେହୁ ରଖିବ । ୨୩ । ଭବ ଜଳେ ପଡ଼ି ଭାଳ ମରୁଅଛୁ ହୃଦଯ୍ୟାନ୍ତୁରେ ନିରନ୍ତର । ଭାବଗ୍ରାହୀ ନାଥ ଭକ୍ତ ବନ୍ଧୁ ବୋଲି ଆଶ୍ରେ କରିଅଛୁ ପଦ୍ମର । ଗୁରୁ ହେ । ଭବ ଭୟରୁ କର ପାର । ଭାବ ଭାବ ଧନ ବାମନ ଅଜ୍ଞାନ ନଟ୍ୟେ ମରୁଛୁ ଝୁରି ଝୁରି । ୨୪ ।

(ମ) ମାୟା ସ୍ରୋତରେ ଜୀବ ଧାଉଛୁ ଭାସି । ମିଥ୍ୟା ପାପ ସାଗରେ ହୋଇଣ ଦୋଷୀ ସେ, ମହାମାରେ । ମାୟାଜାଲୁ ଉଦ୍ଧାର କର ଶ୍ରୀଗୁରୁ । ଜଞ୍ଜାଳଜାଲେ ପଡ଼ିନାହିଁ ସୁବୁଦ୍ଧି । ଯୋଗ ତପସ୍ୟା ଜ୍ଞାନ ନ ପାରେ ସାଧି ଯେ । ଜୀବ ଅଜ୍ଞାନ । ଜନ୍ମ ମରଣେ ପଡ଼ି

Digitized by srujanika@gmail.com

ହେଉଛୁ ଭ୍ରମ । ୨୭ । ଉଜ ଦେହରେ ଭ୍ରମ ହୋଇ ମରୁଛୁ । ଘୋର ଅହଙ୍କାରେ ନମଜ୍ଜି ରହିଛୁ ସେ । ଉଷା ନ କଲେ । ଉନ୍ମ ନଦୀରେ ସ୍ୱାମୀ ଦୟା ନ କଲେ । ୨୭ । ମୋହ ମୋହରେ ମଡ଼ ହେଉଛୁ ଭ୍ରମ । ଲଭ ନ ମାଟେ ଅଲେଖ ବ୍ରହ୍ମ ନାମ ସେ । ଲଘୁ ହେଉଛୁ । ଲକ୍ଷ୍ୟ ନ କର ଉବେ ଭାସି ଯାଉଛୁ । ୨୮ । ବ୍ରହ୍ମାଣ୍ଡ କରତା ନାଥ ତ୍ରୈଲୋକ୍ୟ ପତି । ହେପଦ କର ନାଶ . ବ୍ରହ୍ମ ଅଜ୍ୟୋତି ଯେ, ବଣା ହେଉଛୁ । ବସ୍ତ୍ରୁ ମାୟା କୂଟରେ ଭ୍ରମି ଯାଉଛୁ । ୨୯ । ଶ୍ରୀବନ୍ତ ସ୍ୱାମୀଅଟ କରୁଣାମୟ । ସଂସାର ସାଗରରୁ ଉଦ୍ଧାର କର ଯେ, ଶୂନ୍ୟ ପୁରୁଷ । ମବ ଅପକର୍ମକୁ କର ବିନାଶ ।୩୦। ସତ୍ୟ ସୁଶାନ୍ତ ଦୟା କ୍ଷମା ହୃଦେରେ । ସନ୍ତୋଷ ଚିତ୍ତ ନ ଲଭୁଛି କାହିଁରେ ଯେ, ସୁଦୟା ବନ୍ଧ । ପାପେରେ ଭାସୁଅଛୁ ନାହିଁ ଆଶ୍ରୟ ॥ ସଦା ସର୍ବଦା କାଳେ ତୁମ ପାଦରେ । ମୁଁ ତୁ ଏ ଚଳ ମତି ନଶି ଦବାରେ ଯେ । ଶରଣ ରଖ । ଶ୍ରୀଗୁରୁ ଦୟାମୟ ଅଟ ଅଲେଖ । ୩୨ । ହରବର ହେଉଛୁ ମାୟାରେ ମାତି । ହରଷ କର ପ୍ରଭୁ ପାପ ପ୍ରକୃତି ଯେ । ହତ ହୋଇବ । ହୃଦେ ହେବେ ଶ୍ରୀଗୁରୁ ଦୟା ନୋହିବ । ୩୩ । କ୍ଷମା ସାଗର ପାଦ ପଦ୍ମକୁ ଆଶା । କ୍ଷୁଦ୍ର ବାମନ କରଅଛୁ ଭରସା ଯେ, କ୍ଷୟ ଯାଉଛୁ । କ୍ଷମାନିଧି ଥାଇଣ ନ୍ୟୁନ ନୋହୁଛୁ । ୩୪ ।



( ୭୪ )

( ରାଗ—ରାମକେରୀ )

(କ) କରପଦ ଯୋଡ଼ି ଗୁରୁମୁଖରେ କରୁଅଛୁ ଗୁହାରି । କମ୍ପାଇ ନ ଶୁଣ ମୋ ଡାକ ପ୍ରଭୁ ଶୂନ୍ୟ ବିହାରୀ ॥ କ୍ଷିତିପୁରେ ଜନ୍ମ କରନ୍ତ ଘୋର କଳି ଯୁଗରେ । ଖଣ୍ଡନ କର ମୋ ବିପତ୍ତି ରୁହିଁ କୃପା ନେତ୍ରରେ । ୨ । ଗୁରୁ ରୂପେ ଜ୍ଞାନ ନୟନେ ଚାରୁଅଛ ଉକତ । ଗୁହାରି ନ ଶୁଣ ମୋ ପ୍ରଭୁ କମ୍ପା ନିର୍ଦ୍ଦୟ ଚିତ୍ତ । ୩। ଘୋର ମାୟା

Digitized by srujanika@gmail.com

ମୋହେ ପଡ଼ଣ ଘାଣ୍ଟି ହେଉଛି ଦେଖ । ଘୁଞ୍ଚି ଯିବାକୁ ମୋ ଉପାୟ ନାହିଁ କଲେ ବିବେକ ।୪। ଉଦ୍ଧାର ନ କଲେ ପ୍ରଭୁ ହେ ମହାଶୂନ୍ୟ ବିହାରୀ ଜଗତପାଳ ହୋଇ ସନ୍ତୁଷ୍ଟ ହୋଇଣ ହଡଣିବ ॥ ଚର୍ମ ଦେହରେ ମାୟା ଘୋଟିଣ ଯାଉଅଛି ଜୀବନ । ଶୂନ୍ୟ କ୍ରୁପା କରନେ ଛଡ଼ାଅ ଏ ନିଗୁଣ ବନ୍ଧନ ।୬। ଛନକା କରାଉ ଅଛନ୍ତି ଛଡ଼ ଅଇର ମାନ । ଛନ୍ଦ ନଟକୁଟେ ପଡ଼ଣ ବହି ଯାଉଛି ପ୍ରାଣ ।୭। ଯମ ଯାତନା ଦୁରୁଦଶା ଜାଣି ନ ପାରୁଅଛି । ଜୀବ ଅଜ୍ଞାନ ମାୟା ମୋହ ନଡ଼େ ମଞ୍ଚି ରହିଛି ।୮। ଝଞ୍ଜକାରେ ପଡ଼ି କରିଣ ହଜୁଅଛି ଚୈତନ୍ୟ । ଝଟତରେ ପ୍ରଭୁ ନିସ୍ତାର ଶୂନ୍ୟ ଭଜନ ଗଣ ।୯। ନୋହିଲେ କରୁଣା ନିଷ୍ଠୁର ଭାସି ଯିବଟି ଜୀବ । ନିବାଶ କରିଲେ ଶ୍ରୀଗୁରୁ ଆଉ କେ ସାହା ହେବ ।୧୦। ଟାଣ ମୋହତରେ ପଡ଼ଣ ଭ୍ରମି ଯାଉଛି ମହୀ । ଟାଣି କର କୂଳେ ଲଗାଅ ହୃଦେ ସୁଦୟା ବହି । ଠାବ କାହିଁ ନାହିଁ ମିଳୁଛି ଏହି ତିନ ଭୁବନ । ଠିକେ କହେ ମିନ ବାମନ କର ଚରଣେ ଧ୍ୟାନ ।୧୨।

(ଡ) ଡର ମାଡ଼ୁଅଛି ଦେଖିଣ ଏହି ଯୁଗ ଅମାନ୍ତ । ଡଙ୍ଗର ପ୍ରବଳ ହୋଇଣ ବହୁ ଅଛନ୍ତି ଶାସ୍ତି ।୧୩। ଢୋକୁ ଅଛନ୍ତି ମାୟା ମଦ ଗର୍ବେ ହୋଇ ଉନ୍ମତ୍ତ । ଢାଉ ରଙ୍ଗେ ମାତି ସରବେ ନିନ୍ଦୁଛନ୍ତି ବ୍ରହ୍ମତ୍ତ ।୧୪। ଆଶ୍ରୟ ନ କରି ଅଲେଖ ବ୍ରହ୍ମ ପାଦ ପଦ୍ମକୁ । ଅଜ୍ଞାନ ହୋଇଲେ ସଂସାରେ ନେତ୍ରରେ ଦେଖୁ ଦେଖୁ ।୧୫। ତାରଣ ନ କଲେ ଶ୍ରୀଗୁରୁ ଘୋର ଦୁର୍ଦ୍ଦଶା ଦୁଃଖ । ତାରିବାକୁ ଭବ ସାଗରୁ ନାହିଁ କାହାର ଶକ୍ୟ ।୧୬। ଥପୁ ଥିତ ନାହିଁ କାହାର ବ୍ୟାକୁଳିତ ହୃଦୟ । ଥିର କରାଅ ଧର୍ମେ ମତି ନବାକୁ ମାୟା ମୋହ ।୧୭ ଦୁଃଖ ଜନ ଦୁଃଖ ସଙ୍ଗୀଳ ଅଟ ହେ ଦୟାମୟ । ଦଗଧ ପଟଳୁ ଉଦ୍ଧାରି ମୁକ୍ତି ଉପାୟ ଦିଅ ।୧୮। ଧନ୍ଦ ହୋଇଅଛି ମାୟାରେ ଧରି ନପାରେ ହୃଦେ । ଧିକ ଯାଉ ଏ ମୋ ଜୀବନ ଧାଇଁ ନ ପାରେ ପାଦେ ।୧୯।

Digitized by srujanika@gmail.com

ନିଜ ନାମ ବ୍ରହ୍ମ ଆତ୍ମାରେ ଲୟ କରି ନ ପାରି । ନଷ୍ଟକୂଟେ ପଡ଼ି
କରିଣ ଦିନ ଯାଉଛୁ ସରି । ୨୦ । ପାପ ପଙ୍କେ ବୁଡ଼ି ସର୍ବଦା ମୋର
ନାହିଁ ଆୟୁଷ । ପ୍ରକୃତିସ୍ରୋତରେ ଭାସିଲି ହଜାଇ ଜ୍ଞାନଚକ୍ଷୁ ।୨୧।
ଫଳ ଲୋଭେ କର୍ମ ହୋଇଲି ମୁକ୍ତିପଦ ନ ଚିହ୍ନି । ଫାନ୍ଦେ ବାନ୍ଧି
ରଖି ଅଛନ୍ତି କାମ କଳ୍ପନା ବେନି । ୨୨ । ବିବେକ ପୁରୁଷ ଶ୍ରୀଗୁରୁ
ବୁଝାମଣା ନ କଲି । ସ୍ୱାର୍ଥରେ ମରିଯିବି ଯେ ବାରେ ସାହା
ନୋହିଲେ । ୨୩ । ଭବ ସାଗରରୁ ଉଦ୍ଧରପାରି କରି ହେ ସ୍ୱାମୀ ।
ଭବେ, କହେ ଦୀନ ବାମନ ତୁମ୍ଭ ଚରଣେ ନମି । ୨୪ ।

(ମା) ମାୟା ମୋହରେ ନୋହାଇ ଘାରି ହେଉଅଛୁ ଅଥୟ ।
ମକରନ୍ଦ ପାନ ମତ୍ତରୁ ନୋହିଇ କରି ନିର୍ଭୟ । ୨୫ । ଜୀବ ଆଶ୍ରୟ
କରିଅଛୁ ତୁମ୍ଭ ପାଦ ପଦ୍ମରେ । ଯାଉଅଛୁ ଭାସି ସିନ୍ଧୁରେ ସ୍ୱାମୀ
ଲଗାଅ କୂଳରେ । ୨୬ । ରକ୍ଷା କରିବାକୁ ତ୍ରିପୁରେ ନାହିଁ କାହାରି
ଶକ୍ୟ । ରାଗ ଦ୍ୱେଷ ଅହଙ୍କାରକୁ ନାଶ ଗୁରୁ ଅଲେଖ । ୨୭ ।
ଲୋଭ ମୋହ କାମ କ୍ରୋଧକୁ ନିବାରଣ ନ କଲେ । ଲଘୁ ହେବ
ଜୀବ ସଂସାରରେ ପ୍ରଭୁ ଦୟା ନୋହିଲେ । ୨୮ । ବୁଦ୍ଧି ବିବେକ ଜ୍ଞାନ
ହୃଦେ, ନାହିଁ ମୋହର ଆଉ । ବିଷୟ ଧନ୍ଦାରୁ ନିସ୍ତାରି ରଖ
ହେ ମହାବାହୁ । ୨୯ । ଶ୍ରୀଚରଣ ତଳେ ଶରଣ ଅନ୍ୟ ନୋହୁ
ଆଶ୍ରୟ । ଶ୍ରୀ ହଜୁରରେ ମୋର ମାଗୁଣି ଏତିକ ମାତ୍ର ଦିଅ । ୩୦ ।
ସୁଦୟା ହୋଇଲେ ତୁମରି ଲଂଘଇ ପଙ୍ଗୁ ଗିରି । ଶ୍ରୁତିକି ଶୁଭଇ
ଜଡ଼ାର ମୂକ ଶ୍ରାମ୍ଭ ଉଚ୍ଚାରି । ସର୍ବ ଅପରାଧ କରିଛୁ ସଂସାରରେ
ପଡ଼ିଣ । ସୁଦୟା ଚିତ୍ତରେ ବିଚାରି କରନ୍ତୁ ପରିତ୍ରାଣ ।। ହତ ହେଉଅଛୁ
ଅଜ୍ଞାନେ ହାନ କଥାରେ ମାତି । ହିତ ନିବାକି ମନେ ଭାବିଣ ମଜ୍ଜିଛୁ
ଦିବା ରାତି ।୩୩। କ୍ଷମା କରି ଆହେ ଶ୍ରୀଗୁରୁ ଖଣ୍ଡି ଅପରାଧ ମୋର ।
କ୍ଷେମେ ଦୀନ ବାମନ ଭାବେ କରିତାଙ୍କ ଗୁମ୍ଭର । ୩୪ ।

—o—

Digitized by srujanika@gmail.com

( **୭୫** )

( ରାଗ—ବଙ୍ଗଳାଶ୍ରୀ )

(**କ**) କରପଦ୍ମ ଯୋଡ଼ି କରୁଛି ଜଣାଏ କରତାଙ୍କ ଶ୍ରୀହଜୁର ।
କାକୁସ୍ଥ ଶବଦରେ ଡାକୁଛି ଅନ୍ତରେ ଏ କଷଣୁ ପାର କର । ୧ ।
ଖିତି ମଣ୍ଡଳରେ ଦେହ ବହିବାରୁ ଛନ୍ଦ ବାଦ ଲୋଭ ମୋହ ।
ଖୁଦ୍ର କଥାମାନ ପଶି ହୃଦୟରେ କରୁଅଛନ୍ତି ଅଥୟ । ୨ ।
ଗରବ ଗୁମାନ ଗାଳି ଦ୍ୱନ୍ଦ୍ୱମାନ କେତେ ସମ୍ଭାଳିବି ମୁହିଁ ।
ଗୁରୁ ପାଦେ ଆଶ ନକରି ବିଶ୍ୱାସ ଦିନ ଯାଉଅଛି ବହି । ୩ ।
ଘାଣ୍ଟୁଛି ହୃଦୟ ନ ହେଉଛି ଥୟ ଘୋର ପାପ ଦୁଃଖ ନାଶି ।
ଘୋର କଳି ମାୟାରୁ ଉଦ୍ଧାର ଧର ଅଣାକାର ଶୂନ୍ୟବାସୀ । ୪ ।
ଅବଧୂତ ବାନା ଅବନୀ ମଣ୍ଡଳକୁ ଉଡ଼ାଇଛ ମର୍ତ୍ତ୍ୟେ ଆଣି ।
ଉଦ୍ଧାର ନ କଲେ ମୋ ମାୟା ସଂସାରରେ ଭ୍ରମିଯିବେ ଗୃହଖାନ ।୫।
ଚର୍ମ ଚେମ ମାୟା ଘୋଟି ରହିଲାଣି ଉଜଳ ମାନ ନାହିଁ ଗୁଢ଼ ।
ଚର୍ମକୁ ଅଛି ହୃଦୟ ଆଶ୍ରମ ଚିନ୍ତା ମୋହତରେ ଦୃଢ଼ । ୬ ।
ଛନ ଧ୍ୟାଏ ନାହିଁ ଉଦେ ଥାଉ ଥାଉ ଦୟା ସେମନ୍ତ ନୋହିବ ।
ଛାର ଅଧମକୁ ଏ କୀଟ ଜୀବକୁ କେ ଆଉ ଦୟା ହୋଇବ । ୭ ।
ଜନ୍ମାନ୍ତରୁ ଦୁଃଖ ଅଟେଳ ନ ଦେଖ ଯାଙ୍ଗ ସାଥି ନାହିଁ କେହି ।
ଜୀବର କରତା ବୋଲି ମହାପ୍ରଭୁ ଆଶ୍ରୟ କରିଛି ମୁହିଁ । ୮ ।
ଝର ଝର ନେତ୍ରୁ ନୀର ବହୁଅଛି ନାଶି ଦେବା ସୃଷ୍ଟି ନାହିଁ ।
ଝଗଡ଼ା ସଂସାରୁ ବଞ୍ଚାଇଣ ରଖ ଗୁରୁଦେବ ଦୟା ବହି । ୯ ।
ନିରଞ୍ଜନ ସ୍ୱାମୀ ନିବାଣା ନ କର ସ୍ୱଦୟା ଶତେ ବରୁର ।
ନିରକ୍ଷ ଜୀବକୁ ରକ୍ଷା ନ କରିଲେ ହୋଇଯିବ ଛାରଖାର । ୧୦ ।
ଟାଣ ପ୍ରଭୁ ବୋଲି ଆଦେଶ କରିଥାଉଁ ଟଳିଯାଉଛି ମାୟାରେ ।
ଟିକେ ମାତ୍ର ଦୟା ବହିଣ ଆପଣ ରଖ ଅଭୟ ପଞ୍ଜରେ । ୧୧ ।

Digitized by srujanika@gmail.com

ଠିକେ କହେ ମନ ବାମନ ଚରଣ ଧାୟୀ ଗୁରୁ ପାଦ ତଳେ ।
ଠାବ ଦେଇ ରଖ ମହିମା ଅଲେଖ ଜଣାଉ ଅଛି ବଳେ ।୧୨।
(ଡ) ଡାକ ମାଉଅଛି ଏ ମାୟାମୋହରୁ କେମନ୍ତେ ହେବ ଉଦ୍ଧାର ।
ଡୋଳେ ଦେଖି ଜୀବ ହୁଏ ପରାଭବ ଭବେ ପଡ଼ି ବାରମ୍ବାର ।୧୩।
ଢୋଳୁଅଛି ବିଷ ନ ମଣିଣ ପ୍ରାସ ଅବିଦ୍ୟା ଫାନ୍ଦରେ ପଡ଼ି ।
ଢାଳେ ସୁଧାରସ ଦେଇ କର ତୋଷ ଜଣାଉଛି କରଯୋଡ଼ି ।୧୪।
ଅଣ ଆୟତନରେ ଡାକୁଛି ଆତୁରେ ହେ ଅଲେଖ ଅଣାକାର ।
ଉଦ୍ଧାର ନ କଲେ ଏ ମାୟା ସଂସାରେ ଜୀବ ହେଲା ଛାରଖାର ।୧୫।
ତ୍ରିଗୁଣ ମାୟାରେ ପଡ଼ି ନିରନ୍ତରେ ତଳେ ମାନ ଶାନ୍ତ ନାହିଁ ।
ତ୍ରୈଲୋକ୍ୟ କରତା ତତ୍ତ୍ୱରେ ବଶ୍ୟବାଟରେ ମାଣ କାରଣାହ୍ନ ।୧୬।
ଥପ୍ପେ ନ ରହନ୍ତି ଅଥୟ ହେଉନ୍ତି ଭବ ସାଗରରେ ଭ୍ରମି ।
ଥିର କରାଅ ଶ୍ରୀଗୁରୁ ଦୟାମୟ କରୁଣା ନାବକୁ ଟେଣି ।୧୭।
ଦୁଃଖୀଜନ ମୁହିଁ ଆଜନ୍ମ ଅଟଇ ସାହା ନାହିଁ ମୋର କେହି ।
ଦାଇବ କରତା ଭକ୍ତଜନ ତ୍ରାତା ଅଟ ଅଲେଖ ଅଦେହୀ ।୧୮।
ଧର୍ମ ନ ଜାଣନ୍ତି ଧାରଣା ମଥରୁ ଧନ୍ଦ ହେଉଛନ୍ତି ମାୟାରେ ।
ଧର୍ମ ବଳେ ପଥ ନ ଦିଶୁଛି ଆର୍ତ୍ତ ଲୋକର ଗୁରୁ ଦାଣ୍ଡରେ ।୧୯।
ନାହିଁ ମୋ ଭରସା ତୁମ୍ଭ ମାତ୍ର ଆଶା କରୁଅଛି ଅନୁକ୍ଷଣେ ।
ନୋହିଲେ କରୁଣା ହୋଇଯିବ ବଣାମାୟା ମୋହ ଭବବନ୍ଧନେ ।୨୦।
ହୁକୁମ ନିର୍ଗୁଣ ନାମ ସାଗରରୁ ଉଦ୍ଧାର ନ କଲେ ଗୁରୁ ।
ପ୍ରଳୟ ଜଳରେ ଭାସିଗଲୁ ଆମ୍ଭେ ଅଣାକାର କଳ୍ପତରୁ ।୨୧।
ଫେଡ଼ ଏ ଦୁର୍ଗତି ହେ ଜୀବର ମତି ଜନ୍ମାନ୍ତି ବାରମ୍ବାର ।
ଫଳ ଲୋଭେ କର୍ମ କରି ହେଲେ ଭ୍ରମ ଅବୋଧ ମନେ ମୋହର ।୨୨।
ବଳେ କରିଅଛି ବ୍ରହ୍ମାଣ୍ଡ ଭିତରେ ବୁଦ୍ଧି ନ ଲାଗଇ ଧରି ।
ବୁଝାମଣା କରି ଜଗତ ଉଦ୍ଧାର ଜାଣ କର ଭବ ବାରି ।୨୩।

Digitized by srujanika@gmail.com

କହଇ ବାମନ ନାହିଁ ସଦଜ୍ଞାନ ଭବାର୍ଣ୍ଣବେ ଭାସୁଅଛୁ ।
ଭବ ସାଗରରୁ ଉଦ୍ଧାରଣ ଧର କରଯୋଡ଼ି ଜଣାଉଛୁ । ୨୪ ।

(ମ) ମାୟା ଘୋଟିଗଲାଣି ମହୀ ମଣ୍ଡଳର ମହତ୍ତ୍ୱ କାହାର ନାହିଁ ।
ମୃତ୍ୟୁପଥେ ସର୍ବେ ଧାଇଁଛନ୍ତି ସର୍ବେ ମଦ ମାଂସେ ହୋଇ ବାଇ ।୨୨।

ଜଗତ ସଂସାର ଅନ୍ୟାୟ ବେଭାର ଦେଖି ମାଡ଼ୁଅଛି ଭୟ ।
ଜଗତ କରତା ସର୍ବ ଜୀବ ପିତା ଜାଣି ବୁଝି କର ନ୍ୟାୟ ।୨୬।

ରଖି ନ ହେଉଛୁ ରଜ ତମ ଗୁଣ ସଦଜ୍ଞାନ ହେଉ ମତ ।
ରଙ୍ଗ ତମାସାରେ ମାତିଣ ଅଛନ୍ତି ଅନୁକ୍ଷଣେ ମୃତ୍ୟୁ ମତ । ୨୭ ।

ଲଙ୍ଘି ଯାଉଛନ୍ତି ସତ୍ୟ ଧର୍ମ ପଥ ଲବ୍ଧ ଜ୍ଞାନ ଜଣା ନାହିଁ ।
ଲଘୁ ହେଉଛନ୍ତି ନାମେ ନାହିଁ ପ୍ରୀତି ପ୍ରକୃତିର ଦେହ ବହି । ୨୮ ।

ବୁଝାମଣା କର ଗୁରୁଦେବ ସ୍ୱାମୀ ନିବାର ସର୍ବ ଦୁରିତ ।
ବିଷୟ ବିଷରୁ ଉଦ୍ଧାର ଶ୍ରୀଗୁରୁ ଜଣାଉଛି ପାଦଗତ ।୨୯।

ସୁଧାରସ ଦେଇ ସୁସ୍ଥ କର ଦେହୀ ନ ବାଧୁ ମାୟା ତ୍ରିତାପ ।
ସ୍ୱାମୀ ନାମ ଗାଇ ଦିନ ଯାଉ ବହି ଦୟାକର ବ୍ରହ୍ମରୂପ ।୩୦।

ଶ୍ରୀଗୁରୁ ପାଦରେ ଗୁହାରି କରୁଛି ଅନ୍ୟ କେ ନାହିଁ ଭରସା ।
ସୁଦୟା କରଣ ହୃଦରେ ଆପଣ ଫେଡ଼ ଏ ଦୁଃଖ ଦୁର୍ଦ୍ଦଶା ।୩୧।

ସ୍ୱାମୀଙ୍କ ସୁଦୟା ହେଲେ ଯୋଗ ମାୟା କି କରି ପାରିବ ଆଉ ।
ଶରଣ ମାଗୁଛି ଗୁରୁ ପାଦ ତଳେ ଦୟା କର ମହାବାହୁ । ୩୨ ।

ହତ ହେଉଅଛୁ ଏ ପିଣ୍ଡ ବ୍ରହ୍ମାଣ୍ଡ ଜାଣିଣ ସୁଦୟା କର ।
ହେଜ ନ ଶୁଣିଲେ ହତ ହୋଇଗଲେ କି ଯଶ ହେବ ତୁମ୍ଭର ।୩୩।

କ୍ଷମାକର ଗୁରୁ ଏ ମାୟା ଦୁସ୍ତରୁ ଜଣାଉଛି ପାଦଗତେ ।
କ୍ଷେମେ କହେ ଦୀନ ବାମନ ଶ୍ରବଣ କରିଥିବ ଯୋଡ଼ି ମାଥେ ।୩୪।

—୦—

Digitized by srujanika@gmail.com

( ୨୭ )

( ରାଗ—ରାମକେରୀ )

(କ) କର ଯୋଡ଼ି ଶିଷ୍ୟ ଜଣାଣ ଶ୍ରୀଗୁରୁଙ୍କ ସମ୍ମୁଖ । କୃପା କରି ମୋତେ ଶ୍ରୀଗୁରୁ ପଞ୍ଚତତ୍ତ୍ୱ କହୁଅ । ୧ । କ୍ଷିତି ଆପ ତେଜ ମରୁତ ବ୍ୟୋମ ଯେ ପଞ୍ଚଗୁଣ । ଷଗଷର ହେଲେ ଏକ କାହୁଁ କେଉଁ ସଂଶୟ ମାନ । ୨ । ମୁକତ ନ କର ଶ୍ରୀଗୁରୁ ଦୟାଳୁ କୃପା ଘଟେ । ଗୋପନେ ବେହାର କରନ୍ତ ଉତ୍ପ ଏକ କେଉଁ ବାଟେ । ୩ । ଘର ବାହାରେ କେତେ କେତେ ଗତି ହୁଏ କାହାର । ଯେବେନ୍ତ ଏ କେତେ ସ୍ୱରୂପ କୃପା କରି କହୁଅ । ୪ । ଉଦେ ଅସ୍ତ ହୋନ୍ତ କେ କାହୁଁ କହ ନିର୍ଣ୍ଣୟ କରି । ଅଦ୍ଭୁତେ ଲାଗୁଛି ମନକୁ ବେଦେ ଶୁଣି ଏପରି ।୫। ଚତୁର ଲକ୍ଷଣେ ପଞ୍ଚମ ଭୂତ ହୁଏ ପ୍ରକାଶ । ଚତୁର୍ଥ ଦେଗରେ ପଞ୍ଚମ କେଉଁଠି କରନ୍ତ ବାସ ।୬। ଛେଦ ଏ ସଂଶୟ ମୋ ମନୁ ଆହେ ଶ୍ରୀଗୁରୁଦେବ । ଛବ ପ୍ରକାଶଇ କେମନ୍ତେ କାର କେଉଁ ସ୍ୱଭାବ । ୭ । ଯିବା ଆସିବା କେତେ କେତେ ଦୂର କରନ୍ତ କେହୁ । କାର କେଉଁ ଗତି ବେଧାନ କହ ହେ ମହାବାହୁ । ୮ । ଝରୁଅଛି ଝର ନିରନ୍ତେ ତାର ସ୍ୱାଦୁ କେମନ୍ତ । ଝୁରି ମରୁଅଛି ନିରନ୍ତେ ତାର ନ ପାଇ ଅନ୍ତ । ୯ । ନିଃଶବଦ ଘରୁ ଶବଦ କେ କେଉଁଠି ପ୍ରକାଶଇ । ନିଶ୍ଚୟ କରିଣ ଗୁରୁ ହେ କୃପା ସଂଶୟ ଫେଡ଼ଇ । ୧୦ । ଠକ ଠକ ହୁଏ ମୋ ଚିତ୍ତ ଠିକେ ନ ପାଇ ଲେଶ । ଠାକ ଠାକ ଗୁରୁ ଆଜ୍ଞାକୁ ହୋଇଲି ମୁଁ ନିରାଶ ।୧୧। ଠାଉ ଠାଉ ବେଦ ବେଦାନ୍ତେ କହି ଅଛନ୍ତ ମୁନି । ଠିକେ ବାମଦେବ କହନ୍ତ ସେହି ତତ୍ତ୍ୱ ବଖାଣି । ୧୨ ।

(ଖ) ଡାକ କହୁଛନ୍ତ ଶ୍ରୀଗୁରୁ ଉତ୍ତର ଶୁଣ ଶ୍ରବଣ । ଭକତ ଯଣ ଯୋଗ କରି ଲୟ କର ତୋହ ମନ । ୧୩ ।

Digitized by srujanika@gmail.com

ତାଙ୍କ ରହିଅଛି ଯେ ଯାହର ଶୁଣ କହୁଛି ଭୋତେ । ତମପଣେ ଚଉ ପାଶୋର ଲକ୍ଷ ରଖ ତ୍ୟ ପଥେ ।୧୪। ଅନାକାର ଶୂନ୍ୟ ପୁରୁଷ ଯେହ୍ନୁ ଆକାଶେ ଛର । ଆକାଶରୁ ବାୟୁ ସମ୍ଭୂତ ଗର୍ଭେ ଅଛି ତାହାର ।୧୫। ତହିଁରୁ ଅଗ୍ନି ହେରକାଶି ଉଜ୍ଜ୍ୱଳ କର ମହୀ । ଭୂମ୍ବ ସମ୍ଭବ ସ୍ଥିତି କଲା ତେଜ ଗର୍ଭରେ ଯାଇଁ ।୧୬। ସ୍ଥିତି ଅର୍ଥେ ସ୍ଥୁଳ ସମ୍ଭୂତ ଜନ୍ତୁ ହେଲ ଆକାଶ । ସ୍ଥାବର ସଙ୍ଗମ ସକଳେ କଲେ ତହିଁରେ ବାସ । ୧୭ । ଦେହର ମଧ୍ୟରେ ପ୍ରକାଶ ଯେଉଁ ରୁପରେ ହୋଇଛି । ଦେଖାଇ କହିବା ସୁମନ ହେତୁ ରେ ଧର ବାଛି ।୧୮। ଧଳା ନୀଳ ରକ୍ତ ପିତ ଯେ ଚତୁର୍ଦ୍ଧା । ରୂପ ହୋଇ । ଧଳା ଜଳ କ୍ଷିତି ପିତ ଯେ ଦହେଶ ନଳ ବର୍ଣ୍ଣହିଁ ।୧୯। ଆକାଶର ବର୍ଣ୍ଣ ଭେଦକୁ ବୁଝେ ନିର୍ଣ୍ଣୟ କର । ଅଗ୍ନି କାନ୍ତ ରୂପ ଯାହାର ସେହି ତେଜର ପୂର ।୨୦। ପ୍ରଳୟ କରଇ ବାରୁଣୀ କଷା ଗୁଣକୁ ବହି । ପ୍ରକାଶ ସୁସ୍ୱାଦୁ ହୁଅଇ ପୃଥ୍ୱୀ ତତ୍ତ୍ୱ ଯା କହି ।୨୧। ପ୍ରୀତି ପ୍ରକାଶଇ ମରୁତ ଧର ଅମ୍ଳ ଗୁଣକୁ ତିକ୍ତି ଚହଟଇ ତିକ୍ତ ଯେ ଅଗ୍ନି କହି ତାହାକୁ ।୨୨। ବାର ବୋଲି ଆକାଶ ଗୁଣ ବାଗ ହୁଏ ପ୍ରଭେଦ । ବାର ଅଙ୍ଗୁଳ ଗତି ତା'ର ସେ ଅଟେ ପୃଥ୍ୱୀ ଭୂତ ॥ ଷୋଳ ଦେଖ ଷୋଳ ଅଙ୍ଗୁଳ ଜଳେ ହୁଏ ପ୍ରକାଶ । ଅଗ୍ନି ଗୃହ ବାୟୁ ଅଷ୍ଟମ ବାମ ଦେବଙ୍କ ଶ୍ୱାସ ।୨୪।

(ମ) ନଧ୍ୟ ବହେ ପୃଥ୍ୱୀ ଉଦ୍ଧ୍ୱକୁ ତେଜ କରଇ ଗତି । ମଧ୍ୟ ନାଳରେ ଖେଳ କରେ ଧର ଆକାଶ ଚେତି । ଜଳ ବୋଲି ଯେଉଁ ତତ୍ତ୍ୱଟି ନମ୍ର ଭାବେ ଗମଇ । ଯତନେ ଲଗାଅ ଧ୍ୟାନ ଯେ ବାୟୁ ବକ୍ରରେ ବହି । ୨୬ । ରୂପ ଅଟେ ଯାର ଯେମନ୍ତେ ଶୁଣ କହିବା ତାହା । ରହିଛି ଏକେଲ ଭୂତରେ ନଜାଣନ୍ତି ଲୋକ ଏହା ।୨୭। ଲୟ କରେ ମୁଦ୍ରା ଧରଣ ଦେବେ ନିବ ପ୍ରକାଶ । ନଭବୃନ୍ଦ ବୁନ୍ଦ ତ୍ରିକୋଣ ବାୟୁରେ ହୁଏ ଦୃଶ୍ୟ । ୨୮ । ବର୍ତ୍ତୁଳ ଅର୍ଦ୍ଧ ଚନ୍ଦ୍ରାକାର ପୃଥ୍ୱୀ ଜଳେ ପ୍ରକାଶ । ହରବକ ସୂତ୍ରରେ ଦେଖ ହୋ ଜ୍ଞାନ ଏହି

Digitized by srujanika@gmail.com

ରହସ୍ୟ ।୨୯। ସୂକ୍ଷ୍ମରେ ଦେଖ ସୃଷ୍ଟିକୋଣ ଅଗ୍ନି ଧରଇ ଜ୍ୟୋତି ॥ ଚନ୍ଦ୍ର ସୂର୍ଯ୍ୟ ବେନି ମାର୍ଗରେ ହେଉ ତାଙ୍କର ଗତି ।୩୦। ସୂର୍ଯ୍ୟ ଜଳ ପୃଥ୍ୱୀ ବୁହନ୍ତି ଜାଣ ପ୍ରକାଶ ହେବେ । ସରନ୍ତି ଧରଣୀର ଉପର ଚନ୍ଦ୍ର ଏ ପୂର୍ବା ପୂର୍ବ ।୩୧। ସୃଷ୍ଟିପ୍ରେ ଜଳନ ଉଦୟ ବାୟୁ ଅଗ୍ନି ପ୍ରମାଣ । ଶିଶୁ ମୁନୀରେ ନ ଭଗତି ଏହା ନିଷ୍ଠାୟ ଜାଣ ।୩୨। ହଂସ ବେନି ଅକ୍ଷର ଭଜେ ଘର ବାହାରେ ଦେଖି । ହଜାଅ ନାହିଁ ଏହି ତତ୍ତ୍ୱ ହୃଦ ପଦ୍ମରେ ରଖି ।୩୩। କ୍ଷିର ନୀର ଯେହ୍ନେ ଅଭେଦ ଭେଦ ନୁହେ ଗୋଚର । କ୍ଷମାସାଗର ଦୟାକଲେ ବାମଦେବ ହୃଦର ।୩୪।

—o—

## ( ୭୭ )

### ( ସାଗ—ଆହାରି )

(କ) କଳିଯୁଗେ ବୁଦ୍ଧ ଅବତାର ଧରି ବିଜେ କରିଛନ୍ତି କରତା । କାରଣ କରିବେ ଜୀବ ଉଦ୍ଧାରିବେ କରୁଣାମୟ ମୁକ୍ତିଦାତା । ସୁଜନେ । କଳିଯୁଗରୁ ଉଦ୍ଧାରିବେ । କଳିଯୁଗ ନାଶି ଧର୍ମ ପରକାଶି ଭକତ ବୃନ୍ଦଙ୍କୁ ତାରିବେ ।୧। ଖିନ୍ନ ରୂପଧରି ଖେଳ କରୁଛନ୍ତି ସ୍ୱାମୀ ଏକାମ୍ବର ବନାରେ । ଖଣ୍ଡିବେ ଦୁର୍ଗତି ହେବେ ସଦଗତି ଶ୍ରୀଗୁରୁ ସୁଦୟା ଶରୀରେ । ସୁଜନେ । କ୍ଷମାନନ୍ଦେ ପଶ ଶରଣ । ଖେଦ ଦୂର କରି ଖୋଜ ଅନୁସରି କ୍ଷମା ସାଗର ବାସୀ ବ୍ରହ୍ମ । ୨ । ଗୁରୁ ରୂପ ଧରି ଜଗତ ସାକରେ ଜ୍ଞାନ ପ୍ରଚାର କରୁଛନ୍ତି । ଗହନ ମାୟାରୁ ଉଦ୍ଧରିବେ ଗୁରୁ ମନରେ ଧର ତାଙ୍କୁ ଚେତି । ସୁଜନେ । ଗୁରୁ ପଦର ଆଶ୍ରେ କର । ଗୁରୁଦେବ ସ୍ୱାମୀ ସର୍ବ ଅନ୍ତର୍ଯ୍ୟାମୀ ଅବଶ୍ୟ କରିବେ ଉଦ୍ଧାର । ୩ । ଘୋର କଳିରୁ ଉଦ୍ଧାର ହେବ ଯେବେ ଘୋଷ ଅଲେଖ ଅଣାକାର । ଘୋଟିଛନ୍ତି ରହି ନବଖଣ୍ଡ ମହୀ ନାହିଁ ବ୍ରହ୍ମ ଯାଏ ବାହାର । ସୁଜନେ । ଘଟଣା ମୂରତି ଧାରନ୍ତି । ଘୋଷ ଅନୁଷ୍ଠା ପୁଣ୍ୟବ ଅଜ୍ଞାନ ଘଟେ ଘଟେ ପୂରି ଅଛନ୍ତି । ୪ ।

Digitized by srujanika@gmail.com

ଉଦେ ହୋଇଛନ୍ତି ଧର ତାଙ୍କୁ ଚେତ ଅକଳୁଣା ବ୍ରହ୍ମ ଅନନ୍ତ । ଆରତ ନାଶିବେ ମହା ଉଶ୍ୱାସିବେ ସେ ସର୍ବ ଅନ୍ତର୍ଯ୍ୟାମୀ ନାଥ । ସୁଜନେ । ଆଶ୍ରେ କର ନିଷ୍କାମ ଚିତ୍ତେ । ଅବ୍ୟୟ ଧନକୁ ଅନାଦର କଲେ ନ ମିଳିବ ଆଉ ପଶ୍ଚାତେ । ୫ । କଳି ଯୁଗେ କେହି ଜାଣି ନ ପାରନ୍ତି ଭକ୍ତଜନେ ମାତ୍ର ସନ୍ତୋଷ । ଚରଣ ରେଣୁରେ ଶତ ନମସ୍କଲେ ହୋଇବ ସର୍ବ କର୍ମ ନାଶ । ସୁଜନେ । ଶତେ ଶତେଇ ଧର ତାଙ୍କୁ । ଚମତ୍କାର ମୋକ୍ଷ ହୋଇଯିବ ସ୍ୱପ୍ନ ସୁମରିଲେ ବ୍ରହ୍ମ ନାମକୁ ।୬। ଛନକା·ନ ହୋଇ ଗ୍ଲାନି ଦମ୍ଭ ରହି ଲପ୍ତ ଲଗା ଅଭୟ ପାଦେ । ଗୁଡ଼ି ନୁ ତାପ ଭଜ ବ୍ରହ୍ମରୂପ ଲୀନ ହୋଇବ ନିଜ ଅଙ୍ଗେ । ସୁଜନେ । ଛତ୍ରୀ କୋଟିର ସେ କରତା । ଶ୍ରେଷ୍ଠ ବଡ଼ ହୋଇ ଯେତେଛନ୍ତି ରହି ସକଳ ଜୀବ ପିତାମାତା ।୭। ଜାଣୁ ଜାଣୁ ଶୁଣୁ ଶୁଣୁ ବଣା ହୋଇ ଭ୍ରମୁ ଅଛ କିମ୍ପା ଅଜ୍ଞାନେ । ଯେବେ ହେବ ଦାସ ବ୍ରହ୍ମ ନାମେ ରସ ଆନନ୍ଦ ମନେ ଅନୁକ୍ଷଣେ । ସୁଜନେ । ଯତନେ ଆଶ୍ରେ କର ବୃନ୍ଦେ । ଯୋଗୀ ବେଶ ଧରି ଜଗତେ ସ୍ୱଧର୍ମ ନ ଚିହ୍ନିଲେ ଅଜ୍ଞାନେ ମୂଢ଼େ । ୮ । ଝଟକ ବିଜୁଳି ପ୍ରାୟୁ ରୂପ କାନ୍ତି ଦେଖିଲେ ନୟନ ପବିତ୍ର । ଝର ଝର ପାନୁ ସୁଧା ବରଷୁଛି ପିଅ ହେ ସୁଜ୍ଞ ସାଧୁ ସନ୍ଥ । ସୁଜନେ । ଝଡ଼ିବ ସର୍ବ ପାପ ମାନ । ଝଞ୍ଜିକା ଛୁଡ଼ାଇ ଉଦାସୀନ ହୋଇ ଭଜ ଅଲେଖ ନିରଞ୍ଜନ । ୯ । ନାହିଁ ତାଙ୍କ ରୂପ ଅନାଦି ଅରୂପ ଅଦୃଷ୍ଟି ଭୁବନେ ବିଜୟ । ନିଷ୍ଟୟ ପ୍ରସନ୍ନ ହେବେ ଶୂନ୍ୟ ବ୍ରହ୍ମ ଅକଳୁଣାରେ କର ଲକ୍ଷ୍ୟ । ସୁଜନେ । ନାହିଁ ତାଙ୍କ ନିଦ୍ରା ଆହାର । ନର ଦେହ ବନ୍ଧି ଅନ୍ତ କର ନୋହେ ଅଗାଧ ଏ ବ୍ରହ୍ମ ସାଗର ।୧୦। ଟାଳିବା ନିମନ୍ତେ ଘୋର ପାପ ଭାର ମର୍ତ୍ତ୍ୟପୁରେ ବିଜୟୁ ଆସି । ଟିକକ ମାନବକେ ଯୋଇ କଳି ପାପ ହୋଇଣ ନିବ ଭସ୍ମ ବଶି । ସୁଜନେ । ଟାଣେ ଆଶ୍ରେ କର ନାମକୁ । ଟାଳିଣ ଦୁର୍ଗତି ହେବେ ସଦଗତି ଯେ ଭଜ ପାଶିବ

Digitized by srujanika@gmail.com

ତାହାଙ୍କୁ ।୧୧। ଠୁଳ ଶୂନ୍ୟବାସୀ ଠାକୁର ଅନନ୍ତ ଅଲେଖ ମହିମା ନଗୋସାଇଁ । ଠିକ୍ କରି କେହି ଶକ୍ତି ନ ପାରିଣ ଅଜ୍ଞାନେ ଧାଉଛନ୍ତି ବନ୍ଧ । ସୁଜନେ । ଠିକେ ନାମ ଆଶ୍ରେ ନ କଲେ । ଠାବ ନ ମିଳିବ ତିନି ବ୍ରହ୍ମାଣ୍ଡରେ ଠିକେ ବାମନ ବାବା ବୋଲେ ।୧୨।

(ଡ) ଡରି ଭୟ ଛାଡି ନେଉ ଦଣ୍ଡ ସଙ୍ଗ, ଭଜ ଅଲେଖ ମହିମାଙ୍କୁ । ଡଙ୍ଗାରେ ବସାଇ ଭବାର୍ଣ୍ଣବ ନଈ ନେବେ ପାରି କରି ଜୀବଙ୍କୁ । ସୁଜନେ ।ଡାକ ହୃଦରେ ଅହର୍ନିଶି । ଡେରିଛନ୍ତି କର୍ଣ୍ଣ ଭକତ ଜୀବନ ଅଲେଖ ପ୍ରଭୁ ବ୍ରହ୍ମରାଶି । ୧୩ । ଢମପଣ ଗ୍ରନ୍ଥି ଗୁରୁ ପାଦ ଲୋଡ଼ି ହୃଦରୁ ନେଇ ମାୟା ମୋହ । ଢାଙ୍କୁଣୀ ଭିତରୁ ଢାଙ୍କିବେ ଗୁରୁ ପାଦ ପଦ୍ମରେ କରି ଲୟ । ସୁଜନେ । ଢୋକ ନାମାମୃତ ସୁରତେ ଭୁଲାଇ ନ ପଡ଼ି ଧରି କରି ଦୃଢ଼ ଶ୍ରୀଗୁରୁ ପାଦ ପଦ୍ମ ନିତ୍ୟେ । ୧୪ । ଉଦ୍ଧାର କରିବେ ଅଖିଳ ଜଗତ ଅଣାକାର ଶୂନ୍ୟ ବିହାରି । ଅବଧୂତ ବେଶ ଜଗତେ ପ୍ରକାଶ ଶ୍ରୀଗୁରୁ ନେବେ ଦୟାକରି । ସୁଜନେ । ଅପୂର୍ବ ମହିମା ତାଙ୍କର । ଅନ୍ତ ନୋହେ କରି ନର ଦେହ ଧରି ପ୍ରଭୁ ଅଲେଖ ନିରାକାର ॥ ତାରିବା ନିମନ୍ତେ ଭକ୍ତ ଜନ ଯେତେ ବିଜୟ କଲେ କଳିଯୁଗେ । ସ୍ତୁତି ନିନ୍ଦାମାନ କରି ସମଜ୍ଞାନ ବୁଲୁଅଛନ୍ତି ତଉଦନେଗ । ସୁଜନେ । ତିନି ବ୍ରହ୍ମାଣ୍ଡର କରତା । ତାଙ୍କୁ ଆଶ୍ରେ କର ହୋଇବ ଉଦ୍ଧାର ଅଖଣ୍ଡିତ ନେ ବ୍ରହ୍ମବେତ୍ତା । ୧୬ । ଥାନ ଥିତ ନାହିଁ ଛନ୍ତି ପୂର୍ଣ୍ଣ ହୋଇ ସର୍ବ ଘଟରେ ସାକ୍ଷୀ ରୂପେ । ଥପୁକରି ଶକ୍ତି ପାରିଲେ ତାହାଙ୍କୁ ଦର୍ଶନ ହେବେ ଆପେ ସୁଖେ । ସୁଜନେ । ଥିର ଚିତ୍ତେ ଲଗାଅ ଲୟ । ଥିବ ଯେବେ ତପ ଦେଖିବ ସେ ରୂପ ପାତକ ହୋଇଯିବ କ୍ଷୟ ।୧୭। ଦୁଃଖିଜନ ବନ୍ଧୁ ନାମ କୃପାସିନ୍ଧୁ ଜଗତେ ବିଦିତ ହୋଇଛୁ । ଦୁର୍ଗତି ବିନାଶି ଦୁଃଖି ଦୁଃଖ ନାଶି ଭକ୍ତ ଜନେ ତାରି ନେଉଛୁ । ସୁଜନେ । ଦୟାର ସାଗର ଅନନ୍ତ । ଦେଇ ପାଦେ ମତି ନିତି କରି

Digitized by srujanika@gmail.com

ଭକ୍ତ, ଅବଶ୍ୟ ହେବେ ମୁକତି ॥ ଧର୍ମ ଉଦୟ କରିଛନ୍ତି ଜଗତରେ ନାଶିବେ ଏ ଘୋର ଅଜ୍ଞାନ । ଧର ଦୃଢ଼ କରି ଶ୍ରୀ ଗୁରୁ ସୁମର ଧର୍ମ ପଥ ହୁଡେ଼ ଭଜନ । ସୁଜନେ । ଧାରଣା ନଗୁଡ଼ ମନରୁ । ଧରି ନ ପାରିଲେ ଏ ଭବ ସାଗରେ ତରିବ କପରି ମାୟାରୁ ।୧୯। ନିର୍ଗୁଣ ପୁରୁଷ ନିସ୍ଥାନେ ପ୍ରକାଶ କରିଛନ୍ତି ଧର୍ମଜଗତେ । ନୁହନ୍ତି ସେ ଯୋନି ଗର୍ଭରେ ଜନମ ଅକ୍ଷୟ ଅନନ୍ତ ସାକ୍ଷାତେ । ସୁଜନେ । ଅଲେଖ ନାମକି ସାଙ୍କର । ନାହିଁ ତାଙ୍କ ରୂପ ଅନାଦି ଅରୂପ ଭକ୍ତ ହୃଦରେ ଅବନତି । ପୂର୍ଣ୍ଣାନନ୍ଦସ୍ୱାମୀ ନିଜେ କରିଛନ୍ତି କାଠରୁ ବ୍ରହ୍ମପାଏ ପୁରି । ପ୍ରକୃତି ବିକାର ମନୁ ଅହଂକାର ତେଜ ପାଦେ କରି ଗୁହାରି । ସୁଜନେ । ପାରି କରିବେ ଭବାର୍ଣ୍ଣବ । ପ୍ରଳୟ କାଳରେ ଯାହା ହେବେ ବାରେ ତରିବେ ଆଗେ ହେବେ ହେବ । ୨୧ । ଫେର ଫେର ଶୂନ୍ୟ ବାନା ଉଡ଼ୁଅଛି ଜଗତ ରଖିବା ନିମନ୍ତେ । ଫାନ୍ଦ ଫାଶେ ପଡ଼ି ରହିଅଛି ମୂଢ଼ ଅଜ୍ଞାନ ମୋହେ ଏ ଜଗତେ । ସୁଜନେ । ଫଣୀ ମଣି କି ନ ଚିହ୍ନନ୍ତି । ଫଳ ଲୋଭେ କର୍ମ କରି ହୋଇ ଭ୍ରମ ଅଜ୍ଞାନରେ ଦିନ ନେଉଛନ୍ତି । ୨୨ । ବୁଦ୍ଧି ତନୁ ଧରି ଅବନୀ ବିହରି ଏ ଘୋର କଳି କାଳ ଯୁଗେ । ବଇକୁଣ୍ଠ ପୁର ବାନା ଫରଫର ଉଡ଼ାଉଛନ୍ତି ଚଉଦିଗେ । ସୁଜନେ । ବିପତ୍ତି ଖଣ୍ଡନ ଶ୍ରୀଗୁରୁ । ବ୍ରହ୍ମଜ୍ଞାନ ଦେଇ ତାରି ନେବେ ମହୀ ପତିତ ଜୀବକୁ ମାୟାରୁ ।୨୩। ଭାବ ଭକ୍ତି କରି ସେ ପ୍ରଭୁ ପୟର ଅନ୍ୟରେ ନାହିଁ ଆଉ ଗତି । ଭବ ନିବାରିବେ ଭବରୁ ତାରିବେ ଶ୍ରୀଗୁରୁ ଅଲେଖ ଅଜ୍ୟୋତି । ସୁଜନେ । ଭ୍ରମି ନୁହଁ ମୋହ ମାୟାରେ । ଭାବ ଭାଷ ଭାଷେ ବାମନ ଉଦାସେ ମାଗେ ସେବ ଗୁରୁ ପୟରେ । ୨୪ ।

(ମ) ମହିମା ନାମକୁ ଆଶ୍ରେ ଯେ କରିବ ମୋହ ମାୟାରୁ ତରିଯିବ । ମକରନ୍ଦ ଜ୍ଞାନକରି ନିଶି ଦିନ ବ୍ରହ୍ମ ମଣ୍ଡଳେ ପ୍ରବେଶିବ । ସୁଜନେ । ମୋକ୍ଷ ପଥକୁ ଅନୁସରି । ମାନବ ଜନ୍ମେ ମହିମା ନ

Digitized by srujanika@gmail.com

ଲଭିଲେ ଆଉ ନ ପାଇବ ଉଦ୍ଧାର ।୨୫। ଯୋଗ ନ ଭଜିବ ସ୍ୱାର୍ଥ ହୋଇବ ଦୁର୍ଲ୍ଲଭ ଜନ୍ମ ପିଣ୍ଡ ଗୋଟି । ଜନ୍ମ ଗଲେ ବହୁ ନ ମିଳିବ କାହିଁ ଠାବ ଏ ନବଦ୍ୱୀପ ସୃଷ୍ଟି । ସୁଜନେ । ଜାଣି ମନରେ କର ହେତୁ । ଏବେ ଅଛୁ ପୂର୍ବ ସୁକୃତ ତପସ୍ୟା ଯୋଗେ ବ୍ରହ୍ମ-ଲଗା ଚିତ୍ତ ତୁ ।୨୬। ରଜ ତମ ଗୁଣ ନିବାର କରିଣ ସତ୍ତ୍ୱ ଗୁଣେ ନିମଜ୍ଜ ରହ । ଭାଗ ସ୍ୱାହା ନୋହି ଅଜ୍ଞାନ ପ୍ରମାଦ ଗୁରୁ ଆଜ୍ଞାରେ ପୋଡ଼ି ଦିଅ । ସୁଜନେ । ଯାଗ ଦ୍ୱାରରେ ଅହର୍ନିଶି । ରାମ ନାମ ବ୍ରହ୍ମ ତେଜ କାମ କର୍ମ ହୋଇଣ ମନରେ ଉଦାସି ।୨୭। ଲୋଭ ମୋହ କାମ କଳ୍ପଣା ଛଡ଼ାଇ ନିଷ୍କାମେ ଲଗାଅ ଭଜନ । ଲଭ ବାଣିଜ୍ୟରେ ମାତି ଅଜ୍ଞାନରେ ସ୍ୱାର୍ଥରେ ନ ହରା ଧନ । ସୁଜନେ । ଲଗା ଶ୍ରୀଗୁରୁ ପାଦେ ଚିତ୍ତ । ଲଭିଲେ ଅମୀୟ ସୁସ୍ଥ ହେବ ଦେହ ନାଶ ହେବ ସର୍ବ ଦୁରିତ ।୨୮। ସ୍ୱଜନ କରିଛନ୍ତି ଅନନ୍ତ ଅକ୍ଷୟ ଏ ଘୋର ଯୁଗ କଳିକାଳେ । ବ୍ରହ୍ମଜ୍ଞାନ ଚିହ୍ନି ଧର ହେ ସୁଜ୍ଞାନୀ ବୁଦ୍ଧି ବିବେକ ଜ୍ଞାନ ବଳେ । ସୁଜନେ । ବଣା ହେଉଅଛୁ କମାଇଁ । ସ୍ୱଜେ କରି-ଛନ୍ତି ବାଣ୍ଟି ଦେଉଛନ୍ତି ଗତି ମୁକ୍ତି ଜଗତ ସାଇଁ ।୨୯। ଶ୍ରୀଗୁରୁ ଅନାଦି ଘୋକ ପାପ ଛେଦି ଉଶ୍ୱାସିବେ ଏ ମହୀ ଭାର ସୁଧାରସ ଦେଇ ସୁସ୍ଥ କରାଇବେ ଭକତ ବୃନ୍ଦଙ୍କୁ ତାଙ୍କର । ସୁଜନେ । ସର୍ବ କର୍ମକୁ ବିନାଶିବେ । ମର୍ତ୍ତ୍ୟ ଉଦେ କରି ସଂସାର ମଧ୍ୟରେ ନିଷ୍କାମ ଲୀଳା ପ୍ରକାଶିବେ ।୩୦। ଶ୍ରୁତି ପଥେ ଶୁଣି ଧର ହେ ସୁଜ୍ଞାନୀ ସ୍ୱାମୀଙ୍କ ଆଜ୍ଞା ପ୍ରତିପାଳି । ସାରସ୍ୱତ ଧର୍ମ ଗୁରୁ ଶୂନ୍ୟ ବ୍ରହ୍ମ ପ୍ରକାଶିଛନ୍ତି ମହାସ୍ଥଳୀ ସୁଜନେ । ଶ୍ରଦ୍ଧା ଚିତ୍ତେ କର ଆଶ୍ରୟ । ସଂକୋଚ ନିବାରି ଲଜ୍ଜା ଦୂର କରି ଆନନ୍ଦେ ସ୍ୱାମୀ ନାମ ଗାଅ ॥ ସର୍ବ ଘଟେ ପୂରି ଅଛନ୍ତି ଆବୋରି ସ୍ୱର୍ଗ ପାତାଳ ତିନି ପୁର । ସୁଜ୍ଞାନୀ ଜନଙ୍କୁ ଦୃଶ୍ୟ ହେଉଛନ୍ତି ଅଜ୍ଞାନୀ ନ ପାରନ୍ତି ଧରି । ସୁଜନେ । ଶୂନ୍ୟ ପୁରୁଷ ସେ ଠାକୁର । ସୂର୍ଯ୍ୟ ହୋଇଲେ ଘୋରଅନ୍ଧକାର କ୍ଷଣକେ ହୋଇଯିବ

Digitized by srujanika@gmail.com

ଦୂର ।୩୨। ହେଳା ନ କରଣ ହୃଦପୃ ଭିତରେ ଭଜ ଗୁରୁଙ୍କୁ ଦିବାନିଶି । ହଜିବ ବିଷୟ୍ୟ ହେଲେ ତାଙ୍କ ଦୟା ପ୍ରକ୍ଷିପିବ ଅକାଳ ମାଣି । ସୁଜନେ । ହୀନ ଲଭକୁ କର ତ୍ୟାଗ । ହୋଇଣ ଉଦାସ ହୁଅ ତାଙ୍କ ନାମ ହୃଦରେ ଧାରି ଗୁରୁଦେବ॥ କ୍ଷମା ହେବ ଦୋଷ ଯେତେକ କଳୁଷ ପୂର୍ବର କୃତ କର୍ମମାନ । କ୍ଷମାନନ୍ଦ ପାଦେ ସ୍ତବଣ ଆନନ୍ଦେ ଗ୍ରନ୍ଥେ ଭାଷା ବାବା ଭାଗନ । ସୁଜନେ । କ୍ଷୁଦ୍ର ବୁଦ୍ଧି କ ହେଳ ବେଗେ । ଶ୍ରୀରମିଙ୍କ ବାଣୀ ପାଦେ ଅହର୍ନିଶି ନମନ୍ତ ପ୍ରେମାନନ୍ଦେ ମନେ । ୩୪ ।

—o—

( ୬୮ )

( ରାଗ—କଳହଂସ କେଦାର )

(କ) କହଇ ଚଇତନ ଶୁଣ ସୁମନ, କର କରୁଣାନିଧି ପାଦେ ଭଜନ ହେ, କାରଣ ହେବୁ ଯେବେ ଭବ ସାଗରୁ, କହୁଛନ୍ତି କର ଆଶ୍ରେ ମହିମା ମେରୁ ଯେ । ୧ । ଅଖିଳ ବ୍ରହ୍ମାଣ୍ଡ ପତି ଅଟନ୍ତି ଯେହି, ଖଟାଅ ଶତ ମଣ୍ଡ ଉପୁରେ ନେଇ ଯେ । ଖଳ ଦୁର୍ବୁଦ୍ଧି ଛେଡ଼ି କରି ମନରୁ, ଖୋଜ ପୂରିଅଛନ୍ତି ନିକଟେ ଗୁରୁ ଯେ । ୨ । ଗହନ ଅଟଇ ତାଙ୍କ ମାୟା ସଂସାର, ଗୁରୁ ମନ୍ତ୍ର ବିନା ନାହିଁ ଉଦ୍ଧାର ଯେ॥ ଗତି ମୁକତି ଦାତା ଆଉ କେ ନାହିଁ, ଗୁରୁ ନାମ ଅଛନ୍ତି ଏ ଭବେ ହୋଇ ଯେ ।୩। ଘୋଷ ତୁ ଦିବା ନିଶି ନକରି ହେଳା, ଘଟ୍ ବାହାରି ଗଲେ ବୁଡ଼ିବ ଭେଳା ଯେ । ଘର ବାହାରେ ରହିଛନ୍ତି ପ୍ରକାଶି, ଘନ ଅନ୍ଧକାର ହେବେ ଶରଦ ଶଶୀ ଯେ । ୪ । ଉଇଁଛନ୍ତି ଅହର୍ନିଶି କର ତୁ ଲକ୍ଷ୍ୟ, ଅନୁଭବ ମାର୍ଗରେ କରଣ ଅପୂ ଯେ । ଅଲେଖ ବ୍ରହ୍ମ ଅନ୍ତର୍ଯାମୀ ଠାକୁର, ଆଶ୍ରୟ କଲେ ତାଙ୍କୁ ହେବୁ ଉଦ୍ଧାର ଯେ । ୫ । ଚରନ୍ତି ଶାସ୍ତ୍ରବା ମାନେ ଜାଣନ୍ତି ସବୁ, ଚୈତନ୍ୟ

Digitized by srujanika@gmail.com

ଦାତା । ଅନନ୍ତ ମହାପ୍ରଭୁ ଯେ । ଶକ୍ତିଣ ଦୂର୍ଯନ୍ତ ଧର୍ମାଧର୍ମ ବର୍ଜିତ, ଶରଣ ହେ ଯାହା ଜାଣିବ ଏ ଶରୀର ପୂର ହେ । ୭ । ନନ୍ଦନ କୋଟି ଜୀବର ସେ କରତା, ଛବେଦ ଘଟର ବାସ କେବଳ ଦାତା ଯେ । ଗ୍ରନ୍ଥ ହୃଦୂ ବିକାର କଳ୍ପନା ମାନ, ହରକା ଦେହ ଦାଦ ଲଗାଅ ଧ୍ୟାନ ଯେ । ୮ । ଜୀବନେ ଯେବେ ଆଶା ଅଛି ତୋହର, ତେବେ ଆଶ୍ରେ କର ସ୍ୱାମୀ ପଦୂର ହେ ଜାଣୁ ଜାଣୁ ଅଜଣା ନୁହ ସୁମନ, ଜାଗ୍ରତ ଶରଣ ଭଜ ମହିମା ନାମ ଯେ । ଝିମାଇ ନମଣ ଭୁ ଝାଡ଼ ଭ୍ରମର, ଝରୁଛି ପିଅ ଅମୀୟ ସୁଧା ଧାର ଯେ । ଝଞ୍ଜାକାରେ ଚଢ଼ଣ ନୁହ ଭୁ ବଣା, ଝସାଅ ମନ ଶୂନ୍ୟେ ବାଜୁଛି ବୀଣା ଯେ ।୯। ନଶି ଦିବସେ ଲାଗି ଅଛି ବିହାର, ଲୀଳା ଆସ୍ଥାନେ ବଜେ ଅଲେଖ ଶଣ ଯେ ନାହିଁ ସେ ସ୍ଥାନେ ଉଛ ମାଜ ବେଭାର, ନ ଲଗେ ଜନ୍ମ ମୃତ୍ୟୁ ଭୟ ତହିଁର ଯେ ।୧୦। ଟାଣେ ତହିଁକ ଆଶ୍ରେ କରରେ ମନ, ଟଳ ନ ଯିବ ତୋର ଚେତା ଚୈତନ୍ୟ ଯେ । ଟାପରା ନମଣ ଭୁ କହୁଛି ସତ, ଟୋପରୁ ତାର ନେବେ ବ୍ରହ୍ମାବଧୂତ ଯେ । ୧୧ । ଠାବ କର ଅନନ୍ତ ଅମନ ପୁରେ, ଠକାଅ ଶରଣ ମନ ତାଙ୍କ ପଦ୍ମେ ଯେ । ଠାକୁର ଅଣାକାର ଜଗତ ପତି, ଠିକେ କହେ ବାମନ ସେ ପାଦେ ଶକ୍ତି ଯେ । ୧୨ ।

(ଡ) ଡାକ କହେ ଚୈତନ୍ୟ ଶୁଣ ସୁମନ, ଡଙ୍ଗର ପଣ ତେଜ୍ୟା କର ବଚନ ଯେ । ଡାକ ହୃଦେ ନିଷ୍କାମ ପ୍ରସନ୍ନ ହେବେ, ଡର ଭୟ ତୋ ଯିବ ଦେଖିବୁ ଯେବେ ଯେ ।୧୩। ଡାଉ ରଙ୍ଗରେ ନ ବଳାଅ ଭୁ ଶଉ, ଡମ ଚଣରେ ମାଡ କର ଜଗତ ଯେ । ଢଳ ଯାଉ ଅନନ୍ତ ଦେଖୁ ନେତ୍ର, ଢୋକ ଗରଳ ବିଷ ଅଜ୍ଞାନ ମତେ ଯେ । ୧୪ । ଅଣ ଅକ୍ଷରେ ଅଲେଖର ବେହାର, ଆଶ୍ରେ କଲେ ଅବିଦ୍ୟା ହେବ ନିବାର ଯେ । ଅମୀୟ ସୁଧା ରସ ବହେ ସେ ସାଧୁ, ଆସ୍ୱାଦନ କର ମନ କେମନ୍ତ ସ୍ୱାଦୁ ଯେ । ୧୫ । ତନ ଭୁବନେ

Digitized by srujanika@gmail.com

ଘାର ତା ତହୁଁ ନାହିଁ, ବିଗୁଣ ହେବ ବନ୍ଧ ପାଶରେ ଧାଇ ଯେ । ତତ୍ତ୍ୱ କରଣ ଧର କହୁଛି ତୋତେ, ତ୍ରୈଲୋକ୍ୟ କର୍ତ୍ତା ପାଦ ହୃଦୟେ ଗତେ ଯେ । ୧୬ । ଥିବାକ ସବୁ କାଳେ ଏ ଯୁବା ଅଙ୍ଗ, ଥିବ ବୟା ନୋ ଯାତନ ହେବ ବଭଙ୍ଗ ଯେ । ଥଳ ସ୍ଥାପିଣ ଭବ ଜଳେ ଭାସିଲେ, ଥିବ କର୍ତ୍ତବ୍ୟ ଆଉ କି ଚେତେବେଳେ ଯେ ।୧୭। ଦେଖୁ ଅଛୁ ଜଗତେ କେତେକ ଜନ, ଦୁଃଖ ହରଣେ କେହୁ ନୁହନ୍ତ କ୍ଷମ ହେ । ଦନ ଗୃହକୁ ସୈନା ଏ ସଙ୍ଗ ସାଥି, ଦୟାନିଧି ଅଟନ୍ତି ଜୀବର ଗତି ଯେ । ୧୮ । ଧନ ଜନ ଯୌବନ ନୁହଇ ଥିର, ଧନ୍ଦ ନ ହୁଅ ମନ ମାୟା ସଂସାର ଯେ । ଧାଇଁଛୁ ସବୁ ମୋର ମନେ ବିଚାରି, ଧରିଛୁ କେବେ ଜେ ମୃଗ ତୃଷା ବାରି ଯେ । ୧୯ । ନୁହଇ କେବେ ସ୍ଥିର ଅନିତ୍ୟ ସବୁ, ନାମ ବ୍ରହ୍ମ ଆଶ୍ରୟ ଯେବେ କରିବୁ ଯେ ॥ ନ ଭଣିବ ଶମନ କହୁଛି ସତ୍ୟ, ନିଶ୍ଚୟେ ମାହା ତୋର ହେବ ଅନନ୍ତ ଯେ । ୨୦ । ପୂରି ରହି ଅଛନ୍ତି ସକଳ ଭୂତେ, ପରମାନନ୍ଦ ପୂର୍ଣ୍ଣବ୍ରହ୍ମ ଜଗତେ ଯେ । ପରଚେ ହୁଅ ତାଙ୍କୁ ତେଜି ପ୍ରକୃତି, ପାଇଲେ ଲଭିବୁ ତୁ ପରମ ଗତି ଯେ । ୨୧ । ଫୁଟି ବିକାଶୁ ଅଛି ଅଖଣ୍ଡ ପୁରେ, ଫୁଲ ତେଜିଣ ରସ ମକରନ୍ଦରେ ଯେ ॥ ଫିଟିବ କର୍ମ ବନ୍ଧ ହେବୁ ଉଦ୍ଧାର, ଫଳ ଲୋଭରେ ଭ୍ରମି ହୋଇ ନ ମର ଯେ । ୨୨ । ବୁଝାଇ କହୁଅଛି କହ ତୁ ବଣା, ବିଜୟେ ମହା ବ୍ରହ୍ମଶୂନ୍ୟ ମାଝେଣା ଯେ । ବାଜୁଛି ତହିଁ ଘୋର ଦୁନ୍ଦୁଭି ବାଦ୍ୟ, ମୃଦଙ୍ଗ ତାଳ ବୀଣା ଦ୍ୱାଦଶ ଶବଦ ଯେ । ୨୩ । ଭାବେ ତହିଁକି କାୟ କର ସୁମନ, ଭେଦ ପାଶରେ ହେବୁ ସେ ବ୍ରହ୍ମେ ଲୀନ ଯେ ॥ ଭବ ଭୟ ବିନାଶ ହେବ ସମସ୍ତ, ଭାଷା ପ୍ରବାନ୍ଧେ ଭାବେ ବାମନ ଦ୍ୱିଜ ଯେ । ୨୪ ।

(ମ) ମୋହ ମୋହ ବୋଲିଣ ଆବୋରି ମନ, ମାୟାଆଗରେ ପଡ଼ି ହଜାଇ ଜ୍ଞାନ ଯେ ॥ ମାତା ପିତାଦି ବନ୍ଧୁ କୁଟୁମ୍ବ ହେତେ,

Digitized by srujanika@gmail.com

ମୋହେ ପଡ଼ି ଭାବୁଛି ମୋର ସମସ୍ତ ଯେ । ୨୫ । ଜୀବ ଥିବାଯାଏ ଜଗିଣ ଥିବେ, ଜୀବ ଗଲେ ତୋ ସଙ୍ଗେ ଜଣେ ନ ଯିବେ ସେ । ଜାଳିଣ ଜନ୍ତୁ ଦଗ୍ଧ କରିବେ ପ୍ରେତ ଜୀବ ହେବ ସଙ୍ଗେ ଅର୍ଜିଲା କର୍ମ କାଣ୍ଡ ଯେ । ୨୬ । ରଜ ତମ ଦେଇଣ ନସ୍ତାନ କର୍ମ, ରସ ନହୋଇ ଭ୍ରମ ଏ ମାୟା ବନେ ଯେ ॥ ରହିଣ ଥିବ ଗୁରୁ ସୁଯୋଗ ଜାଗ୍ରତ, ରଖି ପାରିଲେ ଅଭୟ ପାଦେ ମତି ଯେ । ୨୭ । ଲୋଭ ମୋହରେ ପଡ଼ି ଭ୍ରମ ହୋଇଲେ, ଲଘୁ ହୋଇବୁ ଦେହାନ୍ତ କାଳ ହେଲେ ଯେ ॥ ଲାଗିବ ଗଳେ କାଳ ଶମନ ଫାଶ, ଲୋଡ଼ିଲେ ନ ମିଳିବ ନିସ୍ତାରେ ବାଟ ଯେ । ୨୮ । ବେଳ ଥାଉଁଣ ବଶ କର ତୁ ଷ୍ଟି ରେ, ବଧି ନ ପାରିବ ଏ ତ୍ରିତାପ ଜର ଯେ । ବୃନ୍ଦାବନେ ବହୁଛି ମଳୟ ବାତ, ବନେ ପୂର୍ଣ୍ଣବ୍ରହ୍ମ କ ଶୋଭା ମୂର୍ତ୍ତି ଯେ ।୨୯। ଶ୍ରୀପାଦ ପଦ୍ମ ଝରୁଛି ସୁଧାରସ, ସୁଚିତ୍ତେ କର ସେ ମକରନ୍ଦ ପାନ ଯେ ॥ ସବୁ ଦୁରିତ ଦୂର ହୋଇବ ତହିଁ, ସୁଶାନ୍ତ ହୋଇଥିବୁ ଯୁଗାନ୍ତେ ରହି ଯେ । ୩୦ । ସତ୍ୟ ଏହୁ ବଚନ କହୁଛି ତୋତେ ସୁମନ ହୃଦେ ଧର ହୃଦ ନ କରନ୍ତେ ଯେ ॥ ସାର ନାହିଁ ନା ଏଥୁ ସଂସାରେ କହୁଛି, ସବୁ ଅନିତ୍ୟ ଦେଖ ଯେତେ ରହିଛି ଯେ । ୩୧ । ସତ୍ୟ ସନ୍ତୋଷ ଦୟା କ୍ଷମାକୁ ବହ, ଶ୍ରୀଗୁରୁ ପଦ୍ମ ପାଦେ ଶରଣ ଯାଅ ଯେ ॥ ଶରତ ଚନ୍ଦ୍ର ଯେସନେ ହରଇ ତାପ, ସେ ରୂପ କ୍ଷୟୁ ଯିବ କାଳ ପ୍ରତାପ ଯେ । ୩୨ । ହେବୁ ଯେବେ ଉଦ୍ଧାର ହୃଦରେ ଘୋଷ, ହଂସ ବେନ ଅକ୍ଷର ନିଶି ଦିବସ ଯେ ॥ ହୁଏ ସ-ରୁ ଉଦେ ହ-ରେ ଲୟ, ହୋଇଛି ଏହିପରି ଜଗତ ଲୟ ଯେ । ୩୩ । କ୍ଷୟୁ ନୁହଇ କେବେ ବେନ ଅକ୍ଷର ଖଟାଅ ଶତ ତହିଁ ହୋଇ ସୁସ୍ଥିରେ ଯେ ॥ ଖଣ୍ଡିବ ଭବ ବ୍ୟାଧି ହେବୁ ନିଶ୍ଚିନ୍ତ, ଭୀମ ବାଣକ ଭାଷେ ଭକ୍ତ ବେଦାନ୍ତ ଯେ । ୩୪ ।

—o—

Digitized by srujanika@gmail.com

( ୭୯ )

**(କ)** କର ଯୋଡ଼ି ମାଗଥ ଜଣାଏ ଶ୍ରୀଗୁରୁଙ୍କ ଶ୍ରୀମୁଖରେ । କଷଣ ଭୁଆଉ ଅଛନ୍ତି ଏ କଳି ଯୁଗ ନରେ । ଖଳ ଦୁରୁବଳ କପଟ ଢ଼ଗ ହିଂସା ବନ୍ଧନ । ଖିଳ ବ୍ରହ୍ମାଣ୍ଡ ଗୋସାଇଁଙ୍କ ପାଦେ ନାହିଁ ଶରଣ । ୨ । ଗୁରୁ ବୋଲି ବେନି ଅକ୍ଷର ବଡ଼ ପ୍ରାପ୍ତି ମଣିଲେ । ଗର୍ବ ଗୁମାନ ହୃଦେ ବନ୍ଧି ବ୍ୟର୍ଥେ ଦିନ ହାରିଲେ । ୩ । ଘୁମ ଗଲେ ମାୟା ମାଦକ ଖାଇ ମତ୍ତ ଖେଳରେ । ଘଡ଼ିଏ ମାତ୍ର ନ ଭଜିଲେ ନାମ ବ୍ରହ୍ମ ହୃଦରେ । ୪। ଅଲେଖ ବୋଇଲେ ମୁଖରେ ଉପହାସ ମଣିଲେ । ଉପଳ ସମୀପ ଦେବତା ମଣି ପୂଜା କରିଲେ । ୫ । ଚନ୍ଦ୍ରପ୍ରସ୍ଥ ଭୂଶୀପ୍ରସ୍ଥ ବ୍ରହ୍ମଙ୍କୁ ନ ଚିହ୍ନି ଜ୍ଞାନ ବଳେ । ଚଣ୍ଡୀ ଚାମୁଣ୍ଡା ଦୁର୍ଗା କାଳୀ ଚରଣେ ସେବା କଲେ । ୬ । ଛନ୍ଦ ନଟକୂଟ କପଟ ଛନ୍ଦଣ ଅଛି ଘୃଣ୍ୟ । ଛଛନ୍ଦେ ତ ଭଜ ନାମକୁ ହେଉ ଅଛନ୍ତି ବାୟା ।୭। ଜଗତ ନର୍ତ୍ତକ ନ ଭଜ ଜ୍ୟୋତି ଅବାଢ଼ ଗ୍ରାସ୍ୟ । ଯୁଗଳ ନୟନ ବୁଜିଲେ ନ ମଣିଲେ ଏ ମାୟା ।୮। ଝଞ୍ଜା ଝଗଡ଼େ ପଡ଼ିଣ ଝାମ ଗଲେ ମାୟାରେ । ଝିମିଟ ଅଲେଖ ମହିମା ନ ଚିହ୍ନିଲେ ଆତ୍ମାରେ । ୯ । ନିଦ୍ରା ମଇଥୁନ ଆହାର ଭୟ ଏହି ଗୃହରେ । ନଶିଦିନ ମଜ୍ଜି ସକଳେ ଅଜ୍ଞାନେ ଦିନ ନେଲେ । ୧୦ । ଟେକ ନ ଭଜିଲେ ନାମକୁ ଟମାଳିଆ ବୁଦ୍ଧିରେ ଟାହି ଟାପରା କଲେ ସଦା ଦେଖି ସୁସାଧୁ ନରେ ।୧୧। ଠାକୁର ପରଂବ୍ରହ୍ମ ପାଦେ ଭକତି ନ କରିଣ । ଠିକେ ବାମନ ଭାବ କହେ ଭ୍ରମି ଗଲେ ଦୁର୍ଜ୍ଜନ ।୧୨।

**(ଡ)** ଡାକ କହୁଅଛୁ ଜଗତେ ଡାକ ଅଲେଖ ନାମ । ଡୋଳା ଗୋଚରେ ରହିଛନ୍ତି ବିଭୁ ପରମ ବ୍ରହ୍ମ ।୧୩। ଢମ ପଣେ ମାତି ଢାଳେ ହେ ନ ଭଜିଲେ ନାମକୁ । ଢଗ ଢମାଳରେ ମଜ୍ଜିଲେ ଦେଖ ମୁକ୍ତି ପଥକୁ । ୧୪ । ଅଣାକାରେ ନାମ ଶରଣ ଅଜପା ମହା ମନ୍ତ୍ର । କହିବାରୁ କେହି ନ ଶୁଣି ମାତିଲେ ଜପ ତୀର୍ଥ । ୧୫ ।

Digitized by srujanika@gmail.com

ନଶବ ନିର୍ଗୁଣ ମାୟାରୁ ନିଷ୍କାମେ କର ଭକ୍ତି । ତପନ ସୁତ ନଦଣ୍ଡିବ ତୁଟିବ ଭବ ଭ୍ରାନ୍ତି । ୧୬ । ଥରେ ହେଲେ ଶାନ୍ତ ଶରୀରେ ନାମ ସ୍ମରଣ କର । ଥକିତ ନ ହୋଇ ମାୟାରେ ସୁସାଧୁ ସଙ୍ଗ ଧର ।୧୭। ଦଣ୍ଡେ ନିମିଷେ କ୍ଷଣେ ମାତ୍ର ନାମ ଆଶ୍ରୟ କର । ଦାଉ ଦୁରୁଦଶା ନିବାରି ଛେଦ ମାୟା ତିମିର । ୧୮ । ଧର ଧର ଧର୍ମ ପଥକୁ ଧାଇ ନୁହ ସମାଜରେ । ଧରଣୀରେ ଧନ୍ୟ ହୋଇବ ସାତ ଜନ୍ମ ସଭାରେ ନିରାକାର ନିରବୟବ ବ୍ରହ୍ମ ନିଜ ଅଙ୍ଗରେ । ଲୀଳା କରୁଛନ୍ତି ଦେଖ ହେ ମାନବ ନୟନରେ । ୨୦ । ପର ପର ନାହିଁ ତାଙ୍କର ସର୍ବତ୍ର ହୁଅ ଥରେ । ପୂର୍ଣ୍ଣ ରହିଛନ୍ତି ପରମ ବ୍ରହ୍ମ ସର୍ବ ଘଟରେ । ୨୧ । ସନ୍ଦାକର ସାନ୍ଦ ମାୟାରୁ ଯେବେ ହୋଇବ ପାର । ଫଣି ମଣି ନାଥ ଅଛନ୍ତି ମହାଶୂନ୍ୟ ବିହାର । ୨୨ । ବହୁଛି ମାନବ ଶରୀର କୋଟି ଜନମ ଫଳେ । ବଣା ନୁହ ଭୂଲି ବଅର୍ଥ ଏଣେ ତେଣେ ତୀର୍ଥରେ । ୨୩ । ଭବ ଭୟର ବନ୍ଧୁ ସେହୁ ଭାବଗ୍ରାହୀ ଅଛନ୍ତି । ଭାଷେ ବାମନ ଏ ଭବରୁ ପ୍ରଭୁ ତାରିବେ ଦେଖି । ୨୪ ।

**(ମ)** ମହିମା ସାଗରେ ମଜ୍ଜିଣ ମୋହ ମାୟାକୁ ତେଜ । ମଦନ ମାଦକ ନିଶାକୁ ହୃଦୟରୁ ବରଜ । ୨୫ । ଯାଗ ଯଜ୍ଞ ଜପ ତୋଷ ତୀର୍ଥ ବାର ବ୍ରତକୁ । ଯତନେ ନିବାରି ଏକାନ୍ତେ ଭଜ ସ୍ୱାମୀ ପାଦକୁ । ୨୬ । ରହିବ ରସାନେ କାରଣ ଅନ୍ତେ ଲଭିବ ଗତି । ରଜ ତମ ଗୁଣେ ପଡ଼ିଣ ନ ମାନିଲେ ଭାରତୀ ।୨୭। ଲୋଭ ମୋହ କାମ କ୍ରୋଧରେ ଲୋଳସେ ହୋଇ ଯାଇ । ଲଳନା କଟାକ୍ଷେ ମୋହିତ ହେଲେ ଦିବା ଶର୍ବରୀ । ୨୮ । ବିଧି ବିଧାନ ପଥ ଗ୍ରନ୍ଥ ଅବଧିରେ ଗମିଲେ । ବେଦ ସିଦ୍ଧ ବାଣୀ ହୃଦରେ ବିଷ ପ୍ରାୟ ମଣିଲେ । ୨୯ । ଶୂନ୍ୟ ସ୍ୱରୂପ ପୂର୍ଣ୍ଣ ବ୍ରହ୍ମ ଗତି ମୁକତି ଦାତା । ସେବେ ଭଜ ବୋଲି କହିଲେ ବୋଲି ହାଶୁ ଯା ଯା । ୩୦ । ଶିଳା କାଷ୍ଠ ଧାତୁ ପ୍ରତିମା ଆତ୍ମ ସ୍ଥାନ ପୁରୁଷ । ସେବି ଥିଲେ ଆତ୍ମ

Digitized by srujanika@gmail.com

ମୋବର ତୁମ୍ଭେ କହୁଛ କସ । ୩୧ । ମନ ଶାନ୍ତ କ୍ଷମା ଅସ୍ତେୟ ଦୟା ଧର୍ମ ଲକ୍ଷଣ । ସ୍ୱପନ ପରାୟେ ଲାଗୁଛି ଶୁଣି ତୁମ୍ଭ ବଚନ ॥ ହର ନାମ ଛାଡ଼ି ଅଲେଖ ନାମ କାହୁଁ ଅଇଲା । ହସ ମାତ୍ର ଅଛି ଆମ୍ଭଙ୍କୁ କେବେ ଶୁଣା ନ ଥିଲା ॥ କ୍ଷିତିମଣ୍ଡଳ ଲୋକମାନେ ଏହିପରି ଭାଷନ୍ତି । କ୍ଷମା କରି ରଖ ଅଲେଖ ବାମନର ବିନତି । ୩୪ ।



( ୮୦ )

( ରାଗ—ଚନ୍ଦ୍ରକେଳି )

(କ) କୃପାସିନ୍ଧୁ ପାଦେ କର ଭକତି । କଟିବ ଅକାଳ ମାୟା ବିପତ୍ତି । ୧ । କ୍ଷମା ନିଧିଙ୍କି ଦୃଢେ଼ ଆଶ୍ରେ କର । ଖଣ୍ଡନ ହେବ ଅପରାଧ ଭାର । ୨ । ଗୁରୁ ଚରଣରେ ଶର ଖଟାଅ । ଗତି ମୁକତି ପାଇବ ନିଶ୍ଚୟ । ୩ । ଘୋଟିଅଛନ୍ତି ତ୍ରିପୁର ଜଗତେ । ଘେନ ଗୁରୁ ମାନ ରେଣୁକୁ ମଥେ ।୪। ଅନ୍ତର୍ଯାମୀ ଅଟନ୍ତି ଗୁରୁଦେବ । ଉଦ୍ଧାର କରିବେ ଏ ଭବାର୍ଣ୍ଣବ ।୫। ଚିନ୍ତାମଣି ଚରଣେ କର ଭାବ । ଚିରକାଳ ଦୁର୍ଗତିରୁ ତରିବ ।୬। ଛନ୍ଦି ଦେବତାରେ ତାଙ୍କ ଉଦୟ । ଛାଡ଼ ଧର୍ମ କରି କର ପ୍ରେମ ଲୟ । ୭ । ଜୀବ କରତା ଅଟନ୍ତି ଶ୍ରୀଗୁରୁ । ଯେତେ ଭଜ ବାଞ୍ଛା କଳ୍ପତରୁ । ୮ । ଝାସ ତ୍ରିତାପ ହୋଇବ ଦହନ । ଝର ପାଦେ ମନ କମଳ ନୟନ । ୯ । ନିଜ ବ୍ରହ୍ମ ହୋଇଲେ ଆଜ୍ଞାବର୍ତ୍ତି । ପଡ଼ିବ ନାହିଁ ଅକାଳ ବିପତ୍ତି ।୧୦। ଟାଣେ ନାମକୁ ଆଶ୍ରେ କର ମନେ । ଟଳ ନ ପଡ଼ିବ ଏ ଭବାର୍ଣ୍ଣବେ । ୧୧ । ଠାକୁରଙ୍କ ପାଦେ କର ଭକତି । ଠିକେ ଗାବ କହେ ବାମନ ଯତି । ୧୨ ।

(ଡ) ଡଙ୍ଗା ପକାଇ ଜଗିଛନ୍ତି ଘାଟ । ଡଙ୍ଗର ଦୁଷ୍ଟଙ୍କୁ ଦେଇଛି ଅଭେଟ । ୧୩ । ଢମପଣ ଛାଡ଼ି ଢୋକ ଅମୀୟ । ଢଳିଯିବ

Digitized by srujanika@gmail.com

ଏକାଳ ମାୟା ମୋହ । ୧୪ । ଅଣାକାର ପୁରୁଷ ଅନ୍ତର୍ଯ୍ୟାମୀ । ଆତଙ୍କେ ଡାକଲେ ବୁଝିବେ ଜାଣି । ୧୫ । ତାଙ୍କ ପାଦକୁ ଲକ୍ଷ କର ଧର । ନିର୍ଗୁଣ ବନ୍ଧନରୁ ହେବ ଉଦ୍ଧାର ॥ ଥୟ କରିଣ ମନ ଖଣ୍ଟା ନହିଁ । ଥିବ ସ୍ଥିର ଯୁଗେ ଅମର ହୋଇ ।୧୭। ଗୀନବନ୍ଧୁଙ୍କୁ ହୃଦରେ ଧାୟିଲେ ଦର୍ଶନ ଦେବେ ସେ ଭକ୍ତ ଦେଖିଲେ ॥ ଧରିଣ ଧାରଣା କର୍ମମାନଙ୍କୁ । ଧ୍ୟାନ କରି ଅନ୍ୟେ ପାନ ପଦ୍ମଙ୍କୁ । ୧୯ । ନାବ ଥାଉ ନ ଭାସ ଭବ ଜଳେ । ନାରାୟଣଙ୍କୁ ଭଜ ଏତେବେଳେ ।୨୦। ପୂର୍ଣ୍ଣାନନ୍ଦ ପାଦେ ଭକତି କର । ପିଣ୍ଡ ପରାଣ ମମନି ପସୁର ।୨୧। ମିଟିବ ଜୀବର କର୍ମ ବନ୍ଧନ । ମଳ ଶୂନ୍ୟରେ ହେଲେ ମୁହା ସ୍ଥାନ । ୨୨ । ବର୍ଣ୍ଣି ବିବେକ ଜ୍ଞାନକୁ ଏକତ୍ର । ବୁଝିଣ କର ହେ ଅନ୍ତରଙ୍ଗ ଭକ୍ତ । ୨୩ । ଭଲ ଭଗବାନଙ୍କୁ ଭଜ ନିତ । ଭାବ ହୃଦେ ଭାଷେ ବାମନ ଯତି । ୨୪ ।

(ମ) ମହିମା ନାମ ନିରନ୍ତରେ ଭଜ ମାୟା ମୋହକୁ ହୃଦୟରୁ ତେଜ । ୨୫ । ସନ୍ତେ ସାଧୁ ସଙ୍ଗ ବସ ନିତ୍ୟ । ଜୀବ ନିଷ୍ଚୟେ ହୋଇବ ମୁକତ । ୨୬ । ରାଗ ଅହଙ୍କାରେ ନ ହୋଇ ରତ । ବ୍ରହ୍ମ ନାମ ବ୍ରହ୍ମେ ହୋଇ ଆଶ୍ରିତ । ୨୭ । ମିଳିବ ପ୍ରକୃତ ନିବାର ହୃଦକୁ । ଲକ୍ଷ କର ହେ ସୁଜନ ଶ୍ରୀଗୁରୁ । ୨୮ । ବୁଦ୍ଧ ରୂପେ ଶ୍ରୀଗୁରୁ ଅନାକାର ବ୍ରହ୍ମଜ୍ଞାନ କରିଛନ୍ତି ପ୍ରଚୁର । ୨୯ । ଶ୍ରୀଗୁରୁଙ୍କ ପାଦେ ଲଗାଅ ଚିତ୍ତ । ସର୍ବ ସଂଶୟମାନ ହୁଏ ହତ ।୩୦। ସାକ୍ଷୀ ରୂପେ ସର୍ବ ଘଟରେ ପୂରି । ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଜ୍ଞାନ-ପ୍ରଭ ।୩୧। ମନ୍ତ୍ର ପଥେ ଧ୍ୟାନ କରି ଯାଉଲେ । ସ୍ୱାମୀ ଦର୍ଶ୍ୟ ହେବେ ଜ୍ଞାନ ନେତ୍ରରେ । ୩୨ । ହେଲା ଜନେବ ଏ କର ହେ ସୁଜନ । ହୋଇ ଏକାଗ୍ର ମନେ କରି ଧ୍ୟାନ । ୩୩ । କ୍ଷମା କରିବେ ଏ ହୋଇ ବିପତ୍ତି । କ୍ଷମେ ବାମନ ବାବା ଭାଷେ ଶାନ୍ତି । ୩୪ ।

—୦—

Digitized by srujanika@gmail.com

( ୮୧ )

## ( ସିଦ୍ଧସାଧୁ ସୁଧାକର ବାବାଙ୍କର )

( ରାଗ—ଚନ୍ଦ୍ରାଭୈରବ )

(କ) କରତା ପୁରୁଷ ଶୂନ୍ୟବ୍ରହ୍ମ । କାଳୁସ୍ତରେ କରୁଛି ଜଣାଣ । ଖଣ୍ଡା ରମା ନଲେ ମତେ ମୁଁ ଢକନେ, କ୍ଷମାନନ୍ଦେ ପଶୁଛି ଶରଣ ହେ ଅଲେଖ । ଗତ ନତ ଇଷ୍ଟ ବନ୍ଧୁତା । ଗତ ଇହ ଜନ୍ମର ଦୁଷ୍ଟ ନ୍ତା । ଦ୍ରୁଆଇ ନାମ ମତେର କର ମାଳନ, ତୁମ୍ଭେ ଅଟ ହରତା କରତା ହେ ଅଲେଖ । ୨ । ଅନ୍ତର୍ଗତେ ବନ୍ଧ କୋମ ଦେଷ । ଅଣହେଳା କଲ ହେଲ ନାଶ । ଚଦାନନ୍ଦ ସ୍ୱାମୀ ତୁହିଁ ନେଲେ ବାନରେ, ଚର ଦୁଃଖ ମୋ ହେବ ବିନାଶି ହେ ଅଲେଖ । ୩ । ଛନ୍ଦ ନଟକୁଟ ଅଛି ରହି । ଛନ୍ଦନ୍ଦେ ଗୁରୁ ଚରଣ ଧ୍ୟାଇ । ଜଗତ ଜୀବନ ଅଟ ଗୁରୁଦେବ, ଜଗତରୁ ବାରେ କର ଜାଣ ହେ ଅଲେଖ ।୪। ଝାଂ ମନ୍ତ୍ର ଲାଗିବାରୁ ଅଙ୍ଗେ । ଝଡ଼ ଗଡ଼େ ଶୁଷ୍କ ନ ଭାବେ । ନିବାରଣ କର ନିରଞ୍ଜନ ସ୍ୱାମୀ, ନିତ ଡାକୁଅଛି ମତେ ଭାବେ ହେ ଅଲେଖ । ୫ । ଟଳ ମଳ ହେଉଅଛି ଦେହ । ଟେକି ମାର ବାନା କର ଥୟ । ଠାବ ଦେଇ ରଖ ଅଭୟ ପଞ୍ଜରେ, ଠିକେ ସୁଧାକର ଜରେ ଲୟ ହେ ଅଲେଖ । ୬ ।

(ଡ) ଡାକ ଡାକ କଣ୍ଠ ଗଲା ଶୁଖି । ଡାକ ନ ଶୁଣ କାହିଁ ପାଇଁକି । ଢଳ ଢଳୁଛି ଧରଣୀ ମଣ୍ଡଳ, ହଳାହଳ ବିଷ ପାନ ଢୋକ ନ ହେ ଅଲେଖ ॥ ଅଣାକାର ଗୁରୁ ଅବଧୂତ । ଥାଉଁ ଥାଉଁ ହେଉଅଛି ହତ । ତତ୍ତ୍ୱ ଚଉ ସ୍ୱାମୀ ବୁଝାମଣା କର, ଶରଣାଗତ କରେ ବିନତି ହେ ଅଲେଖ ॥ ଥୟ ନାହିଁ ମୁଁଅଭୂତ ମନ । ଥରହର ହୁଏ ନିଶିଦିନ । ଦୟାବନ୍ତ ପ୍ରଭୁ କରୁଣା ନୟନେ ଚାହିଁ ଭବୁ ତାର ଅକିଞ୍ଚନ ହେ ଅଲେଖ । ୯ । ଧୈର୍ଯ୍ୟ ହେଉ ନାହିଁ ପିଚଣ୍ଡି ପ୍ରାଣ ଧନ୍ଦା ବନ ପଶି ଛନ୍ନ ଛନ୍ନ । ନିସ୍ତର ନ ହୁଏ ମୁଁ ତୁମ ତନୟ

Digitized by srujanika@gmail.com

ନିତ ପ୍ରତି କରେ ନିବେଦନ ହେ ଅଲେଖ । ୧୦ । ପଣ କରିଅଛି ମନେ ଜ୍ଞାନ । ପାର କରିବେ ଶ୍ରୀଗୁରୁ ବୋଲି । ଫଣି ମଣି ନାଥ ବାନ୍ଧି କଲ୍ପତରୁ ଫନ୍ଦା କରି ଫାନ୍ଦ୍ ପିବ ତରି ହେ ଅଲେଖ । ୧୧ । ବନ ଗଜ ପ୍ରାୟ ବାନା ଉଡେ । ଭୟ ମାଡ଼ୁଛି ଦୃଗାନ ବାଦେ । ଉପରୁ ବାରଣ କରି ରଖ ପାଣେ, ଘନ ସୁଧାକର ଗୀତେ ଘୋଷେ ହେ ଅଲେଖ । ୧୨ ।

(ମ) ମଣ୍ଡ ପରେ ମହିମା ରହିବ । ମହତ ପୁରୁଷ ଗୁରୁଦେବ । ଜାଣି ନ ଜାଣିଲି ପରି ହେଲା କଲେ, ଭବେ ଅଙ୍କୁରି ରଞ୍ଜନ ହେବ ହେ ଅଲେଖ ॥ ଭଜ ସ୍ମରଣ ପଣି ମୋ ହୃଦେ । ରହୁ ନାଣ୍ଟି ଚଉ ପଦ୍ମ ପାଦେ । ଲଗିଅଛି ଗଳେ ତ୍ରିଗୁଣ ସାଙ୍କୋଳି କଳବଳ ହୁଏ ଅନ୍ତରତେ ହେ ଅଲେଖ । ୧୪ । ବନ୍ଧୁ କରି କରୁଣା ସହିତ । ବନ୍ଧି ଥିଏ ତାପ କର ଶାନ୍ତ । ଶୁଷ୍କ ପତ୍ର ସମ ଝଡ଼ ପଡ଼ୁଅଛୁ କାଳ ବାତରେ ହୋଇ ହତ ହେ ଅଲେଖ । ୧୫ । ସକଳ ଜାଣୁଅଛ ଅନ୍ତରେ । ସମେ ରହିଅଛ ସର୍ବଠାରେ । ଶରଣ ପଶୁଛି ସମ୍ଭାଳଣା କରି, ସୁକରୁଣା ବହି ଭୃତ୍ୟ ଠାରେ ହେ ଅଲେଖ । ୧୬ । ହତାଶ ହେଉଛି ପଡ଼ି ଭବେ । ଦରଘଡ଼ି ଏ ବପଦାଣ୍ଡିବେ । କ୍ଷମ ମୋ ଅପ୍ରାଧ କ୍ଷମେ ଜଣାଉଛି କ୍ଷୁଦ୍ର ସୁଧାକର ଏହି ଭାବେ ହେ ଅଲେଖ । ୧୭ ।

—o—

## (ହିଉସାଧୁ ଦଇତାରି ବାବାଙ୍କର)

## ( ୮୨ )

(କ) କାୟମନ ବଚନରେ, କର ଭକତି ଶ୍ରୀଗୁରୁ ପଦ୍ମରେ ଗୋ, କାଳ ଭୟ ଘୁଞ୍ଚିପିବ ଦୂରେ ସୁଜନେ ଗୋ ॥ ଖିଳ ବ୍ରହ୍ମାଣ୍ଡ ନାୟକ, ଖଳ ବୁଦ୍ଧି ଛାଡ଼ କର ବିବେକ ଗୋ, କ୍ଷମାନନ୍ଦ ମହିମା ଅଲେଖ, ସୁଜନେ ଗୋ । ୨ । ଗତ ମୁକତି ଦାୟକ, ଗରବ ଗୁମାନ

Digitized by srujanika@gmail.com

ବରଜ ଦେଖ ଗୋ, ଗୁରୁ ବଜପ୍ର ତାତ୍ତ୍ୱିକା ଶିଖ, ସୁଜନେ ଗୋ ।୩। ଧଇସ୍ୟଗ ପ୍ରାଣପଣ୍ତ, ଧଇଣ ସନ୍ଦର ବ୍ରହ୍ମ ଅଜ୍ୟୋତି ଗୋ, ଧନ ଧନ୍ୟ ଜଣା ତାଙ୍କ କାନ୍ତି, ସୁଜନେ ଗୋ । ୪ । ଉଦେଛନ୍ତି ଏକ ପାଦେ, ଛଡ଼ି ବେଦ ପରେ ଦ୍ୱିପାଦ ଊର୍ଦ୍ଧ୍ୱେ ଗୋ, ଝଡ଼ ଝାବ ତେଜ ଝଜ ସର୍ବେ, ସୁଜନେ ଗୋ । ୫ । ଚଉଦ ଭୁବନେ ସଜ', ଛପ୍ପନକୋଟି ଜୀବ ଦାସ ପରଜା ଗୋ', ଚନ୍ଦ୍ର ସୂର୍ଯ୍ୟ ତାହାଙ୍କ ପରଜା ସୁଜନେ ଗୋ । ୬ । ଛନ୍ଦ କପଟ କୁଟିଳ, ଛାଡ଼ି ଭଜ ପ୍ରଭୁ ପାଦ କମଳ ଗୋ, ଛଣାସୁଧା ଦେବେ ଆନନ୍ଦମୂଳ, ସୁଜନେ ଗୋ ।୭। ଜାଗ୍ରତରେ ରହି ଥାଉ । ଜଗନ୍ନାଥଙ୍କୁ ହୃଦରେ ଚିନ୍ତ ଗୋ । ଜନ୍ମ ମରଣ ହୋଇବ ହତ, ସୁଜନେ ଗୋ ॥ ଝଳ ଦିଶୁଛି ନୟନେ । ଝଟି ଲଗାଅ ଧ୍ୟାନ ଯତନେ ଗୋ । ଝଡ଼ ନ ପଡ଼ିବ ଝାମ ବନେ, ସୁଜନେ ଗୋ । ୯ । ନିରଞ୍ଜନ ନିରାକାର । ନିଧା ବ୍ରହ୍ମ ନିଜ ମନ୍ଦରେ ତୋର ଗୋ ନିରନ୍ତରେ କରନ୍ତୁ ବେହାର, ସୁଜନେ ଗୋ ।୧୦ । ଟାଣେ ଟେକ ଭଜ ନିତି । ଟମାଳରେ କେବେ ନ ଦେଇ ମତି ଗୋ । ଗୁରୁ ଚରଣେ କର ପୀରତି, ସୁଜନେ ଗୋ । ଠାବ କର ନିଜ ଦେହେ । ଠୂଳ ଶୂନ୍ୟବାସୀ ଆକାର ନୁହେଁ ଗୋ । ଠାବ ଦଇତାର ଗୀତେ କହେ, ସୁଜନେ ଗୋ । ୧୨ ।

(ଡ) ଡୋଳା ଗୋଚରେ ଲୁଚିଛୁ । ଡଙ୍ଗର ଜନ ଗରବ ଗଞ୍ଜୁଛି ଗୋ । ଡର ଛାଡ଼ି କର ବ୍ରହ୍ମେ ଭକ୍ତି, ସୁଜନେ ଗୋ । ଢଉ ରଙ୍ଗ ପସରେ, ଢାଳେ ଢଳ ନପଡ଼ି ଅଜ୍ଞାନରେ ଗୋ । ଢୋକ ପିଅ ସୁଧା ପାଦୁ ଝରେ, ସୁଜନେ ଗୋ । ୧୪ । ଆସୁଛି ଯାଉଛି ସେହି । ଅଣ ଅକ୍ଷର ଅଲେଖ ଅଟଇ ଗୋ । ଅନୁସର ଥିଲେ ଭେଟ ପାଇ, ସୁଜନେ ଗୋ । ୧୫ । ତତ୍ତ୍ୱ ଚିତ୍ତେ ସ୍ୱାମୀ ଦେଖ । ତ୍ରୈଲୋକ କରତା ଗୁରୁ ଅଲେଖ ଗୋ । ତ୍ରିଭୁବନେ ଅଟନ୍ତି ବ୍ୟାପକ, ସୁଜନେ ଗୋ । ୧୬ । ଥପୁକରି ପଞ୍ଚମନ । ଶମଦମାଦି କରଣ ସାଧନ । ଗୋ

Digitized by srujanika@gmail.com

ଘୁଞ୍ଚି ହେବାଯାଏ ବ୍ରହ୍ମେ ପ୍ରାଣ, ସୂଜନେ ଗୋ । ୧୭ । ଦର୍ଶନ କଲେ ଅପେକ୍ଷା । ଦୁଃଖ ସାଗରରୁ ତରିବୁ ଯାଇଁ ଗୋ । ଦକ ଦକ ତୋ ଉଦ୍ଧବ ନାହିଁ, ସୂଜନେ ଗୋ । ୧୮ । ଧନ୍ଦା ବନେ ନୁହ ବଣା । ଧ୍ୟାନେ ବସି ଜପ ନାମ ଅବନା ଗୋ । ଧ୍ୱଂସ ହେବ ଦୁର୍ବାସନା, ସୂଜନେ ଗୋ । ୧୯ । ନାମଟି ଅନାମ ସାର । ଅନାହତେ ପ୍ରବନ୍ଧରେ ବେହାର ଗୋ । ଆଣି ହେତୁ ଘଟରେ ଥୟ କର, ସୂଜନେ ଗୋ । ପରମାତ୍ମା ଜନ୍ତୁ ଯହିଁ । ଜୀବ ପରମ ତହିଁ ଭେଦ ନାହିଁ ଗୋ । ପଶିଗଲେ ନ ଫେରିବୁ ମଣ୍ଡି, ସୂଜନେ ଗୋ । ଫୁଙ୍କା ବଙ୍କର ଉପରେ । ଫଣି ମଣି ନାଥ ବଜେ ସେଠାରେ ଗୋ । ଫନ୍ଦା କର ତାଙ୍କର ନାମରେ, ସୂଜନେ ଗୋ । ୨୨ । ବହୁଛୁ ତ୍ରିବେଣୀ ଧାର । ବୁନ୍ଦେ ବୁନ୍ଦେ ବସି ପାନ ଭୁ କର ଗୋ । ବଙ୍କୁନାଳେ ବାରସ୍ୱର୍ଣ୍ଣ ପୂର, ସୂଜନେ ଗୋ । ୨୩ । ଭବ ଭୟ ହେବ ନାଶ । ଭରଷିଣ ସେ ଛୁଟରେ ଝାସି ପଶ ଗୋ । ଭକ୍ତେ ଦଇତାର ଏ ରହସ୍ୟ, ସୂଜନେ ଗୋ । ୨୦ ।

(ମ) ମୂର୍ଦ୍ଧଣ ଶିଖରେ ଯାଇଁ । ମହାନନ୍ଦ୍ୟପୁର ଗୋଲକ ଭୂଇଁ ଗୋ, ମହା ମହିମା ବଜୟ ତହିଁ, ସୂଜନେ ଗୋ । ୨୫ । ଯମକୁ ସେ ପୁର ମନା ଯତ ସନ୍ତଙ୍କ କାଇଁଶ ପାଟଣା ଗୋ । ଗୁରୁ ନାମ ଗୋଟି ବକା କଣା, ସୂଜନେ ଗୋ । ୨୭ । ରବ ଶଶୀ ତେଜ ନାହିଁ ଜଳ ପବନ ପଶି ନ ପାରଇ ଗୋ । ନଗମ ଭୁବନ ଅଛୁ ଯହିଁ ସୂଜନେ ଗୋ ॥ ଲୋଭ ମୋହରେ ନ ଭ୍ରମି । ଲକ୍ଷ ଲକ୍ଷାର୍ଥ ବ୍ରହ୍ମଙ୍କୁ ପ୍ରଣମି ଗୋ । ଲଭ କର ମୋକ୍ଷ ମାୟା ଜଣି, ସୂଜନେ ଗୋ । ୨୮ । ବଙ୍କୁନାଳେ ହଂସ ଖେଳେ । ବସି ଲୟ କର ଧ୍ରୁବ ମଣ୍ଡଳେ ତୋ । ତତ୍ତ୍ୱ ଦ୍ୱାଦଶ ଶବଦକ୍ଷରେ, ସୂଜନେ ଗୋ । ୨୯ । ଶରବ ଉକ୍ଷମ ନାହିଁ । ଷଡ଼ ରିପୁ ପଶି ନ ପାରେ ଯହିଁ ଗୋ ସଦାନନ୍ଦ ସ୍ୱାମୀ ବଜେ ତହିଁ, ସୂଜନେ ଗୋ । ୩୦ । ଷଟପଦ ପର ମନ । ଶମ୍ଭନ

Digitized by srujanika@gmail.com

ସ୍ୱପନେ କର ପ୍ରେରଣ ଗୋ । ସୁଧା ମଧୁ କରିବ ଆପ୍ୟାନ, ସୃଜନେ ଗୋ । ୩୧ । ହଂ କ୍ଷଂ ର ଉପରେ । ଓଲଟି ରହିଛୁ ଏକ ପାଦରେ ଗୋ ହଂସ ସୋଽହଂ ଅଜପା ମନ୍ତ୍ରରେ, ସୃଜନେ ଗୋ । ୩୨ । କ୍ଷମା ସାଗର ଶ୍ରୀଗୁରୁ । ବର ଦାୟକ ବାଞ୍ଛା କଳ୍ପତରୁ ଗୋ । ଭକ୍ତେ ଦ୍ୱୈତାଶ୍ରି ଗୁରୁ କୃପାରୁ । ସୃଜନେ ଗୋ । ୩୪ ।

—୦—

—ସମାପ୍ତ—

ମୁଦ୍ରାକର—ଶ୍ରୀ ଅନାଦି ନାୟକ, ଆଦିତ୍ୟ ପ୍ରିଣ୍ଟର୍ସ, କଟକ

Digitized by srujanika@gmail.com

# ବିଜ୍ଞାପନ

ଶ୍ରୀମଦ୍ ଭାଗବତ ସ୍ୱୟଂ ଭଗବାନଙ୍କ ମୁଖ ନିସୃତ ବାଣୀହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥରୂପେ ପରିଗଣିତ । ଏଣୁ ଏହି ଗ୍ରନ୍ଥ ଘରେ ଘରେ ଏବଂ ଦେବାଦେବୀ ମନ୍ଦିରମାନଙ୍କରେ ପୂଜା ହେଉଛି ତଥା ପାଠ ମଧ୍ୟ ହେଉଛି । କିନ୍ତୁ ଏହି ଭାଗବତ ୧୩ ଖଣ୍ଡ ବଡ଼ ହେତୁ ତନ୍ମଧ୍ୟରୁ ସାର ବା ତା'ର ମାହାତ୍ମ୍ୟ ହୃଦ୍‌ବୋଧ କରିବା ବଡ଼ କଷ୍ଟ ସାଧ୍ୟ । ଏଣୁ ଲୋକ ଲୋଚନକୁ ଆଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡି ପାଠକଲେ ଉକ୍ତ ତେରଖଣ୍ଡ ଭାଗବତ ଗ୍ରନ୍ଥର ମାହାତ୍ମ୍ୟ ଅଳ୍ପରେ ହୃଦ୍‌ବୋଧ କରି ପାରିବେ । ଏହା ବ୍ୟତୀତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ପାଇବେ— ଚତୁଃଶ୍ଳୋକୀ ଭାଗବତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତି ସହ ଭେଟ, ଭକ୍ତିର କଷ୍ଟ ନିବୃତ୍ତିପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ପ୍ରେତ ଶରୀରପ୍ରାପ୍ତ ଓ ତନ୍ମଧ୍ୟରୁ ଉଦ୍ଧାର ତଥା ଶ୍ରୀମଦ୍ ଭାଗବତ ସପ୍ତାହ ଯଜ୍ଞର ବିଧି ।

ଏତଦ୍‌ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଗୀତା, ବାର ଓ ବ୍ରତ, ସମସ୍ତ ପ୍ରକାର ପୁରାଣ, ଗଳ୍ପ, ନାଟକ, ପଞ୍ଜିକା କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ବିଦ୍ୟାରମ୍ଭ ପାଇଁ ବିଭିନ୍ନ ପ୍ରକାରର ଅକ୍ଷର ଶିକ୍ଷାବହି ନିମ୍ନ ଠିକଣାରେ ଯୋଗାଯୋଗ କଲେ ସୁବିଧା ଦରରେ ପାଇପାରିବେ ।


ଠିକଣା :

ମେସର୍ସ—**ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ—**ଶ୍ରୀ ବିଦ୍ୟାଧର ସାହୁ**

ଅଲିଶାବଜାର, କଟକ-୨

ଫୋନ୍ ନଂ- ୨୪୭୯୨


Digitized by srujanika@gmail.com